# ଚଣାବାଲା

( ଉପନ୍ୟାସ )

ଶ୍ରୀ ଅଶ୍ୱିନୀକୁମାର ଘୋଷ ଏମ୍, ଏ



ପ୍ରଥମ ସଂସ୍କରଣ—୧୧୦୦
୧୯୫୧ (ଡିସେମ୍ବର)
ମୂଲ୍ୟ—ତିନିଟଙ୍କା ପଚଶ ନୂଆପଇସା

ପ୍ରକାଶକ—

**ଶ୍ରୀ ଅରୁଣକୁମାର ଘୋଷ**

୪ ଆରପୁଲ ଲେନ, କଲିକତା—୧୨

ପ୍ରାପ୍ତିସ୍ଥାନ—

**ଅକ୍ଷୟ ଭଣ୍ଡାର**

କଟକ—୨

ମୁଦ୍ରାକର—

**ଶ୍ରୀ ଭିକାରୀଚରଣ ଧଳ**

ମହାଲକ୍ଷ୍ମୀ ପ୍ରେସ, ୪ ଗୋବିନ୍ଦ ସେନ୍ ଲେନ୍

କଲିକତା—୧୨

# ପ୍ରାକ୍ କଥନ



ଦିନେ ମୋ'ର ବନ୍ଧୁ ମୋତେ ଗୋଟିଏ ଗଳ୍ପ କହିଥିଲେ । ସେହି ଗଳ୍ପର ନାୟକ ଥିଲା ଗୋଟିଏ ଚଣାବାଲା । ମୋର ବନ୍ଧୁ ଭଣିତା କରି ଆହୁରି କହିଥିଲେ ଯେ, ଏହା ନିଛକ ଗଳ୍ପ ନୁହେଁ । କାରଣ, ଏହି ଚଣାବାଲାର ଜୀବନ ଇତିହାସର ପ୍ରତିଟି ଘଟଣା ସଙ୍ଗେ ସେ ଅଙ୍ଗାଙ୍ଗି ଭାବରେ ଜଡ଼ିତ ଥିଲେ ।...ମୁଁ ଗାଳ୍ପିକ ନୁହେଁ । ଗଳ୍ପର କଳାକୌଶଳ ମୋତେ ଜଣାନାହିଁ ।...ମୋ'ର ବନ୍ଧୁ ଯେମିତି ଯାହା

ବଖାଣି ଥିଲେ, ତା ହା ମୁଁ ଠିକ୍ ସେମିତ କାଗଜ କଲମରେ ଓତାର ଦେଇଛି ମାତ୍ର—ଏମିତ କ'ଣ, ତାଙ୍କର ଦ୍ୱାରା ନିରୂପିତ ଅଧ୍ୟାୟଗୁଡ଼ିକର ନାମକରଣ ପର୍ଯ୍ୟନ୍ତ ।...ଆଖ୍ୟାନ ଭାଗରେ ଯେଉଁ 'ମୁଁ'ର ଉଲ୍ଲେଖ ଦେଖିବେ, ତାହା ମୋ'ର ବନ୍ଧୁ, ମୁଁ ନୁହେଁ । ଗଳ୍ପ କୁହ, ବା ଜୀବନ-ଇତିହାସ କୁହ, ସେଥିର ସତ୍ୟାସତ୍ୟ, ବାସ୍ତବ-ଅବାସ୍ତବର ଦାୟିତ୍ୱ ମୋ'ର ବନ୍ଧୁ ତୁଲାଇବେ, ମୁଁ ନୁହେଁ ।...ତେବେ ତାଙ୍କର ତରଫ୍ ହୋଇ ପାଠକବର୍ଗଙ୍କୁ ଏତିକି ଅନୁରୋଧ କରିବି ଯେ, ତାଙ୍କର ଗଳ୍ପ, କିମ୍ବା ତାଙ୍କପ୍ରତି ସୁବିଚାର କରିବା ପୂର୍ବରୁ ସେମାନେ ଜୀବନ-ଦର୍ଶନକୁ ଯେମିତି ଉପେକ୍ଷା ନ କରନ୍ତି ।...ଲିପିକାର ।



# ଉଦ୍‌ବୋଧନ



ଚଣାବାଲ୍‌ଟିଏ...

ଚଣା ଫେର କରେନାହିଁ, ଠାଏ ବସି, ବକେ ।...

ମଧ୍ୟ-କଲିକତା ।...ମଧ୍ୟଭାଗ ।...କଲେଜ-ସ୍କୁଆର ।... ଯା'କୁ ଗୋଲ-ଦୀଘି କହନ୍ତି ।...ଗୋଲ-ଦୀଘି, ଏହି ନାମଟି କାହିଁକି ଯେ ହେଲା, ଦୀଘିର ଚାରି ସମକୋଣିଆ ଚଉହଦୀ ଦେଖି, ଗୋଲମାଲ ହେବାର କଥା । ତେବେ କୌଣସି ଗବେଷକର ପରାମର୍ଶ ନେଲେ, ସେ ନିଦ୍ୱନ୍ଦରେ ମତ ଦେବ ଯେ,ଯୁଗର ପରିବର୍ତ୍ତନ ସଙ୍ଗେ ମାନସିକ ରୁଚିର ବିବର୍ତ୍ତନ ଘଟିଥାଏ । ସେହି ବିବର୍ତ୍ତିତ ରୁଚିକୁ ଅନୁସରି ବସ୍ତୁ-ବିଶେଷ ତଦୁପଯୋଗୀ ରୂପ ରେଖ ଧାରଣ କରିଥାଏ ।--ତେଣୁ,ପୂର୍ବେ, ଅତି ପୂର୍ବେ ଜନ୍ମଦଶାରେ ଦୀଘିଟି ଥିଲା ସଂପୂର୍ଣ୍ଣ ଗୋଲାକୃତି, କ୍ରମେ ହୋଇଚି ଡିମ୍ବାକୃତି, ଅବଶେଷେ ଆୟତ କ୍ଷେତ୍ରାକାରରେ ତା'ର ବର୍ତ୍ତମାନ ଏହି ପରିଣତି । ଏହି ମତ ମାନି ନେଲେ, ପ୍ରଶ୍ନ ଉଠେ ନାମର ଧାରିବାହିକତା ଯେନି ।--ସେଥିକୁ ସେ ଏହିକଥା କହିବ ଯେ,

ଦେହର ଅବସ୍ଥାଭେଦ ସଙ୍ଗେ ଦେହୀର ନାମକରଣ ଜଣ୍ଡିତ ନ ଥାଏ । ଯେମିତି ଶିଶୁ ଦିନର 'କୁନା' ବୁଢାଦିନେ ବି ସେହି 'କୁନା' ନାମରେହିଁ ପରିଚିତ ।···ଅଥିର ଦେହୀ ଦେହାନ୍ତପାତ କଲେ ମଧ୍ୟ, ନାମର କେତୋଟି ଅକ୍ଷରକୁ ମାଧ୍ୟମ କରି ସେ ନିଜର ସ୍ୱାକ୍ଷର ରଖିଯାଏ କାଳର ଇତିହାସ ପୃଷ୍ଠାରେ ।···ଯେମିତି ରାମ, ରାବଣ ଇତ୍ୟାଦି ।··· ସୁତରାଂ ଦୀଘିଟି ଆଉ ଗୋଲ୍ ହୋଇ ରହି ନ ଥିଲେ ମଧ୍ୟ, ଗୋଲ୍-ଦୀଘି ଏହି ନବଜାତକ ନାମଟି ତା'ର ବଜାୟ ରହିଚି, ଓ ତା'ର ଜନ୍ମ-ଇତିହାସକୁ ସୂଚାଇ ଦେଉଛି । ···ଦିନେ ହୁଏତ ଦୀଘିର ପତ୍ତି ରହିବ ନାହିଁ, କିନ୍ତୁ ତା'ର ନାମଟି ନିରିପତ୍ତିର ପ୍ରତିଶ୍ରୁତି ହିସାବରେ ସ୍ମୃତି-ବେଦୀକୁ ଆଲୋକିତ କରି, ଅନିର୍ବାଣ ସଞ୍ଜ-ବତୀ ହୋଇ ରହିଥିବ ।

ସେ ଯାହାହେଉ, ଏହି ଗୋଲ୍-ଦୀଘିର ପଶ୍ଚିମପଟେ, ଯେଉଁଠି ମୋଟା ମୋଟା ରେଲିଂର ବାଡ଼ଘେରା ଉଦ୍ୟାନର ପ୍ରକାଣ୍ଡ ଲୌହ ଫାଟକ (ଯୁଗ୍ମ ରେଲିଂ କପାଟ ଯୁକ୍ତ ଅବଶ୍ୟ) ପ୍ରବେଶ ପଥର ଏକ ଆଡେ ଦୟାର ସାଗର ବିଦ୍ୟାସାଗରଙ୍କ ମର୍ମର ମୂର୍ତ୍ତିକୁ ସସମ୍ମାନେ ପହରା ଦେଉଛି, ତଥା ଅନ୍ୟଆଡେ ଦିବା ରାତି ଟ୍ରାମ୍, ଡବଲ ଡେକାର ଆଦି ଜାନ୍‌ବାହାନର ଚଳଚଳ-ମୁଖରିତ ନାମଜାଦା କଲେଜ୍‌ଷ୍ଟ୍ରୀଟର ବିପରୀତ ଫୁଟ୍‌ପାଥ-ବର୍ତ୍ତି ବିପୁଳକାୟ ସ୍ତମ୍ଭ-ତୋରଣ-ବିଶିଷ୍ଟ କଲିକତା ବିଶ୍ୱବିଦ୍ୟାଳୟର ଉତ୍ତୁଙ୍ଗ ସିନେଟ୍ ସଭା-ମଣ୍ଡପକୁ ଆମ୍‌ନା ସାମ୍‌ନା ବାଟ କଟାଇ ଦେଉଚି ସାଗ୍ରହେ, ସେଇଠି, ଫାଟକଦ୍ୱାର ସମ୍ପୂର୍ଣ୍ଣ ମୁକ୍ତ ଥିଲାବେଳେ, ଦ୍ୱାର ଦେଶର ଗୋଟାଏ ପଟେ, ମେଲା କପାଟକୁ ପିଠିକରି, ପିଠି ନ ଲଗାଇ ବସି, ଚଣା ବିକେ ଏହି **ଚଣାବାଲା** ।

ବୟସ... ? —ବର୍ଷ ଦ୍ୱାରା କଳି ତାହା କହିବା ଆଜିକାଲି ଦିନରେ ଏକ କଠିନ ସମସ୍ୟା । କାରଣ, କଳି-ଷଠା ଆଉ ଷାଠିଏ ହୋଇନାହିଁ ।...ଖବରକାଗଜମାନଙ୍କରୁ ବେଶ୍ ଜଣା ଯାଏ, ସେହି ସଂଖ୍ୟାର ଦୁଇଗୁଣ ତିନିଗୁଣ ପରମାୟୁ ନେଇ ଅଦ୍ୟାପି ଲୋକ ବଞ୍ଚି ବର୍ତ୍ତି ରହୁଛି ଓ କର୍ମ-ପଟୁ ରହୁଛି । ସୁତରାଂ ସଂଖ୍ୟାର ଯେଉଁ ମାନ ଗୃହୀତ ରହିଛି, ତାହା ଅନେକ ବର୍ଷପରୁ ଦୁଇ, ତିନି ଗୁଣ ନ କଲେ, କେମିତି ବର୍ଷଦ୍ୱାରା ବୟସର ପରିମାପ କରାଯିବ ? କେହି କେହି ଅବଶ୍ୟ କହିପାରନ୍ତି,—ଜନିସପାତି ଦରଦାମ ଅସମ୍ଭବ ବଢ଼ି ଚାଲିଛି, ତଥାପି ଆମର ଜୀବନୀଶକ୍ତି ସେହି ଅନୁପାତରେ କମୁଛି କି ବଢୁଛି, ସେଥିପ୍ରତି ଦୃଷ୍ଟି ନ ଦେଇ, ଜୀବନ-ଧାରଣର ମାନ ବଢ଼ିଛି, ବା ବଢ଼ିବା ସମ୍ଭବ ହୋଇଛି—ଏହିକଥା ଆମେ କହୁଥାଏଁ ।—ଠିକ୍ ସେହି ଦୃଷ୍ଟି-କୋଣରୁ, ବୟସସଂକ୍ରାନ୍ତ ବ୍ୟାପାରରେ ଏହିପରି ଗୋଟାଏ କିଛି କରଣୀୟ—ଅର୍ଥାତ୍ ଦେହୀର ସ୍ୱାସ୍ଥ୍ୟପ୍ରତି ଗୁରୁତ୍ୱ ନ ଦେଇ, ତା'ର ଅଭିବୃଦ୍ଧିର କ୍ରମବିସ୍ତାର ଗୁଡ଼ିକୁ (ଶୈଶବାଦି ଅବସ୍ଥାକୁ) ଦୀର୍ଘାୟିତ କରିଦେଲେ ହେଲା । କିନ୍ତୁ ଏହା କରାଗଲେ ୬୦ବର୍ଷର ବୁଢାକୁ ଜୁଆନ୍ ବୋଲି କୁହାଯିବ କିନା ।...ଗୁଡ଼ ଏ' ସବୁ ଅଡୁଆ କଥା,—ତର୍କବାଦୀ ଲଗାଇ ଥା'ନ୍ତୁ । ଯାକୁ ଅଡେଇ ଯିବା ସତର୍କ-ବାଦୀର କାମ ।...

ଅତଏବ ଚଣାବାଲ୍ ଶେଷରେ କୁହାଯିବ-ବିପ୍ଳବୀ ବୟସ ବିପର୍ଯ୍ୟୟ-ଅଭିଯାନ ସୁରୁ କରିଥିଲେ ମଧ୍ୟ, ତାର ଗେଡ଼ା ଡାଗଡ଼ା ଦେହକୁ ଆଦୌ କାବୁ କରି ପାରିନାହିଁ ।...ଅତିରିକ୍ତ ପ୍ରାଣ-ପ୍ରାଚୁର୍ଯ୍ୟ ଯୋଗୁଁ ଏହା ସମ୍ଭବପର, ଏ'କଥା ନୃତତ୍ତ୍ୱବିତ୍‌ମାନେ ସ୍ୱୀକାର କରିବେ,ସନ୍ଦେହ

ନାହିଁ । ଅଧିକନ୍ତୁ ମଧ୍ୟ, ତାର ଅବସ୍ଥାନର ଗଠନ-ଗାଠନ, ଭୂଷଣ-ବାସଣ, ଗତି-ଚଳନ, ଧରଣ-ଧାରଣ ଯେ କେହି ଠିକଏ ନିରଖି ଦେଖିବ, ସେ କହିବ ଯେ,—ଯେତେବେଳେ ତା'ର ଉମର କଞ୍ଚା, ଦେଲ୍ ସଙ୍ଗା ଥିଲା, ସେତେବେଳେ ସେ ପରୁଆ ନ ରଖି, ସରମ ନ କରି, ପାଦରେ ଘୁଙ୍ଗୁର ବାନ୍ଧିଚ, ମୁହଁରେ ରଙ୍ଗ ବୋଳିଚ, କୁଞ୍ଚ-କୁଞ୍ଚ ଆ ବାବୁରି କେଶକୁ ସାଉଁଳି ପିଠିଆଡ କରିଚ, ମଥାର ତାଳୁରେ ଟୋପିଟିପାର ମୟୂର ଚନ୍ଦ୍ରିକା ଶୋଭନ କରିଚ, କାନର ଲମ୍ବାରେ ଝୁଲରବାଲା କାନଫୁଲ ମାରି ବସେଇଚ, କଳା ମଚ୍ ମଚ୍ ଅଙ୍ଗରେ ଫୁଲବାଲା ଅଙ୍ଗି ମଡେଇଚ, ଚଣାର ଝୋଲଟିଏ କାନ୍ଧରେ ଓହଳେଇଚ, ଏକ ହାତରେ ଟିଣାର କାହାଳିଟିଏ ଅନ୍ୟ ହାତରେ ଲମ୍ବ ଲମ୍ବ କାଗଜ ଖିଲର ଗୋଛଟିଏ ଧରିଚ, କମର ଚଉପଟେ ଘାଗୁଡ଼ି ବେଢ଼ିଚ, ପୀତବସନକୁ ଦୁଇ ଫେର କରି ସେଥିରେ ଦୁଇଚରଣକୁ ନିବିଡ଼ ଭାବରେ ଘୋଡ଼ାଇ ପାଦ ମୂଳରେ ତାହା ଶେଷ କରିଚ, ମାଲ କଚ୍ଛାଟାଏ ମାରିଚ, ଆଉ ନୃତ୍ୟ ଭଙ୍ଗିରେ ଝମର୍ ଝମର୍ ଗତି ଚଳପଥ ଦୋହଲାଇଚ, ଥାଇ ଥାଇ ଟିଣାର ଚୁଙ୍ଗାକୁ ମୁହଁରେ ଲଗାଇ, ସ୍ୱାଭାବିକ୍ ସ୍ୱରକୁ ବିକୃତ କରିଚ ଓ ପର୍ଦ୍ଦା ଅସ୍ୱାଭାବିକ ରକମ ଚଢ଼ାଇ, ଲହରେଇ ଲହରେଇ ଡାକିଛି—'ଚ-ଣା-ଚୂ-ର···ଗ-ର-ମ୍'!!··

ସେହି ଲମ୍ଫୁଧରି ସେ କେତେବେଳେ ଗୋଲ୍‌ଧାଡ଼ିର ଚଉହଦ୍ଦ ପରିକ୍ରମା କରନ୍ତି, କେତେବେଳେ ବା ସାହି ସାହି ବୁଲି ତାର ପଣ୍ୟ ଫେରି କରନ୍ତି—ଏହା ନିଶ୍ଚୟ ।···ସେତେବେଳେ ରାସ୍ତାର ପିଲାଏ ସେ ତା'କୁ କେନ୍ଦ୍ର କରି ଗହଳ ଜମାଇ ଥିବେ, ଘରୁଆ ପିଲାଏ ତା' ଡାକ ଶୁଣି ଘରର ଅଳିନ୍ଦ ଭାଙ୍ଗି ଥିବେ, ଅଧିକନ୍ତୁ ସାହି ସାହିର

ଯଥା-ସ୍ଥିତ ଭେଦ-ଭାବ ଭୁଲି, ସାଙ୍ଗର ପିଲାଏ ଯେ ଅଭେଦ ପ୍ରୀତି-କୁଙ୍କୁମ ମଖେଇ, ତା'ଙ୍କୁ ମୁଖିଆ କରି ଅଖଣ୍ଡ ମାନବିକତାର ପନ୍ଥୁଅର ଚଲାଇଥିବେ—ଏହା ନ ବଖାଣିଲେବି ଚଳେ ।···

ବର୍ତ୍ତିମାନ ବୟସ ହେଲା···ବହପ ନ ହଟିଲେବି. ବଳ କମିଲା ···ମନ ନରମଥିଲେ ବି, ଗରମ ଘାରିଲା···ଛନ୍ନକୁଲଖିଆ ହୋଇ ନାଚିବ, ସେ ଜୁ' ଆଉ ନାହିଁ···ସେଥିପାଇଁ ସ୍ଥାଣୁ ପାଲଟିଛି, ବାଛି ବାଛି ସେହି ସ୍ଥାନଟିକୁ ଦଖଲ କରିଛି, ଆଜି ସେଇଠି ଜୀବନର ପସରା ମେଲେଇ ଦେଇଛି ।

ସମାଜର ନିର୍ଦ୍ଦେଶ—ଜୀବିକା ବିନା ଜୀବନ-ଧାରଣ ଅସମ୍ଭବ, ଅଥଚ ସେହି ଜୀବିକା ନିରଙ୍କୁଶ ଔପାର୍ଜ୍ଜନିକ ବୃତ୍ତି ନୁହେଁ, କି ସେହି ଜୀବନ ନିଃସଙ୍କୋଚ ଜୈବିକ ପ୍ରବୃତ୍ତି ନୁହେଁ ।···ଏହି ବିରୋଧାଭାସ ଚଣାବାଲା ବୁଝୁ କି ନ ବୁଝୁ, ସେ ଯେ ସମାଜର ଜୀବ, ଏ'ଆଭାସ ନିର୍ବିରୋଧରେ ବାଡି ଦେଇଚି ଜନ ସମାଜକୁ, କହିବାକୁ ହେବ ।

ଉଠା-ଦୋକାନ ତା'ର ।···ନିତି ଗୋଧୂଳି-ଲଗ୍ନରେ ଲଗାଏ ।··· ଜଣେ ମଥା-ମୋଟିଆ ଦୋକାନର ଯାବତୀୟ ସାଜ ସରଞ୍ଜାମ, ତୈଜସପତ ଓ ପଣ୍ୟ ଦ୍ରବ୍ୟାଦି ଝଙ୍କାରେ ପୁରେଇ, ବୁଜୁଲା କରି କାନ୍ଧରେ ଝୁଲେଇ, ବଳକା ହେଲେ, ଗୋଟିଏ ହାତରେ ଓହଳେଇ, ଆରହାତଟି ମଥାର ଝଙ୍କା ସମାଳି ଥିବାରୁ ଅକାମୀ ନଥାଏ—ଏହିପରି ନାନା ଛନ୍ଦ ବନ୍ଧରେ ବୋହି ଘେନି ଆସେ ।--ବାଟରେ ଆସିଲାବେଳେ

ସେ ଆଗେ, ଆଗେ ଗୁଳିଥିବ···ଚଣାବାଲା ସାମାନ୍ୟ ବ୍ୟବଧାନରେ ତା'ପଛେ, ପଛେ ଆସୁଥିବ।···ଯଦି ବ୍ୟବଧାନର ଦୂରତ୍ୱ କେତେବେଳେ କେମିତି ବଢିଯାଏ, ଲୋକ ଗହଳି ଯୋଗୁଁ ହେଉ, କି ମୋଟ ବାହୀ ମୋଟିଆର କ୍ଷିପ୍ରତା ଯୋଗୁଁ ହେଉ (ବିଜ୍ଞାନର ନିୟମ, ବୋଝର ଓଜନ କମାଇବାକୁ ହେଲେ, ଗତିର ବେଗ ବଢ଼ାଇବାକୁ ହୁଏ) ତେବେ ଚଣାବାଲା ହାଁକ୍ ଛାଡ଼ି ତା'ର ଗତିବେଗ ଥମାଇ ଦିଏ, କିମ୍ବା ନିଜର ଗତିବେଗ ବଢାଇ ଦିଏ···ମୋଟ ଉପରେ ସଦାବେଳେ ତା'ପ୍ରତି ଯେ ପହରଦୃଷ୍ଟି ରଖିଥାଏ, ଏହା କହିବା ବାହୁଲ୍ୟ ମାତ୍ର।... ବେଳେ ବେଳେ ଦେଖାଯାଇଛି, ବୋଝିଆକୁ ବୋଝ ବଳିପଡ଼ିଲେ, ଅତିରିକ୍ତ ଜିନିଷପତ୍ର ସେ ନିଜେ କାନ୍ଧେଇ, ମୁଣ୍ଡେଇ ଆଣିବାକୁ କୋତେଇ କରିନାହିଁ। ହୋଇଥିବ—ଉପରବାଲା ତଳକୁ ଖସିଲେ, ତଳର ମର୍ଯ୍ୟାଦା ବୁଝେ ନାହିଁ,···ତଳବାଲା ଉପରକୁ ଉଠିଲେ, ତଳର ମର୍ଯ୍ୟାଦା ବେଶ୍ ବୁଝେ···କିନ୍ତୁ ଗୋଟିଏ ବିଷୟ ଲକ୍ଷଣୀୟ ଯେ, ଚଣାବାଲାକୁ ଯେତେ ବୋଝ ହେଲେବି, କାରବାଇଡ ଲାଇଟ୍ ଷ୍ଟାଣ୍ଡଟି ହାତରେ ଧରି ଆସିବା, ଓ ନିଜର ବସିବା ଆସନଟି କାଖରେ ଯାକି ଆଣିବା—ଏ' ତା'ର ନିତି-ଦିନିଆ କାମ।... ଏମିତି କ'ଣ ଦିନେ, ଦିନେ ବୋଝିଆକୁ ବୋଝ ନିଅଣ୍ଟ ଥିଲେବି, ଏ' ବୋଝ ତା'ର ନିଜର।...ଯେମିତି ସହଜାତ କବଚ କୁଣ୍ଡଳ। ନିର୍ଦ୍ଦିଷ୍ଟ ସ୍ଥାନରେ ଦୁହେଁ ପହଞ୍ଚିଗଲା ପରେ, ମୋଟିଆ ମୁନିବର ସହାୟତାରେ ବୋଝ ଓତାରି ଦେବ—ଖଣ୍ଡିଆ ଝୋଟ୍ଅଖାଏ ସେ'ଠି କେଉଁଠି ବୋଦା-ମୂଳେ ଲୁଚେଇ ଛପେଇ ରଖିଥିବ ଯେ, ତାହା ବାହାର କରି ଆଣି, ସେଥିରେ ଦୋକାନର ଆସ୍ଥାନଟି ଓ ତା'ର ବହିଃସ୍ଥାନଟି ନିର୍ମଳ କରି ଓଲାଇ ଦେବ; ଗୋଟାଏ ଟିଣାର ମଗ୍ ବି ଝୋଟ୍ଅଖାର ତେଲ୍ ଲୁଣର ସାଥି ବରାବର ରହିଥାଏ

ସେମିତ୍ତି ନିତ୍ୟନ୍ତି ପହିଲାରେ ତା'ର ସାହାଯ୍ୟରେ ଧାଡ଼ିରୁ ପାଣି ଆଣିବ, ମୁନ୍ଦା ମୁନ୍ଦା କରି ଠିକଣା ଯେଉଁଠାରେ ଛୁଇଁ ଦେବ; ତା'ପର ଦୋକାନ ଛାଦବାଡ଼ରେ ଲଗିଯିବ । ଦୋକାନଟି ଏମିତି ସୁନ୍ଦର ଭାବରେ ଖଞ୍ଜିବ ଯେ ଟିକିଏ ଅଡ଼ବାଙ୍କ ରହିବ ନାହିଁ···ମନେ ହେବ ଯେମିତି ଉଠା—ଦୋକାନ ନୁହେଁ, ଠା—ଦୋକାନ ।...ଇତି ମଧ୍ୟରେ ମୁନିବ ତା'ର ନିତ୍ୟକର୍ମ ବଢାଉଥିବ ଏହିପରି—ସେ ଧାଡ଼ିକୁ ଯିବ, ଗୋଡ଼ ହାତ ନିର୍ମଳ କରି ଧୋଇବ, ମଥାରେ ପାଣି ଛୁଇଁଦେବ (ମୁହଁରେ ଅବଶ୍ୟ କ'ଣ ବଡ଼ ବଡ଼ କରୁଥିବ ସେତେବେଳେ), ତାଳଟି ଦୁଇ ତିନି ଥର ହଳାଳି ତାଳେ ପାଣି ନେବ, ଲେଉଟିବ; ଲେଉଟା ପଥରେ ବିଦ୍ୟାସାଗରଙ୍କ ମୂର୍ତ୍ତିକୁ ଭେଟି ବଢେ ପ୍ରଣାମ ହେବ (ଅବଶ୍ୟ ମହା ମାନବତାର ପ୍ରତୀକ ଏ' ବିଶ୍ୱାସରେ ନୁହେଁ), ସେଥିରେ ବି ମନ ତୃପ୍ତ ହେବ ନାହିଁ ଯେ, ମୂର୍ତ୍ତିର ଗୃହପଟ ଘେରି ରେଲିଂ ବାଡ଼ରେ ଛାଏ ଛାଏ କରି ମଥା ପିଟିବ—ତା'ପର ସିଧା ସିଧା ଦୋକାନ ପାଖକୁ ଆସି, ଅଲଗା କରି ଠାଏ ଥୋଇଥିବା ନିଜର ଆସନଟିକୁ ନିକେ ଆଣି ପାରିଦେବ ଓ କରସ୍ପର୍ଶ ଲଗାଇ ତାର ଛୁଆଁ ମଥାରେ ଲଗାଇବ, ଅନ୍ତତଃ ତିନି ଥର ଏହିପରି କରି ଆସନ ଗ୍ରହଣ କରିବ ।

ଆସନଟିକୁ ମୁଁ କୁତୂହଳୀ ହୋଇ ଲକ୍ଷ୍ୟ କରିଚି । ତେଲ ଚିକଟା କାହିଁରେ କ'ଣ । ତାଳି ଉପରେ ତାଳି ପଡ଼ିଚି । ଫ୍ଲେଟ ଫ୍ଲେଟ ଫାଟ ଏ'ଠି ସେ'ଠି ଫୁଟି ପୁଣି ଦେଖା ଦେଇଚି, ହେଲେ ସିଲେଇ ଯୋଗ୍ୟ ପରିଣତିକୁ ଆସି ନାହିଁ । ପୁରୁ ଆସନଟି ଗଦୀ ସତ, କିନ୍ତୁ ତା' ଭିତରେ କଡ଼ା କି ତୁଳାର ଗଦା, କି ଉଭୟର ମିଶାମିଶି, ତାହା ଠିକ୍ କରି କହି ହେବ ନାହିଁ ।—ତେବେ ଆସନଟି ଦୋକାନର

ପ୍ରତିଷ୍ଠା ବା ଜନ୍ମସ୍ଥାନ ତର ଅଳ୍ପଭ୍ରମ ଫଳକ ବିଶେଷ ଏହା ବେଠିକ୍ ନୁହେଁ—ମାଲିକ ଯେ ଏହି ହିସାବରେ ଏହାକୁ ସାଇତା ଧନ କରି ରଖିଚି, କେବଳ ସେତିକି ନୁହେଁ, ଏହା ତା'ର ଲକ୍ଷ୍ମୀ-ଆସନ, ପୁଣି ଏ' ବିଶ୍ୱାସ ଯେ ସଂସ୍କାରମୂଳକ ନୁହେଁ, ପ୍ରମାଣମୂଳକ ଏହା ସେ ପରଖି ନେଇଛି । ଦିନେ ମୁନିବ କେଉଁ କାମରେ ଅଟକି ଯାଇଥିଲେ । ମୋହିଆ ଲଗ୍ନ ଗଡ଼ି ଯାଉଚି ଦେଖି, ଆସନ ସମେତ ଦୋକାନର ସାମାନ୍ ଭିତି ଆସି, ଠିକ୍ ବେଳେ ଦୋକାନ ଖଞ୍ଜି ଦେଇଥିଲା, ମୁନିବଙ୍କୁ ଖୁସି କରିଛି ବୋଲି ମନେ ମନେ ଭିଅ ଖେଳେଇ ଖାଉଥିଲା...ହେଲେ, ସେଦିନ ବିକୀବଟା ତା'ର ଅଦୌ ଭଲ ହୋଇ ନଥିଲା—ହୁଏତ କାରବାର ମାନ୍ଦା ଯୋଗୁଁ ବିକୀ ଭଲ ହୋଇ ନ ଥିବ ସେଦିନ, କିମ୍ବା ଦୋକାନୀ ଦିଲ୍ ଗିଲ୍ ମନ ପୋଷଣ କରୁଥିବା ଯୋଗୁଁ ବିକୀରେ ମନ ଭଲ କରି ଲଗେଇ ପାରି ନ ଥିବ ବୋଲି ଗାହକ ଫେରିଥିବେ, କିମ୍ବା ସ୍ୱାଭାବିକ ହୋଇ ପାରେ, ସଦାଦିନିଆ ବିକୀ ବଟା ହୋଇଥିଲେ ବି ଅଧିକ ବିକୀ ହୋଇ ଥା'ନ୍ତା । ସେଦିନ ଏ' କଥା ତା'ର ମନ କହୁଥିବ—ତତ୍ତ୍ୱଦର୍ଶୀମାନେ ଏହିପରି ଯେଉଁ ମତବାଦକୁ ସ୍ଥାନ ଦିଅନ୍ତି ପଛକେ, କିନ୍ତୁ ବାସ୍ତବଦର୍ଶୀ ମୋହିଆ ମୁଣ୍ଡରେ କାଉ ଉଡ଼ୁଥିଲା ସେଦିନ । ମୁନିବ ଏହି କଥାକୁ ଆଳ, ବା ମୂଳ କରି କମ୍ ଗାଳି ଫଜିତ୍ କରିଥିଲା ତା'କୁ ! ସେଦିନର ମଜୁରିଟା କଟାଗଲା, ଆହୁରି ବି ପଇ ପଇ କରି ତାକିଦ୍ କରି ଦିଆ ହେଲା—ଆଉ ଦିନେ ଏହି ଆସନ ବିହରେ ଟିପ ଲଗେଇଚିତ, ତା'ର କାନ୍ କାବୁଲ୍, ହାଁ... ! ଏହି ଘଟଣାଟି, ମୋହିଆ ଦେଶକୁ ଯିବ ବୋଲି ତା'ର ବଦଳିଆ ଜଣକୁ କାମର ହାଲ୍ ବୁଝାଇ ଦେଉଥିବା ଭିତରେ, ନିଠେଇ କରି କହୁଥିଲା ଓ ସେଥିପ୍ରତି ଜୋର୍ ଦେଉଥିଲା, ଏହା

ମୁଁ ସେଇଠି ପାଖ ପଡ଼ିଶା ବେଞ୍ଚରେ ବସି ଗୋଟି ଗୋଟି କରି ଶୁଣିଥିଲି ।

ତା'ପର ଅହୁରି କହୁ ନାହିଁ— ମୁନିବର ବସିବା ଆଗରୁ, ମୋଟିଆ କାର୍ବାଇଡ୍ ଟିଣାରେ ପାଣି ଭର୍ତ୍ତି କରି, ଲାଇନ୍‌ଟି ଠିକ୍ କରି ଠିକ୍ ସ୍ଥାନରେ ରଖି ଦେଇଥିବ—କେବଳ ମୁନିବ ଠିକଣା ବେଳକୁ ଦିଆସିଲି ମାରି ଲାଇନ୍ ଜଳେଇବେ ଏତିକି କାମ ବାକୀ ରଖିଥିବ ।···ତା'ପର ସାମୟିକ ଭାବରେ ମୋଟିଆର ଛୁଟି ।···ଲାଇନ୍‌ଟି ସଜାଡ଼ି ଦେବାର ହୁକୁମ ଥିଲେ ମଧ୍ୟ ମୁନିବ ନିଜେ ବୋହି ଆଣିବା ଓ ଜାଳିବା ଭିତରେ କିଛି ଗୋଟାଏ ରହସ୍ୟ ଅଛି ବୋଲି ମୋ'ର ମନେ ହୁଏ ।···କାହିଁକନା—ସଂଜବତୀ ହୁଏତ ଅନ୍ୟ କେହି ବଳି ଦେବ, କିନ୍ତୁ ତା'କୁ ଜାଳିବ ଗୃହକର୍ତ୍ତ୍ରୀ ନିଜେ···ତେବେ ନିଜେ ବୋହି ଆଣିବା ? ...ହୁଏତ ସେହି ପବିତ୍ର ଜିନିଷର ପବିତ୍ରତା ଯେତେଦୂର ଅକ୍ଷୁଣ୍ଣ ରଖାଯାଏ, ତାହାହିଁ ଏକମାତ୍ର ହେତୁ ।...

ଦୋକାନଟି ସମ୍ପୂର୍ଣ୍ଣ ଲାଗିଲା ପରେ ଦେଖାଯାଏ —ଛୋଟିଆ କାଚର ବାକ୍ସଟିଏ—ଆଡ଼ରେ କମ୍, ଦୀର୍ଘରେ ବେଶି, ଉଚ୍ଚରେ ମୁଠିଏ ହେବ ।···ପ୍ରେମର ରଙ୍ଗ ଚିଠା, ଚିଠା...କଳା କି ନାଲି ବାରିହେବ ନାହିଁ...ତେବେ, ତାହା ରଙ୍ଗ, ବେରଙ୍ଗର ଗୋଟାଏ ରକମାରି, ଏହା ବରଂ କହିବା ସଙ୍ଗତ ହେବ । ...ବାକ୍ସର ସାମ୍ନା ପଟ କାଚଟି ଚିଡ଼ିକି ଯାଇଛି···ଏକ କୋଣରୁ ଆରକୋଣ ଯାଏ ଯେଉଁ ରେଖାପାତ ଘଟିଛି, ତାହା ଜ୍ୟାମିତିକ କର୍ଣ୍ଣ

ବିଶେଷ କହିଲେ ଚଳେ । —ଦୁଇ ପାଖର ଦୁଇଟି କାଚ ମଝିରୁ ଗୋଟିଏ ଦଉ ଥିଲେ ବି ନଡ଼ବଡ଼...ଅନ୍ୟଟିର ଉପର ପଟରୁ ଗୋଟିଏ କୋଣରୁ ଫାଲେ ଛାଡି ଯାଇଛି ଯେ, ସେହି ଫାଲଟିରେ ଅଭ୍ରକ, ଟିଣ୍ଣ ଖଣ୍ଡେ ମୋଟା କାଗଜ ଓ ଲେହି ଅଠା ପରସ୍ପରର ଚୁମ୍ବକ ନିବିଡତାରେ ଭରି ଦେଇଛନ୍ତି ।···ଏହି ବାକ୍ସର ତାଳକୁ ଚୁମ୍ବି ନ ଚୁମ୍ବିଲା ଭଳି ଗଡ଼ାଣିଆ—ପାହାଡ-ପ୍ରମାଣ ଠିଆ ଝାଲଚଣାର କାନ୍ତି ···ତାର ପଛ ପଟେ, ଆସନରେ ଉପବିଷ୍ଟ ସ୍ୱୟଂ ଦୋକାନୀ । ...ଟିକିଏ ଦୂରରୁ ଦୋକାନ ଓ ଦୋକାନୀ ଆଡକୁ ସିଧା ସଳଖ ଚାହାଁଇଲେ, ଗୋଟିଏ ବେଦୀ ଉପରେ ଧ୍ୟାନମଗ୍ନ ଯୋଗୀର ଅବଶ ମୂର୍ତ୍ତିଟିଏ ସ୍ଥାପିତ, ଏହିପରି ମନେ ହେବ !...ଦୋକାନୀର ବାମ ପଟେ ଗୋଟାଏ ବେତା ବା ବଡ ଆକାରର ବେତର ଟୁଙ୍କି, ସେଥିରେ ଅଛଡା ଚିନାବାଦାମର ସ୍ତୂପ, ତାହା ପିରାମିଡ ଭଳି ଗୋଳିଆ ହୋଇ ବେତାର ପରିଧିକୁ ଲଙ୍ଘି ଯାଇଛି...ଡାହାଣ ପଟେ କାନ୍ଥକୁ କାନ୍ଧ ଲଗି ଚଉରସିଆ ଡେଙ୍ଗା ଡେଙ୍ଗା ଟୁଙ୍ଗାର କନ୍ଧାବାର, ସେ-ସବୁରେ ଫନ୍ଦା ମୁହଁକୁ ବନ୍ଧା ନ ପଞ୍ଝଲା ଭଳି ଭର୍ତ୍ତି—କାହିଁରେ ଚିଡ଼ିକା-ଭଜା କାବୁଲି ମଟର, କାହିଁରେ ଛଡା ଚିନାବାଦାମର ଛାଲ-ଲଗା ସନ୍ତୁଳା ଗୋଟା ଗୋଟା ଦାନା, କାହିଁରେ ବା ମିହି ନଡ଼ିଆ-କୋର୍-କଟୁରି ମସଲା ଦିଆ ମୁଢି —ଏହିପରି ନାନା ଜାତର ପଣ୍ୟ-ସମ୍ଭାର ।...ସବୁରିକୁ ବଳି ଗୋଲ ବସିରିଆ ହୋଇ ପାଖକୁ ଲଗି ଥୁଆ ଷ୍ଟୋଭ ଠୁଙ୍ଗାଟିଏ...ସେଥିରେ ଏକ ପ୍ରକାର ସାଗୁଆ ରଙ୍ଗର ଚଟଣି, ଆଉ ତା'କୁ ଧରି ଗୋଟିଏ ପୁଡ଼ିଆରେ (ଅବଶ୍ୟ ମୁକୁଳା) ଶୁଖିଲା ଲଙ୍କାଭଜାର ଚୁର-କର୍ଜରିତ ଲବଣର ଗୁଣ୍ଡ —ସବୁ ବାଲିଠୁଁ ବି ସବୁ ।

ଶୁଣିଛି, ଏହି ଶେଷୋକ୍ତ ଜିନିଷ ଦୁଇଟି ସେ ନିଜ ହାତରେ ତିଆରି କରିଥାଏ ।—ଅନ୍ୟାନ୍ୟ ଦ୍ରବ୍ୟ ପ୍ରତି ହତାଦର କରିବି, ଏ୍‌ପ୍ରତି ଅନେକାଳେ ନୁହେଁ ।—ପ୍ରଥମ କାରଣ ବୋଧ ହୁଏ, ଏ' ଦୁଇଟି ଯୌଗିକ ପଦାର୍ଥ, ଯୋଗ କରିବାର ଗୋଟାଏ ଭାଗ ମାପ ରହିଛି । ଦ୍ୱିତୀୟ କାରଣ ହୁଏତ, ଯଦି ସେହି ଗୁପ୍ତ ବିଦ୍ୟାଟି ଅନ୍ୟ କେହି ହାସଲ କରିନାଏ, ତେବେ ତା'ର ପ୍ରତିପତ୍ତି ଇତି । କାହିଁକିନା ଗୋଲଦୀଘିର ଆଉ ଆଉ ଗ୍ଲେଟ ବଡ ପ୍ରବେଶ ଦ୍ୱାରରେ, ଆଖେ ପାଖେ, ବାହାରେ ଭିତରେ କାହାଣ କାହାଣ ଚଣାବାଲା ବସି କାରବାର ଚଳାନ୍ତି, ହେଲେ, ପଟେ ଫକେଇ ଏ'ଯାଏ ତା'କୁ କେହି ହଟାଇ ପାରି ନାହିଁ ପ୍ରତିଯୋଗିତାରେ —ବରଂ ସମସ୍ତେ ହେଁଟ ମସ୍ତକରେ ତା'କୁ ଓସ୍ତାଦ୍ ବୋଲି ସ୍ୱୀକାର କରିନେଇଛନ୍ତି ।...ଏଥିରେ ଯେ ତା'ର ଦମାକ ବଢିଯାଇ ନାହିଁ, ତାହା ନୁହେଁ ।...ଦମାକ ମଣିଷର ମେରୁଦଣ୍ଡ !—ଏହି ଦଣ୍ଡ ତା'ର ଅଖଣ୍ଡ ଅଛି ବୋଲି, ସେ ବଯ୍ସକୁ ବି ଦାଣ୍ଡି ଠିଆ ହୋଇଚି, ନାହିଁତ କେଉଁ ଦିନୁ ସର୍ବସ୍ୱ ପାଲଟି ଯା'ନ୍ତାଣି, ଏହାହିଁ ମୋ'ର ଧାରଣା । ...ପ୍ରକୃତରେ ଏହି ଲବଣ ଓ ଚଟଣିର ପରଖ ଯେ ତା'ର ଯାବତୀୟ ପଣ୍ୟ-ଦ୍ରବ୍ୟର ପରଗୁଣ ଗୁଣ ଗୁଣ ବଢାଇ ଦିଏ, ଏକଥା ଯେଉଁମାନେ ପରଖିଚନ୍ତି, ସେହିମାନେ ବଖାଣିଛନ୍ତି । ଥରେ ମୁଁ ଉଦ୍ୟାନର ଯେଉଁ ବେଞ୍ଚିଟିରେ ସଦା ଅନେ ବସେ, ସେହି ଦଖଲ ବେଞ୍ଚରେ ବସିଚି, ଏହି ସମୟରେ ଦୁଇଜଣ ଚଣା-ରସିକ ଏହି ଚଣାବାଲାଠାରୁ ଚଣା ମୂଲେଇ ଆଣି, ମଁଚ ମଁଚ ଚୋବାଇ ଚୋବାଇ ମୋର ସାମନାରେ ଦାଖଲ ହେଲେ, ଯେଗା ଫାଙ୍କା ଦେଖି ଜବର ଦଖଲ ବସାଇଲେ, ଓ ଖୋସ୍ ମିଜାଜ୍‌ରେ ଚଣାର, ବିଶେଷ କରି ମସଲା ଦୁଇଟିଓ

ଗୁଣ କୀର୍ତ୍ତନ କରିବାକୁ ଲାଗିଲେ, ମୁଁ ଚଣା-ଭକ୍ତ ନ ହେଲେ ମଧ୍ୟ ଭକ୍ତି ଗଦ ଗଦ ପ୍ରାଣରେ ଶୁଣିଥିଲି ।

ଏଥର ବାରବାର ଗୁହଳେ । ଗହଳିର ଛୁଡ଼ ବାଡ଼ ନ ଥାଏ । ବେଳେ ବେଳେ ବାରୁଣୀଯାତ୍ରା ଲାଗିଯାଏ । ସେତେବେଳେ ସେହି ଗହଳି ଏମିତି ବହଳ ହୋଇ ଦୋକାନକୁ ଘେରି ପକାଏ ଯେ, ଦୋକାନ ଓ ଦୋକାନୀ କାହିଁ ଲୁଚି ଛପି ଯାନ୍ତି—ସତେ ଯେମିତି ମଧୁଭାଣ୍ଡକୁ ଅଦୃଶ୍ୟ କରି, ଡାଳିବନ୍ଧ ମଧୁଲେହୀଙ୍କର ନିଘଞ୍ଚ ପରସ୍ତ ଏହିପରି ମନେହୁଏ ।...ସେତେବେଳେ ସେ କି ଫୁର୍ତ୍ତିରେ ମାଲ ସରବରାହ କରେ, ତା' ଦେଖିବାର କଥା ।... ବଂଶ-ହାତର ନିପୁଣତା ଚଳାଇ, ଏକ ହାତରେ ନାନା ଟୁଙ୍ଗାରୁ ରକମ ରକମ ମିଶାଇ ଖିଲ୍ଲିଟି ଭରି, ଗହକୀକୁ ବଢ଼ାଇବ ଓ ଅନ୍ୟହାତରେ ଆଗେ ପଇସା ଧରି, ପରେ ସଉଦା ଗୁଞ୍ଜି, କାହାରିକୁ ହୁଁ ଚୁଁ କରିବାର ମଉକା ନ ଦେଇ, କିପରି ସୁରୁଖୁରୁରେ ଏକ ଏକ କରି ତାଙ୍କୁ ବିଦା କରିବ, ତାହା ଯେ ଆଖିରେ ନ ଦେଖିଛି, ଯେତେ ବର୍ଣ୍ଣନା କଲେ ବି ସେ କଦାପି ପ୍ରତ୍ୟୟ ଯିବ ନାହିଁ ।

ଶିଶୁଙ୍କ ଠେଇଁ ତା'ର ଅସୀମ ସ୍ନେହ-ଶ୍ରଦ୍ଧା । କଳର ପିତୁଳା ପରି କାମ କରି ଯାଉଥିବ, କଳର ପୁତ୍ତଳି ପରି ମୂକ ହୋଇ ରହିଥିବ, କିନ୍ତୁ ଶିଶୁଟିଏ ଯଦି ହାବୁଡ଼ିଛି, ତେବେ ସେହି ଜଡ଼ତା କେଉଁଠି ଅପସରି ଯାଏ, ଯେଉଁ ମୂର୍ତ୍ତି ଦେଖାଦିଏ ସେତେବେଳେ, ତାହା ଦରଦୀ ହୃଦୟର ମୂର୍ତ୍ତି-ବିକାଶ । ଯେତେ ଗହକୀ ଥାଉ,

ଗନ୍ଧଳ ଥାଉ, କାହାର ସାଥିରେ ପିଲଟିଏ ଦେଖିଲେ, କିମ୍ବା କୌଣସି ପିଲା ତା' ଆଗ-ସାମ୍ନାରେ ପଡ଼ିଗଲେ, ତେବେ ତା'ର ଆବେଗର ମୁଦା-ଢ଼ଙ୍କ ଫିଟିଲା, ସିଲେଇ ଭୁଲ୍ ନ ଅଭୁଲ୍ ହୋଇ ଫିଟିଲା ଜାଣ, ···କାହାକୁ 'ମୁନ୍ନା', କାହାକୁ 'ବୁନ୍ନା', କାହାକୁ 'ଝୁନ୍ନା', କାହାକୁ 'ଝୁନା', କାହାକୁ 'ଖୋକୀ', କାହାକୁ 'ଖୋକା', (ବେଶୀର ଭାଗ ଝଗଝୋଳ୍ଲ ଡାକ ଶୁଣାଯାଏ)—ଏହି ସବୁ ନାନା ସମ୍ଭାଷଣରେ ଆପ୍ୟାୟିତ କରି, ଆଗକରି ସେମାନଙ୍କ ହାତରେ ଗୋଟିଏ ଯୋଡ଼ିଏ ଅଛଡ଼ା ଚନାବାଦାମ ଧରାଇ ଦେବ, ତା' ପର ଯଉଁ କଥା। ··· କୌତୁକିଆ ପିଲା ଦେଖିଲେ କଥା ସରିଲା।···ତା'କୁ କୋଳକୁ ଟାଣି-ନେବ, ଗେଲବସର କରିବ—ପିଲଟି ଅସ୍ଥିର ପାଇ, ଚନାବାଦାମ ଟୋକେଇରୁ ମୁଠାଏ ଚନାବାଦାମ ତା'ର କଅଁଳ ବଳଟକ ମୁଠାରେ ଉଠାଇ ନେଲେ, ଚଣା-ବାଲା ଆଉ ମୁଠାଏ ତା'ର କରଡ଼ା ଫାଲ୍ଆ ମୁଠାରେ ଉଠାଇ ନେଇ, ଶିଶୁଟିର ଆର ହାତପାପୁଲିରେ ଗୁଞ୍ଜିଦେବ—ଯେତେ ବଳି ପଡ଼ିବ, ସେତକ ବି, ନା ତା ସଙ୍ଗେ ଆଉଗଣ୍ଡେ ମିଶାଇ, ଗ୍ଲୋଟ ଠୁଙ୍ଗାରେ ଅବଶ୍ୟ ଯେତେ ଧରିବ, ତାହା ଭରି, ଅଭିଭାବକ ଆଡ଼କୁ ଅନୁନୟ ଦୃଷ୍ଟିରେ ଚକାଇବ, ଅଉ ଶିଶୁ ସଙ୍ଗେ ଶିଶୁର ଉପହାର ଠୁଙ୍ଗାଟି ଦେବାକୁ ସମ୍ବନ୍ଧ କରଟି ବଢ଼ାଇବ।—ଅଭିଭାବକ ଭେଲକା, ନାଚାର, ନେବାକୁ ବାଧ୍ୟ! କେହି କେହି ବ୍ୟକ୍ତି ମହାମାନୀ ଦୁର୍ଯୋଧନର ବଡ଼ିମା ଦେଖାଇଛନ୍ତି, ହେଲେ ଉରୁଭଙ୍ଗର ପରାଜୟ ମାନି ନେଇଛନ୍ତି— ଏହା ମୋ'ର ଆଖିର ଦେଖା।—ଜୀବ ଜଗତରେ ଶିଶୁ ଜୀବନ-ଧାରାର ଉତ୍ସ···ଆଉ ମାନବ ସମାଜରେ ଶିଶୁ ମାନବିକତାର ପ୍ରାଣ-କେନ୍ଦ୍ର। ସୁତରାଂ ମାନବର ମାନସଦ୍ୱନ୍ଦ କ୍ଷେତ୍ରରେ ସେହି କେନ୍ଦ୍ର ଆଲୋଡ଼ିତ ହେଲେ, ଅଣବନ୍ଧ ବିସ୍ଫୋରଣ ଘଟିବ,

ତେଜସ୍ୱିତ୍ୱ୍ୟୁତା ବଜ୍ଞ୍ରତ ହେବ, ବଭେଦର ଭେଦ-ପ୍ରାଚୀର ନିଶ୍ଚିହ୍ନ ହୋଇ ପ୍ରାନ୍ତରରେ ମିଶିଯିବ, ତଥା ମାନବ-ମାନବ ମଧ୍ୟରେ ସ୍ଥାପିତ ହେବ ଏକାତ୍ମବୋଧର ଅବାଧ ଯୋଗସୂତ୍ର,—ଏହା ଅବଶ୍ୟମ୍ଭାବୀ।—ହଁ ସେତେବେଳେ ଚଣାବାଲର କି ଫୁର୍ତ୍ତି, କି ଆନନ୍ଦ, କହିଲେ ନ ସରେ।—ତଥାପି ମୁଁ ଲକ୍ଷ୍ୟ କରୁଛି—ଏହିପରି ଘଟଣାର ପରେ ପରେ, ଗର୍ହାକର ଗୃପ୍ ନ ଥିଲବେଳେ ତା'ର ଫୁର୍ତ୍ତିର 'ଘ'ବାର, ତେର' ହଠାତ ଶୂନ୍ୟ ଦାନରେ ପରିଣତ ହୋଇ ଯାଏ, କୁରୁଳା ଆନନ୍ଦର ଅନର୍ଗଳ ଧାରରେ ଅଗ୍ନିନଳ ଅର୍ଗଳ ପଡ଼ିଯାଏ—ସେ କେମିତି ଅନ୍ୟ ମନସ୍କ ହୋଇ, ଶୂନ୍ୟ ଦୃଷ୍ଟିରେ ଚକାଇ ରହେ, ଆଉର ତା'ର ଆଖିର କୋଣେ କୋଣେ ଝୋଲେଇ ଉଠେ କେଉଁ ଅତୃପ୍ତ ବାସନାର ନିଗୃହୀତ କୋହର ନିଝୋଲ ବିନ୍ଦୁ!!···କାହିଁକି ?

ହିନକର ଘଟଣା। ଘଟଣା ସ୍ଥଳରେ ଥାଇ ଏହି ପରି ଗୋଟିଏ ଦୃଶ୍ୟ ଦେଖିଲି ପରେ ମୁଁ ବିହ୍ୱଳ ହୋଇ ପଡ଼ିଲି।···ମନକୁ ମନ ପ୍ରଶ୍ନ କଲି—'କାହିଁକି ?'···ମନ ମାନିଲି ନାହିଁ। ମତ ସ୍ଥିର କରି ଉତ୍ତର ଲୋଡ଼ିଲି। କିନ୍ତୁ ପ୍ରଶ୍ନକୁ କେନ୍ଦ୍ରକରି ଉପୁଜିଲା ଗୋଟାଏ ସମସ୍ୟା। ସମସ୍ୟାଟା ଏହିପରି—ପ୍ରଶ୍ନ ?...ପ୍ରଶ୍ନ ଦ୍ୱାରିତ ପ୍ରଶ୍ନର ମୀମାଂସା ହୁଏ ନାହିଁ, ବରଂ ପ୍ରଶ୍ନର ସଂଖ୍ୟା ବଢ଼େ।···କଦଳୀ ଗଛର ପୁଅ ବାହାରେ; ମାଏ ମୂଳ-ପ୍ରଶ୍ନର ମୂଳକୁ ଘେରି ନୂଆ ନୂଆ ପ୍ରଶ୍ନ କେବଳ ଜନ୍ମାଏ ନାହିଁ, ତାକୁ ନିର୍ମୂଳ କରିବା ପାଇଁ ପ୍ରତି-ପ୍ରଶ୍ନର ସମାବେଶ ମଧ୍ୟ ଦେଖା ଯାଏ।···ମୀମାଂସା ? ମୀମାଂସା ବୋଲି ଆମେ ଯାହା କହୁ ଥାଏଁ, ତାହା ପ୍ରଶ୍ନ ଓ ପ୍ରତି ପ୍ରଶ୍ନ ସମ୍ବଳିତ

ବୁଡିଆଣୀ ବୁଣା ଜାଲ ଛଡା ଅଧିକ କିଛି ନୁହେଁ ।...ଅଦିମ ଯୁଗର କେଉଁ ପ୍ରଥମ ପ୍ରଭାତର ପ୍ରଥମ ରଶ୍ମିରେ ପ୍ରଥମ ପ୍ରଶ୍ନର ହୋଇଥିଲା ସୂତ୍ରପାତ । ଏହି ସୂତ୍ରର କ୍ରମ ଧରି ଯୁଗେ ଯୁଗେ ମାନବ ପ୍ରଶ୍ନ ଓ ପ୍ରତି ପ୍ରଶ୍ନରେ ଛନ୍ଦା ବୁଡିଆଣୀ ଜାଲ ବୁଣିଆସିଛି, ମୀମାଂସାତ କରି ନାହିଁ । ଧର୍ମ, ଦର୍ଶନ, ବିଜ୍ଞାନ, ସାହିତ୍ୟ ସମାଜ, ସଂସ୍କୃତି, ଯାହା କିଛି ମାନବସଭ୍ୟତାର ଦ୍ୟୋତକ, ବା କୃଷ୍ଟି-ସଂସ୍କୃତିର ମାନଦଣ୍ଡ ବୋଲି ପରିଗଣିତ, ସେ ଗୁଡ଼ିକ ପ୍ରଶ୍ନର ବେଢା ଜାଲ ଅତିକ୍ରମ କରି ପାରିଛି କି ?...ଧର୍ମ ମୁକ୍ତିର ମାର୍ଗ ବତାଇଛି ସତ, ହେଲେ ସାର୍ବଜନୀନ ମୁକ୍ତି-ରାଜମାର୍ଗର ସନ୍ଧାନ ଦେଇ ପାରିଛନ୍ତି ?...ଦର୍ଶନ ତତ୍ତ୍ୱ-ଦର୍ଶନଧନ୍ଦାରେ ଅ-ପ୍ରାଣ ବେଷ୍ଟିତ, ହେଲେ ତର୍କ-ବିତର୍କର ଗୋଲକ-ଧନ୍ଦା ସୃଷ୍ଟି କରି ନାହିଁ କି ? ବିଜ୍ଞାନ ଜ୍ଞାନର ଗରିମା କଲେ ସୁଦ୍ଧା, ରହସ୍ୟ-ମୟୀ ପ୍ରକୃତିର ରହସ୍ୟାବଗୁଣ୍ଠନ କେତେଦୂର ଖୋଲି ଦେଇ ପାରିଛି ? ସାହିତ୍ୟର ବିଷୟ-ବସ୍ତୁ ଯେତେ ଉପାଦେୟ ହେଉ, କଳା-କୌଶଳ ଯେତେ ମନୋଗ୍ରାହୀ ହେଉ, ତା'ର ପ୍ରାଣ-ବସ୍ତୁ ହେଉଚି ଜୀବନବୋଧ—ସେ-ବିଷୟରେ ସେ ବୋଧ ଦେଇ ପାରିଛନ୍ତି ?... ସମାଜର ରୂପ ରେଖ କ'ଣ ହେବ, ତାହା ଅଦ୍ୟାପି ଗୋଟିଏ ପ୍ରଶ୍ନ ?... ସଂସ୍କୃତି ବହୁରୂପୀ, ବହୁବାଦୀ—ବାଦ ବିବାଦର ରଙ୍ଗସ୍ଥଳୀ କହିଲେ ଚଳେ, ନୁହେଁକି ?...ଅତଏବ ପ୍ରଶ୍ନ ?...ପ୍ରଶ୍ନ ?...ତଥାପି ପ୍ରଶ୍ନର ତାତ୍ପର୍ଯ୍ୟ ଅନସ୍ୱୀକାର୍ଯ୍ୟ ।...ପ୍ରଶ୍ନହିଁ ସମାଧାନ-ତୀର୍ଥର ପଦଯାତ୍ରୀ... ତୀର୍ଥ-ଦର୍ଶନ ହେଉ କି ନ ହେଉ, ପଦଯାତ୍ରାହିଁ ସତ୍ୟ ! ଗୀତାର ମର୍ମ-ବାଣୀ—କର୍ମ କର, କର୍ମର ଫଳକୁ ଆଶା ନ ରଖି ।...ସତ୍ୟଦର୍ଶନର ଏହି ପ୍ରେରଣା ମୋତେ କଲା ଉଦ୍‌ବୁଦ୍ଧ ।— ମୁଁ ପ୍ରଶ୍ନଟିର ଆଲୋଚନାରେ ପ୍ରବୃତ୍ତ ହେଲି ।...

ଏହି ମୁହୂର୍ତ୍ତିରେ ଆଉ ଗୋଟିଏ ପ୍ରଶ୍ନ ମୋ-ମନକୁ ଧକ୍କା ଦେଲା ।···ଆଲୋଚନା କରିବ, ହେଲେ ତା'ର ଭିତ୍ତି ?···ଭିତ୍ତି ନ ଥାଇ କୌଣସି ଆଲୋଚନା ସଂଭବ, ଏହାତ ଦେଖାଯାଏ ନାହିଁ ବ୍ୟାବହାରିକ କ୍ଷେତ୍ରରେ ?—କେହି ହିଂସା, କେହି ଅହିଂସା— ଏହାକୁଇ ଭିତ୍ତି କରି ନିଜ ନିଜରଷ୍ଟ୍ର ଓ ସମାଜ ଗଢିଛି ।...କେହି ଈଶ୍ୱର-ବାଦ, କେହି ନିରୀଶ୍ୱର-ବାଦ—ଏହାକୁହିଁ ମୂଳମନ୍ତ୍ର କରି ନିଜ ନିଜ ଧର୍ମର ଧ୍ୱଜା ଉଡ଼ାଇଛନ୍ତି । କେହି ଆଶା, କେହି ନିରାଶା— ଏହାକୁହିଁ ଜୀବନ-ଦର୍ଶନର ସତ୍ୟ ମଣି ନିଜ ନିଜ ଦର୍ଶନ ଓ ସାହିତ୍ୟ ରଚନା କରି ଗ୍ଲଲଛନ୍ତି ।···କେହି ମୌଳିକ, କେହି ଯୌଗିକ— ଏହାକୁହିଁ ତତ୍ତ୍ୱ କରି, ସ୍ୱ ସ୍ୱ ବିଜ୍ଞାନ ଚର୍ଚ୍ଚାରେ ଉନ୍ମତ୍ତ ।— ସୁତରାଂ ଭିତ୍ତି ଅପରିହାର୍ଯ୍ୟ । ଏହି ଭିତ୍ତିକୁ ବିଶ୍ୱାସର ନାମାନ୍ତର କହିଲେ, ଅସମୀଚୀନ ହେବ ନାହିଁ । ହୁଏତ ତୁମର ବିଶ୍ୱାସ, ମୋ'ର ବିଶ୍ୱାସ ହୋଇ ନ ପାରେ, ତଥାପି ଆତ୍ମବିଶ୍ୱାସ ଏକାନ୍ତ ପ୍ରୟୋଜନ—ତାହା ଯୁଗ ବା କାଳର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଉ କି ନ ହେଉ । ନିଉଟନଙ୍କ ସୂତ୍ର ଆଜି ଆଇନ୍‌ଷ୍ଟାଇନ୍ ନାକଚ୍ କରି ଦେଇଛନ୍ତି ସତ, ହେଲେ ସେ ଯେ ନିର୍ଭୁଲ ସୂତ୍ର ବାଢ଼ିଛନ୍ତି, ଏହାର ପ୍ରମାଣ କ'ଣ ?···ସେ ନିଜେ ମଧ୍ୟ ଏ'ବିଷୟରେ ସନ୍ଦେହ ପ୍ରକାଶ କରିଛନ୍ତି···ତଥାପି ତା'କୁଇ ଭିତ୍ତି କରି, ବିଜ୍ଞାନକୁ ଅଜର ସ୍ତରକୁ ଆଣି ଦେଇ ପାରିଛନ୍ତି । କ୍ୟାମିତ ଠିଆହୋଇଛି କେତୋଟି ସ୍ୱତଃସିଦ୍ଧକୁ ଆଶ୍ରୟ କରି—ନୁହେଁ କି ?···

ସୁତରାଂ ମୁଁ କେଉଁ ସୂତ୍ରକୁ ମୋ'ର ମୂଳ-ସୂତ୍ର କରି

ଆଲୋଚନାରେ ଅଗ୍ରସର ହେବ; ତାହାହିଁ ଅନୁସନ୍ଧାନ କରିବାକୁ ଲାଗିଲି ।

ପର୍ଯ୍ୟବେକ୍ଷଣ ଓ ଶ୍ରୁତି—ଏହି ଦୁଇଟିକୁ ବିଷୟାଶ୍ରିତକରଣ, ବା ବିଷୟାନୁସନ୍ଧାନର ପଦ୍ଧତି ସ୍ଥିର କଲି । ଚଣା-ବାଲାର ଶିଶୁ-ପ୍ରୀତି ମୁଁ ପର୍ଯ୍ୟବେକ୍ଷଣ କରିଛି । ଅଦ୍ଭୁତ ମୋଟିଆ ସେଦିନ ବଦଳିଆକୁ କାମର ହାଲ ବୁଝାଇ ଦେଉଥିଲାବେଳେ କହିବାର ଶୁଣିଛି ଯେ, ଚଣାବାଲାର କେହି ନାହିଁ, ସେ ଏକୁଟିଆ ବାସ କରେ ତା'ର ଗୌରବାଗାନ ବସାରେ, ଚଣା-ଭଜାହି କାମ ଯେତେ ସେ ଦିନସାରା ବ୍ୟସ୍ତ ଥାଏ ଘରେ, ଦୋକାନ ଉଠାଇଲା ପରେ ତା'ର ଯେତିକି ବିଶ୍ରାମ । ଥରେ ଥରେ ତା'ର ଦେହ, ହାତ ମୋଡ଼ି ଦେବାକୁ ପଡ଼ୁଥାଏ ମୋଟିଆକୁ; ସେଥିପାଇଁ ଅବଶ୍ୟ ତା'କୁ ଅଡିରିକ୍ତ ପାରିଶ୍ରମିକ ମିଳେନାହିଁ କିଛି, ତେବେ ଭଲଟା ମନ୍ଦଟା (ଯେମିତି ଲୁଗା ଖଣ୍ଡେ, ଜାମା ଖଣ୍ଡେ, କେବେ କେମିତି ଖାଇବାର ଆମନ୍ତ୍ରଣ ଇତ୍ୟାଦି) ଉପହାର ମିଳିଥାଏ, ଖଇନି'ରେ ମଧ୍ୟ ତା'ର ଭାଗ ଥାଏ । ଏ'ବାଦେ ଯେଉଁଟି ମୋ'ର ଉପସ୍ଥିତ ଆଲୋଚନା ପକ୍ଷେ ଅତୀବ ପ୍ରୟୋଜନୀୟ ଉପାଦାନ, ତାହା ମଧ୍ୟ ସେହି କଥା-ବାର୍ତ୍ତାରୁ ସଂଗ୍ରହ କରିଛି ।...ବସ୍ତିରେ ସତ୍ୟନାରାୟଣ-ପୂଜା ହୁଏ ସେଥିରେ ବାଲ-ଭୋଜନର ବ୍ୟବସ୍ଥା ରହିଛି ।—ଏହି ଭୋଜନର ସମସ୍ତ ଖର୍ଚ୍ଚ ଚଣାବାଲା ବହନ କରିଥାଏ ।...'ଛଟ୍' ପର୍ବରେ ସେ ବାଛି ବାଛି ଶିଶୁମାନଙ୍କୁହିଁ କେବଳ ନୂତନ ବସ୍ତ୍ର ବିତରଣ କରି ଥାଏ ।— 'ରାମ ଚରିତ ମାନସ' ବଡିଲା ଦିନ ସେ କେବଳ ଶିଶୁମାନଙ୍କୁ ବାଛି, ବାଛି (୧୫ ବର୍ଷରୁ ତଳ) ଅଲଗା ପଙ୍‌କ୍ତିରେ ବସାଇବ, ଓ ନିଜେ

ପୁରି ମିଠେଇ ପରିବେଷଣ କରିବ ।···ଅଇଁଠା–ପତ୍ର ମୁକ୍ତ କରିଗଲା-ବେଳେ ଏମିତ କୌଣସି ପତ୍ର ଦେଖାଯାଏ ନାହିଁ, ଯହିଁରେ ପୁରି, ବା ମିଠେଇର ଅବଶେଷ ନ ଥାଏ । ଉଚ୍ଛିଷ୍ଟ ଭୋଜୀମାନେ ଶିଶୁର ପଙ୍କ୍ତିକୁହିଁ ଝାଙ୍କ ରହିଥା'ନ୍ତି; ସେଥିପାଇଁ ସେମାନଙ୍କ ମଧ୍ୟରେ କଳି-ଗୋଳ, ହାତାହାତି ପର୍ଯ୍ୟନ୍ତ ଲାଗିଯାଏ,—ଏହା ମଧ୍ୟ ମୋଟିଅ ମୁନାବର ପ୍ରଶଂସାରେ ପଞ୍ଚମୁଖ ହୋଇ ବଦଳିଅଙ୍କୁ କହୁଥିବାର ଶୁଣିଛି ।

ଅତଏବ ଚଣାବାଲାର ନିର୍ଝଞ୍ଝାଟ ଜୀବନ-ଯାତ୍ରା, ଅଙ୍କ ଐକାନ୍ତିକ ଶିଶୁ ପ୍ରୀତି,···ଏହି ଦୁଇଟି ହେଲା ମୋ'ର ମୂଳ ସୂତ୍ରର ଉପାଦାନ ।·· ସେହି ଦୁଇଟିର ସମନ୍ୱୟକୁ ଭିତ୍ତି କରି, ସେଇଥିରେ ଅବିଚଳ ଆସ୍ଥା ରଖି, ଆଲୋଚନା କରିବାକୁ ଲାଗିଲି ଏହିପରି ଭାବରେ,—

ଯେଉଁଠି ଅତ୍ୟଧିକ ପ୍ରୀତି, ସେଇଠି ·ଅତ୍ୟଧିକ ଅତୃପ୍ତି ।··· ଶିଶୁକୁ କେନ୍ଦ୍ର କରି ଚଣାବାଲାର ଯୁଗପତ୍ ଆନନ୍ଦ ଓ ବିମର୍ଷ ତାହାର ନିଦର୍ଶନ ମାତ୍ର ।···ଶିଶୁ ତା'କୁ ଆନନ୍ଦ ଦେଉଛି, ମାତ୍ର ଶିଶୁକୁ ସେହି ଆନନ୍ଦର କି ପ୍ରତିଦାନ ଦେଉଛି ସେ ?···ଏହି ପ୍ରଶ୍ନଟି ତା' ମଧ୍ୟରେ ଚିରଜାଗରୁକ ରହିଛି । ଯେତେବେଳେ ସେ କର୍ମ-ବ୍ୟସ୍ତ ଥାଏ, ସେତେବେଳେ ସେହି ପ୍ରଶ୍ନ ମଥାଟେକେ ନାହିଁ, ଟିକିଏ କୋହଲ ପାଇଲେଇ, କଙ୍କଡା ବିଛା ଭଳି ତା'ର ବିବେକକୁ ଦଂଶନ କରେ ଓ ତା'କୁ ଅଥୟ କରି ପକାଏ ।

ଆଜି ସେହି ପ୍ରଶ୍ନଟି ତା’ ମନରେ ଉଦ୍ଭ ହୋଇ ଉଠିଛି । ସେ ଅନମନା ହୋଇ ତା’ର ଫେରି ଦିନର ଜୀବନକୁ ସମ୍ମୁଖ ଭାବରେ ଫେରି ଯାଉଛି, ଆଉ ଜୀବନ ଇତିହାସର ବିକ୍ଷିପ୍ତ ଜୀର୍ଣ୍ଣ ପୃଷ୍ଠା ଗୁଡ଼ିକୁ ଉଦ୍ଧାର କରି ପୃଷ୍ଠାଙ୍କ କ୍ରମରେ ସଜାଡ଼ିବାରେ ଲାଗିଛି ।···ଯଦି ଚଣାବାଲାର ଭାଷା (ସାହିତ୍ୟିକ), କହିବାର ଢଙ୍ଗ (ଶୈଳୀ), ଭାବ (ସୂକ୍ଷ୍ମ) ପ୍ରକାଶ କରିବାର ଦକ୍ଷତା ଥା’ନ୍ତା, ତେବେ ସେ କହନ୍ତା—

ମନେ ନାହିଁ କେଉଁ ଦିନ ରାତିର ଘନ ଅନ୍ଧକାରରେ, ଖାସ୍ ଅନ୍ଧାରମୂଳକ ଗ୍ଲାନି, ଭାଗ୍ୟଚକ୍ରରେ ଗଡ଼ି, ଅଲୋକପୁରୀ ଏହି କଲିକତାରେ ଆସି ପାଦ ଲଗାଇଲି···ଏବେ କାଲିପରି ମନେ ପଡ଼ୁଛି ମୋ’ର ଏଠା ଅଗ୍ନି-ପରୀକ୍ଷାର ଘଟଣା ଗୁଡ଼ିକ ।···ଅଲୋକ ପୁରୀର ଅଲୋକମାଳା ପରିବର୍ତ୍ତେ ଦେଖିଲି ଜୁକ୍ତୁ ଜୁଳୁଅର ମେଳା··· ଅଟ୍ଟାଳିକାର ଇନ୍ଦ୍ର ଭୁବନ, ଅଥଚ ଶୋଇଲି ଫୁଟ୍‌ପାଥରେ...ଭୁରି ଭୁରି ଭୋଜନାଳୟ, ମାଏ ପେଟ ଭରିଲି ପାଇପି ଜଳରେ— ବାଟ ଘାଟ ଛନ୍ଦା ଛନ୍ଦ, ତଥାପି ସୁଦ୍ଧା ବାଟ ମିଳିଲାନି...ଜାନବାହାନର ଚଳାଚଳ କାହିଁରେ କ’ଣ, ପାଦେ ଚଳିବି-ସେ ଜୁ’ ରହିଲାନି— ଜନକୋଳାହଳରେ କାନ ଅତଡ଼ା ପଡ଼ୁଛି, ତେବେବି ଜନଶୂନ୍ୟ ମଣିଲି ଆପଣାକୁ—ଏହିପରି ଅବସ୍ଥାରେ ପ୍ରଥମେ ଆଶ୍ରା ମିଳିଲା ଗୁ’ ରେଷ୍ଟୁରେଣ୍ଟରେ (ବେକାରଙ୍କ ଅମଦାଗ୍ନି ଡ଼ିପୁ, ବା ଭାଗ୍ୟନ୍ୱେଷୀଙ୍କ ଅଡ୍ଡାଖାନା)···ଡଡ଼ା ଖାଇଲି ମାସ ନ ପୁରୁଣୁ (ଗୁ’ ରେଷ୍ଟୁରେଣ୍ଟରେ ସଚରାଚର ଗୋଟିଏ ରୀତି ବା ଭୀତ ଗୁଲ୍ଲ ଥିବାର ଦେଖାଯାଏ ଯେ, ଯଦି ଶ୍ରମିକର ମାସ-ମଇନା ହୋଇଯାଏ, କିମ୍ବା ସେ ତାହା ଦାବୀ କରି ବସେ ଓ ଇଜ୍‌ନିୟନ ସାହାଯ୍ୟରେ ଆଦାୟର

ଚେଷ୍ଟା କରେ,—ଏହି ଉପୂରେ ମାଲିକ 'ମୁକ୍ତ ମାରିଲେ ଯିବ ସଲ' ଏହି ନୀତିକୁ ସାର କରି ନିତ୍ୟ-ନୂତନତା ଉପରେ ଜୋର୍ ଦେଇଥାଏ ।···କପ୍ ପିରିଚ୍ ଭଙ୍ଗା ପାଇଁ ଜରିମାନା—ମହିନା ଠିକ୍ ହେଉ କି ନ ହେଉ···ଖାଦ୍ୟ, ବା ପଇସା ଚୋରିର ଅପବାଦ—ଚୋରି ନ କଲେ ମଧ୍ୟ...ଏହିପରି ନାନା ଅଳି ଧରି ବା ଅଭିଯୋଗ କରି, ପୁରାତନକୁ ଝାଡ଼ି ଫିଙ୍ଗି ଦେଇ ଥାଏ ମାଲିକ—ବେଳେବେଳେ ଉତ୍ତମ-ମଧ୍ୟମ ନ ଚଢ଼ାଇବ ଯେ ତାହା ନୁହେଁ)···ତା'ପର ଲୁହା ପିଟିଲି, ପିଟିବାହି ସାର ହେଲା ···ଦିନ-ମଜୁରି ଖଟିଲି, ସର୍ଦ୍ଦାରହିଁ ଫାଇଦା ଉଠାଇଲା···କର୍ପୋରେଶନର ପାଣି ପିଚ୍କାରି ମରିକୁ ଗୁଡ଼ି ମୋଡ଼ିଲି, ବେଲଗାରତକ କାବୁଲିବାଲାର ସୁଧକୁ ନିଅଣ୍ଟ ହେଲା···କଳ-କାରଖାନାରେ ଭର୍ତ୍ତି ହେଲି, ଧର୍ମ-ଘଟ କରୁ କରୁ ଘଟ ଶୁଖିଲା ··· ଗୁଡ଼ପାନର ଦୋକାନଟିଏ କଲି, କିସ୍ତିବାଲାର କିସ୍ତି ଭରଣାକୁ ପାଣ୍ଠି ଶେଷ···ଶେଷକୁ ବାବୁ ବାଡ଼ିରେ ଚାକିରି କଲି ଯେ, ବାବୁ ବାବୁଆଣୀ ଚବିଶ ଘଣ୍ଟାରେ ଅଠଚାଳିଶ ଘଣ୍ଟାର କାମ୍ ନିକାଲି ସୁଦ୍ଧା, ଅସନ୍ତୋଷ ମନରେ ଦିନେ ମୋତେ ବିଦାୟ କରି ଦେଲେ; ଦରମା ମିଳି ନ ଥିଲେ ମଧ୍ୟ, ହିସାବ ମିଳିଥିଲା; ଏ' ପହିଲା ସେ' ପହିଲା କରି ଘୋଷାରିଲା ପରେ, ଥରେ ପହିଲାକୁ ଯାଇଁ ଦେଖେଁ, ବାଡ଼ିର ଦରଜାରେ ତାଲା ପଡ଼ିଚି, ଅଦାଲତର ଛିଲ୍ ମରିଚି, ଆଉ ନୋଟିସ୍ ଝୁଲୁଚି,—ମୁଁ କାନ ମୁଣ୍ଡା ଆଉଁସି ହେଲି !··· ହେଲେ, ଅଗ୍ନନକ ଏଇଠି ମୋତେ ଗୋଟାଏ ବାଟ ଦିଶିଗଲା···ବାବୁ-ଘରେ ଥିଲାବେଳେ ମୋ'ର କାର୍ଯ୍ୟ—ନିର୍ଘଣ୍ଟର ଅଧିକାଂଶ ବେଳ ଛୋଟ ଛୋଟ ପିଲାଙ୍କ ଗହଣରେ କଟୁଥିଲା—ଘରେ ନିତାନ୍ତ କଅଁଳ ଛୁଆକୁ ଖାଉଖେଇବା ସମାଳିବା, ଇସ୍କୁଲିଆ ଛୁଆଙ୍କର ବହିବସ୍ତାନି ଧରି ଇସ୍କୁଲରେ ପହଁଚେଇବା, ଟିଫିନ୍ ଘଣ୍ଟାରେ ଟିଫିନ୍ ନେଇ

ଯୋଗାଇବା, ଇସ୍କୁଲ ଛୁଟି ପରେ ପୁଣି ତାଙ୍କୁ ଘରକୁ ନେଇ ଆସିବା, ସନ୍ଧ୍ୟାରେ ପାର୍କକୁ ବୁଲାଇ ନେବା—ଏହିପରି କେତେ କ'ଣ ପାଇଛି ?···ମୁଁ ଯେ ସେହି ଶିଶୁମାନଙ୍କର ଗହଣରେ ଥାଇ ଥାଇ ଶିଶୁ ପାଲଟି ଯାଇଥିଲି, ସନ୍ଦେହ ନାହିଁ । ଏଇଟା ମୋ'ର ସ୍ୱଭାବ-ସୁଲଭ ଶିଶୁ-ପ୍ରୀତି, କି ଅହରହ ଶିଶୁ ସହ-ବାସର ପରିଣତି, କି ବୟସ୍କମାନଙ୍କ ପ୍ରତି ବୟସର ତିକ୍ତ ଅଭିଜ୍ଞତାଜନିତ ବିତୃଷ୍ଣାର ପ୍ରତିକ୍ରିୟା, କହିପାରିବିନି··ତେବେ ଏଇଟା ଠିକ୍ ଯେ ମୁଁ ଦରମାର ତାଗଦାକୁ ଯାଉନଥିଲି, ଯାଉଥିଲି ଶିଶୁଙ୍କୁ ଭେଟିବି, ଏହି ଆବେଗର ତାଡ଼ନାରେ ।···ସେହି କାରଣରୁ ଯେତେ ପହିଲା ଗଡୁଥିଲା, ସେତେ ମୁଁ ବିଗିଡ଼ିବା ଦୂରେ ଥାଉ, ବରଂ ମନେ ମନେ ହେଉଥିଲି ଖୁସି ।...ଶେଷ ଯେଉଁ ପହିଲାରେ ତାଗଦାକୁ ଗଲି, ଆଉ ଦେଖିଲି ଘରର ଦରଜା ବନ୍ଦ, ମୋ'ର ପ୍ରାଣର ଫୁଙ୍କାର ଗୁଡ଼ିକ ଯେମିତି ବନ୍ଦ ହୋଇଗଲା ସଶବ୍ଦେ, ଏହି ପରି ଅନୁଭବ କରିବାକୁ ଲାଗିଲି ।··· ବିଶେଷତଃ ସେ ଦିନ ମୁଁ ଗଣି ଗଣି ନେଇଯାଇ ଥାଏ ପ୍ରତ୍ୟେକ ଛୁଆଙ୍କ ପାଇଁ ଚଣା ଓ ବାଦାମଭଜି ଗୋଟିଏ ଗୋଟିଏ ଠୁଙ୍ଗା ।—କେତେଥର ଛୁଆଏ ଏହି ଅମୃତୋପମ ଭୋଜନ ଲାଳସୀ ହୋଇ ଅଳି କରୁଥିଲେ ମଧ୍ୟ ସେମାନଙ୍କ ବାସନା ପୂରଣ କରି ପାରି ନଥିଲି, ଜଡ଼ ପଇସା ଅଭାବରୁ; କିନ୍ତୁ ସେଦିନ କେଉଁ ଭାବାବେଗରେ ଚଣାବାଲାର ଦାମ ବାକି କରି, ଶିଶୁମାନଙ୍କର ଇଚ୍ଛା ପୂରଣ କରିବାକୁ ଧ.ଇଁ ଆସିଥିଲି,···କିନ୍ତୁ, ହାୟ ! ସେହି ଠୁଙ୍ଗା ଗୁଡ଼ିକୁ ଚାହିଁ, ଚାହିଁ, ମୋ ଆଖିରୁ ଠପ ଠପ ହୋଇ ଲୁହ ଝରି ପଡ଼ିବାହିଁ ସାର ହେଲା !!···ହଁ, ଏହି ଚଣାବାଲା ସଙ୍ଗେ ଏଇଠି ଚାକିରୀ ଥିଲାବେଳେ ପରିଚୟ ହୁଏ । ପରିଚୟରୁ ଘନିଷ୍ଠତା ଜନ୍ମେ ।···ଏଥିର ଘନିଷ୍ଠ କାରଣ ଯେ ଏହି ଘରର ପିଲାଏ ଥିଲେ ଏହା ନିଶ୍ଚୟ···ନିତି ସନ୍ଧ୍ୟାରେ ପିଲାଙ୍କୁ

ଘେନି ବୁଲୁଥିବି···ବାଟରେ, କେଉଁ ସମୟରେ, କେଉଁ ଯେଗାରେ ଅମ୍ଭଙ୍କୁ ଭେଟିବ ଏହି ଚାଣାବାଲା...କେଉଁ ଶୂନ୍ୟ ଗର୍ଭରୁ ସେ ହଠାତ୍ ଝମର ଝମର ନାଚି, ଶିଙ୍ଗା ବଜାଇ, ଚଣାଚୁର ଗରମ୍ ବୋଲି ଡାକ ବାହାରି ଆସିବ ଓ ଶୂନ୍ୟ ରଙ୍ଗସ୍ଥଳକୁ ସରଗରମ କରିଦେବ, ତାହା ଠଉରେଇବା ମୁସ୍କିଲ—ମୁଁ ତ ଭେଲକା ବନେଇ ଯାଏ, ପିଲାଏ କିନ୍ତୁ ଭାନୁମତୀ ଖେଳ ଦେଖାର ଉଚ୍ଛୁଳା ଆନନ୍ଦ ଉପଭୋଗ କରନ୍ତି । ଏହି କଥାକୁ ସେ ଦିନେ ଐକାନ୍ତିକ ବିଶ୍ୱାସରେ ମୋତେ କହିଚି ଯେ ପିଲାଙ୍କୁ ମଜେଇ, ପଇସା ରୋଜଗାର କରିବାର ଏ ଗୋଟାଏ ମଜାଦାର କାଇଦା ।···ଏହି ଚଣାବାଲାର ଚଣା ନ ହେଲେ, ପିଲାଙ୍କୁ ରୁଚେନାହିଁ, ଏହା ମୁଁ ପରୀକ୍ଷା କରି ଦେଖିଛି । ସେହି ଚଣାବାଲା ସଙ୍ଗେ ସେଦିନ ନିର୍ବେଦ ମନ ଘେନି ଫେରନ୍ତା ବାଟରେ ଦୈବାତ୍ ପୁଣି ଥରେ ଦେଖା, ତା'କୁ ଅଟକାଇ ମୋ'ର ଭାରାକ୍ରାନ୍ତ ହୃଦୟର ଭାର ଅଜାଡ଼ିଦେଲି; ଆଉ ତା'ର ସାହାଯ୍ୟ ଲୋଡ଼ି କହିଲି—ମୁଁ ତାହାର ଭେକ ଗ୍ରହଣ କରିବି । ସେ ହସି, ହସି ଗଡ଼ିଗଲା, କହିଲା—ଆରେ ଓଲୁ, ଏ' ଗୋଟାଏ ନିପଟ ଶିଶୁ ଭଣ୍ଡା ବେଉସା, ନାଚି, କୁଦି, ଗାଇ, ଭଣ୍ଡ ସାଜି ପାରିଲେ ଏ ବେଉସା ଚଳେ···ହିଁ, ହିଁ,··· !! ମୁଁ କିନ୍ତୁ ମନକୁ ମନ କହିଲି —ମୁଁ ଭଣ୍ଡ, ମହାଭଣ୍ଡ ହେବି ପଛକେ, ଶିଶୁ ମହଲରେ କରିବି କାରବାର, ବଡ଼ଙ୍କ ଶିକ୍ଷା ଅଙ୍ଗେ ଅଙ୍ଗେ ଲଭେଇଛି...ବଡଙ୍କୁ କୁହାର !...ଆଉ କାଳ ବିଳମ୍ବ କଲିନି...ଚଣାବାଲାର ଭେକ ଘେନି ହେଲି ସେହି ଭଣ୍ଡ...ପିଲାଏ ହାତ ତାଳି ଦେଇ ମୋତେ ଘେରି ଘୁରି ଘୁରି ନାଚିଲେ, ମୁଁ ତାଳ ଉଣ୍ଡି ନିର୍ଘାତ୍ ଉଣ୍ଡିଲି, ବିନିମୟରେ ସେମାନେ ମୋ'ର ଝୋଲା ଭରି ଦେଲେ ବିବାକି ପଇସା ଅଧେଲାରେ ।
ଆଜି ମଧ୍ୟ ଏହି ପରିଣତ ବୟସରେ, ଦୋକାନ ଲଗେଇ ସୁଦ୍ଧା, ସେଇ

ଖୋଇ ମୋ'ର ରହୁଯାଇ ନାହୁଁ କି ? ···ମୁଁ ସାଜନ୍ତି ଦାମା !···ପିଲାଙ୍କୁ ଡାକି ହାକି, କାହାକୁ ବାଦାମ୍‌ଥାଏ, କାହାକୁ ଚଣା ଗଣ୍ଡେ ଦେଇ, ଦାନର ବଡ଼ିମାରେ ବୁକ୍ ଫୁଲାଇ ଆନନ୍ଦରେ ଅଧୀର ହେଉଛି !··· ଧିକ୍ !···ଯଦି ମୁଁ ଆଜି ପ୍ରତିଷ୍ଠା ଲାଭ କରିଥାଏ, ସମାଜର ଜଣେ ହୋଇ ଠିଆ ହୋଇଥାଏ, ତେବେ କେଉଁମାନଙ୍କ ଯୋଗୁଁ ?...ଏହି ଶିଶୁଙ୍କ ଯୋଗୁଁ ନୁହେଁ କି ?···ହୁଏତ ଆଜି ଯେଉଁ ଗ୍ରାହକମାନେ ମୋ' ପ୍ରତି ପ୍ରସନ୍ନ, ସେହି ବଡ ବଡଆଙ୍କ ଭିତରୁ କେହି, କେହି ଥିଲେ ମୋ'ର ସେହି ଫେରି ଦିନର ଶି...

ଠିକ୍ ସେତିକିବେଳେ ମୋ'ର ଚିନ୍ତାର ଯୋଗ-ସୂତ୍ର ଛିନ୍ନ କରିଦେଲା କର୍ଣ୍ଣପଟରେ ପ୍ରବିଷ୍ଟ ଚଣାବାଲାର ବିକଟ ଚିତ୍କାର ମାଧ୍ୟମରେ ବ୍ୟାକୁଳିତ ଧ୍ୱନି—**ଖୋକୀ !!**

ମୁଁ ଚମକି ପଡ଼େ, ଓ ସାଡଙ୍କ ଦୃଷ୍ଟିରେ ଅନାଇ ଦେଖେଁ— ଦୋକାନରେ କୌଣସି ଗ୍ରାହକ-ପର ନାହୁଁ, କିମ୍ବା ଦୋକାନର ଆଖେ ପାଖେ, ଆଖି ଯେତେଦୂର ଯାଏ, ସେହି ଦୂରବର୍ତ୍ତି ପରିଧି ମଧ୍ୟରେ ଅନ୍ୟ କୌଣସି ଜନ-ପ୍ରାଣୀ ନାହୁଁ ।...ସତେ ଯେମିତ କଳ୍ପିତ ମହାଶୂନ୍ୟ ଆଜି ବାସ୍ତବ...ଆଉ ସେହି ଶୂନ୍ୟ-ଗର୍ଭର କେନ୍ଦ୍ର-ସ୍ଥାନରେ ଦୃଷ୍ଟିର ଅଦ୍ଭୁତ ନିହାରିକା ପରି, ଦ୍ୟୁସମାନ ନୁହେଁ, ସ୍ଥିତିମାନ ଦୁଇଟି ପ୍ରାଣ ବିନ୍ଦୁ ।···ପଶ୍ଚାତର ଏକ ପଟେ ଦେହ ଯଷ୍ଟିକୁ ଅପ୍ରାଣ ଦାର୍ଢ୍ୟିତ କରି ଉପବିଷ୍ଟ ନିଶ୍ଚଳ ଚଣାବାଲା, ଓ ଅନ୍ୟପଟେ କୁଣ୍ଢେଇ ପାଲଟି ଠିଆ ଜୀବନ୍ତ ତଲ କୁଣ୍ଢେଇ କୁନ୍ଦୁ ଝିଅ ଟିଏ ।··· ପରସ୍ପର ନିବଦ୍ଧ-ଦୃଷ୍ଟି । ଶିଶୁଟିର ଅଚହ୍ନା ବସ୍ତୁଙ୍କ

ତାକୁ ରୁପାୟିତ କରନ୍ତି ବିସ୍ମୟ ଚିହ୍ନରେ (!), ଆଉ ଚଣାବାଲର ଯେଉଁ ଜନ୍ମ-ଜନ୍ମାନ୍ତରବ୍ୟାପି ବିଚ୍ଛେଦାନନ୍ତର ପୁର୍ଣ୍ଣ ମିଳନର ଅନୁଭୂତି, ବା ମୋହମୁଗ୍ଧ ଜଡତା ତା'କୁ କରନ୍ତି ସେହି ପୁର୍ଣ୍ଣଛେଦ (।) ରେ ପରିଣତ । ...ଉଭୟଙ୍କ ମଧ୍ୟରେ ଜିଜ୍ଞାସାର ପ୍ରଶ୍ନବାଚକ ଚିହ୍ନ (?) ଯେ ସର୍କସର ରଜ୍ଜୁ-ନର୍ତ୍ତକୀ-ସୁଲଭ ଗତିଚ୍ଛନ୍ଦରେ ପଦଦ୍ୱୟର ନିବଦ୍ଧ ରଜ୍ଜୁ ଦୃଷ୍ଟିର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ଠେଲି ଠେଲି ଗତାୟାତ କରୁ ନ ଥାଏ, ତାହା ନୁହେଁ ।

ଏହି ନିର୍ବାକ୍ ପରିସ୍ଥିତି କେତେବେଳେ ସବାକ୍ ହେବ, ତାହା ଅବଧାରଣା କରିବା କଠିନ ହୋଇ ପଡୁଥିଲା । ତେଣୁ ଏହି ଅନିର୍ଦ୍ଦିଷ୍ଟତାକୁ 'ଡଟ୍ ଡଟ୍', ବା ବିନ୍ଦୁ ବିନ୍ଦୁ (···) ଦ୍ୱାରା ଚିହ୍ନିତ କରିବା ଛଡ଼ା ଗତ୍ୟନ୍ତର ନ ଥିଲା ।···ମୁଁ ବେଗତିକ ହୋଇ ତାହାହିଁ କଲି । ଉକ୍ରଣ୍ଠାର ଅବସାନକୁ ସୋତ୍କଣ୍ଠେ ପ୍ରତୀକ୍ଷା କରି ରହିଲି ।...ଅବଶ୍ୟ ଅଚଳ ହିମାଚଳର ଧୈର୍ଯ୍ୟ ଧରିବାକୁ ପଡୁଥିଲା । ତାହା ସତ୍ତ୍ୱେ ତଳେ ତଳେ ସ୍ୱେଦସ୍ରୁତି ଅଧୀରତା ଯେ ଅଥୟ କରୁ ନଥିଲା —ତାହା ନୁହେଁ । ···ପ୍ରକୃତରେ —

ପ୍ରବୃତ୍ତି ଓ ନିବୃତ୍ତିର ରଜ୍ଜୁ-ସଂଗ୍ରାମରେ (ଟଗ୍ ଅଫ୍ ଓ୍ୟାର) ମୁଁ ହୋଇ ଯାଇଥିଲି ସଂଗ୍ରାମ-ରଜ୍ଜୁ ! ସଂଗ୍ରାମର ଚରମ ପର୍ଯ୍ୟାୟ । ···ରଜ୍ଜୁର (ମୋ'ର) ଦୃଢ଼ତା (ଟେନ୍‌ସନ୍) ତା'ର ଶକ୍ତିର ଶେଷ ସୀମାରେ ଉପନୀତ ।···ଠିକ୍ ଏତିକି ବେଳେ ବିଗ୍ରହକ (ଅମ୍ପାୟାର) ର ବିରତିସୂଚକ ସଂକେତ ଧ୍ୱନି (ହୁଇସିଲ୍) ।···ଅର୍ଥାତ୍ ନାରୀର ତୀବ୍ର ଓ ଲଳାୟିତ କଣ୍ଠରେ 'ଟେବ-ଭି' ସମ୍ବୋଧନ ! ...ମୁଁ ସ୍ୱସ୍ତି ବୋଧକଲି ।—ନାରୀଟି ମଧ୍ୟ ଭ୍ରମିତ ପଦକ୍ଷେପରେ ରଙ୍ଗ-ସ୍ଥଳରେ (ଦୋକାନରେ) ହେଲେ ଆବିର୍ଭୂତ ।

# ଉଦ୍‌ଘାଟନ



ନାରୀଟି ଭଦ୍ରମହିଳା ।...ବେଶ ଭୂଷାରେ ଅଧୁନାତନତାର ସ୍ପର୍ଶ ।...ସାମାନ୍ୟ ସମୟର ବ୍ୟବଧାନ ଅତିକ୍ରମ କରି ଯେଉଁ ପୁରୁଷଟି ଆସି ସେ'ଠାରେ ଉପଗତ ହେଲେ, ତାଙ୍କର ପହରଣରେ ମିହି ଧୋତି ଓ ସିଲ୍କ ପଞ୍ଜାବୀ ଥିଲେ ମଧ୍ୟ, ମୁଖରେ ଥିଲା ଖଲତା ଚିହ୍ନ୍ ।

ମହିଳାଟିର ମୁଖାବୟବ ସଙ୍ଗେ ଶିଶୁଟିର ମୁଖାକୃତିର ଗାଢ଼ ସାଦୃଶ୍ୟ । ଶିଶୁଟିର ରଙ୍ଗ ତୋରା, ମହିଳାଟିର ରଙ୍ଗ ଟିକିଏ ଫିକା । ...ତେବେ ପୁରୁଷଟି ଯେ ଶିଶୁର ଜନକ, ତାହା ଦୁହିଁଙ୍କର ଅବର୍ଣ୍ଣନୀୟ ବର୍ଣ୍ଣର ସାମଞ୍ଜସ୍ୟରୁ ଜଣା ପଡେ ।

ଚିନାବାଦାମକୁ ଲୋଭ ?...ତୋର ପେଟ ଖରାପ୍ ନା ?...", —ଏତିକି କହି ଝିଅଟିର ହାତ ଧରିଲେ ଓ ତା'କୁ ଝିଙ୍କି ଘେନି ଯିବାର ଉପକ୍ରମ କଲେ ମହିଳାଟି ।...

ପୁରୁଷଟି ଚୁରୁଟ୍ ଓହ୍ଲାଇ, ମହିଳାର କଥା-କମଧର, ହସି, ହସି କହିବାକୁ ଲଗିଲେ —'ବେଙ୍କାର ଦୋଷ କ'ଣ ?···ମା'ର ଦୋଷ ଗୁଣତ ତା'ର ସନ୍ତାନ ଠାରେ ବର୍ତ୍ତିବର୍ତ୍ତି ଥାଏ !'

ବାପର···?'···

ପ୍ରତିପକ୍ଷ ବକ୍ତ୍ର ବଦ୍ରୁ ପ୍ରର ଏହିପର କଣ୍ଠୁ ଗୋଟାଏ ପ୍ରତିବାଣ ଖଞ୍ଜି, କ୍ଷେପଣ କରି ଥା'ନ୍ତା କି କ'ଣ, କିନ୍ତୁ ମହିଳାଟିର ଅବସର ଆଦୌ ନଥିଲା।···

ଚଣାବାଲା ଅସନରୁ ଉଠି ଅସି ମହିଳାଟିର ପଥ ରୁନ୍ଧି ଛିଡ଼ାହୋଇଥାଏ ସେତେବେଳକୁ।···ହାତରେ ଧରିଥାଏ ଶିଶୁ ଦର୍ଶନୀ-ବେଲ୍ଟର।···ସେଥିର ପଥ୍ୟଙ୍ଗଭିର ଯେ ସାଧାରଣ ନିୟମର ବ୍ୟତିକ୍ରମ ସୁଚୁହ ଥାଏ, ଏଥିରେ ସନ୍ଦେହ ନାହିଁ।···ସୁତରାଂ ମୋ'ର କ୍ଷୁଦ୍ରଚନ୍ଦ୍ରା ସୁନ୍ଦର (ଆଲୋଚନାର)ଖିଅଧରି ତତ୍କ୍ଷଣାତ୍ ଅଗ୍ରସର ହେଲି ମନେହେଲା ଆଜି ଚଣାବାଲା ଯେମିତି ଏହି ଶିଶୁ 'ଖୋକା' ଟିକୁ ମାଧ୍ୟମ କରି ସମସ୍ତ ଶିଶୁ ଜଗତର ଋଣ-ପରିଶୋଧ କରିବାକୁ ତତ୍ପର।

କିନ୍ତୁ ଆଶ୍ଚର୍ଯ୍ୟ, ମହିଳାଟି ଚଣାବାଲାର ଆକୁତି, ଆବେଗ ବା ମିନତି ପ୍ରତି ଭ୍ରୁକ୍ଷେପ ନକରି କୁଞ୍ଚିତ ଭ୍ରୂ ଓ ସଙ୍କୁଚିତ ଦୃଷ୍ଟିକୁ କେନ୍ଦ୍ରୀଭୂତ କରି ରହି ଥାଏ ତାର ବାମ କର୍ଣ୍ଣ ପଲ୍ଲବର ପଶ୍ଚାତ ଭୂମି ପଟରେ।···

ବିଚ୍ ଦାଣ୍ଡଠାରେ, ଗୋଟାଏ ନ୍ୟାକ୍ସି ଚଣାବାଲା ପ୍ରତି ପରିଚ୍ଛନ୍ନ, ଭଦ୍ରମହିଳାର ଏ ଭଳି ଅଛନ୍ନତା, ଫଳତଃ ନିଜର ସ୍ୱାମୀ

ପ୍ରତି ଅବହେଳା,—ଏହିପରି ଗୋଟାଏ ଅସ୍ୱଚ୍ଛନ୍ଦ ଭାବ ଯେ ଭଦ୍ର ବ୍ୟକ୍ତିର ମନକୁ ଅପରିଚ୍ଛନ୍ନ କରିଦେଇ ଅଭିଜାତ୍ୟ ବୋଧରେ ପ୍ରବଳ ଆଘାତ ହାଣିଥିଲା, ଅଳ୍ପ ସମୟ ମଧ୍ୟ ସେ ଯେଉଁ ବ୍ୟଙ୍ଗ-ବାଣ ପ୍ରକ୍ଷେପ କରିଥିଲେ ତାହା ଯେ ପ୍ରତିକ୍ଷିପ୍ତ ପ୍ରତିବାଣ ହୋଇ ତାଙ୍କୁ ଘାରି ପକାଉଥିଲା ଏହା ବେଶ ବୁଝିଗଲା ଯେତେବେଳେ ସେ ବାଧା ଦେବାକୁ ଯାଇ 'ଏଟିକେଟ୍' ଖାତିରରେ ନିରସ୍ତ ହେଲେ । ସେତିକି ନୁହେଁ, ସେ 'ହୋପଲେସ୍' ଏହି ନିର୍ବେଦମୂଳକ ଶବ୍ଦଟିକୁ ସ୍ୱଗତୋଚ୍ଚାରଣ ପୂର୍ବକ ହସ୍ତପଲ୍ଲବର ମୁଦ୍ରା-ପ୍ରଦର୍ଶନ ଦ୍ୱାରା ଅଭିବ୍ୟକ୍ତ କଲେ, "ଠପ, ଠପ" ପାଦ କ୍ଷେପରେ ସ୍ଥାନ ତ୍ୟାଗ କଲେ, ଫାଟକ ସମ୍ମୁଖରେ ସ୍ଥାପିତ ନିଜସ୍ୱ ମଟର ଯାନରେ ଆରୋହଣ କଲେ, ଅବଶେଷରେ ଷ୍ଟିଅରିଂ ଗାତ୍ରରେ ନିରୁଦ୍ଦେଶ୍ୟବ୍ୟଞ୍ଜକ କରପଲ୍ଲବ ସଂଚାଳନ କରିବାକୁ ଲାଗିଲେ । ଗାଡ଼ିର ଦରଜାଟା ବନ୍ଦ କଲାବେଳେ ଦରଜାର ଶବ୍ଦଟା ଯେ ଅସ୍ୱାଭାବିକ ରକମର ହୋଇଥିଲା, ଏହା ମୁଁ ବେଶ ଶୁଣି ପାରିଥିଲି ।

ମହିଳାଟି ଆଡ଼କୁ ଅନାଇ ଦେଖେଁ, ତାଙ୍କର ମୋହାବେଶ ସେତେବେଳକୁ ସଂପୂର୍ଣ୍ଣ କଟିଯାଇଛି, ଆଉ ବଦନ ମଣ୍ଡଳରେ ଆଲୋକର ଛଟା, ଅଧରପୁଟରେ ପୁଲକର ରେଖା, ନୟନଯୁଗଳରେ ମଣି-ତାରକାର ବାଲ୍ୟଚପଳତା ବେଶ୍ ଫୁଟି ଉଠିଛି । ଏହା ଯେ ତାଙ୍କର କେଉଁ ବାଲ୍ୟ-ସ୍ମୃତିର ପ୍ରତିଫଳନ, ତାହା ବୁଝିବାକୁ ଆଉ ବାକି ରହିଲା ନାହିଁ, ବିଶେଷତଃ ଯେତେବେଳେ ସେ ନିଃସଂକୋଚରେ କହିଉଠିଲେ—

'ତୁମେ ସେହି ଘୁଙ୍ଗୁରୁ-ଦାନା ?'

ଗଣାବାଲା ହୋଇଗଲା ଅବା କାବା—ଯେମିତ ଛଦ୍ମବେଶୀ ଗୋଇନ୍ଦାର ଆତ୍ମ-ପ୍ରକାଶରେ ହୋଇଥାଏ ଅତର୍କିତ ଅପରାଧୀ।··· ତଥାପି ସେ ସଂଧାନୀ ଦୃଷ୍ଟିରେ ସନ୍ତାନବତୀଟି ପ୍ରତି ଅନାଇ ରହିଲା। —କାରଣ ଅପରାଧୀ ବ୍ୟକ୍ତିର ଥାଏ ଆତଙ୍କ; ନିରପରାଧ ବ୍ୟକ୍ତିର ଥାଏ କୌତୁକ।

ମହିଳାଟି ଅଳ୍ପର ଆତ୍ମ-ପରିଚୟ ଦେବାକୁ ଯାଇ, ହସି ହସି କହିଲେ—

ଚିହ୍ନି ପାରୁନାହଁ ?···ମୁଁ ପରା ତୁମର ସେହି ଖୋକୀ !··· ତୁମେ ଯେ ସେହି ଗଣାବାଲା, ତୁମର କାନମୂଳର ଏହି ଗଣା-ପ୍ରମାଣ କଳାଯାଇ ପରା ସାକ୍ଷୀ !···କହିଲା···

ଗଣାବାଲା କିନ୍ତୁ ଆଉ କହିବାକୁ ଦେଲା ନାହିଁ। ଗୋଟାଏ ଆବେଗରେ ଉଠାଇ ନେଲା ଶିଶୁଟିକୁ ଆପଣା ବିଶାଳ ବୁକୁ ଉପରକୁ। ଗେଲ ବସର କଲା, ଶିଶୁଟିର କର କିଶଳୟକୁ ସେହି ଯାଇ ମନ୍ଦା ଉପରେ ଥୋଇ ସଞ୍ଚାରଣ କରିବା ସଙ୍ଗେ ୨ ନିଜେ ବହେ ନାଚିଗଲା। ଔଡ଼ଫେଶ-ଦନର ସ୍ମୃତରେ ଅଭିଭୂତ ହୋଇ ଗାଇଥିଲା— ଘୁଙ୍ଗୁର ଦାନା···କେହି ଖାଇବ, କେହି କରିବ ମନା···। ଶିଶୁଟିର କି କୌତୁକ...। ଘୁଙ୍ଗୁର ଦାନା ଗୁଣ୍ଡିକ ବି ତଳେ ପଡ଼ି ଲୋଟି ଆନନ୍ଦରେ ଅଧୀର !!

ଶିଶୁର ଜନନୀ ସେହି ମହିଳାଟି ବାହ୍ୟ ରୂପରେ ଶିଶୁ ପାଳିଛି ପାରି ନଥିଲେ ମଧ୍ୟ, ଅନ୍ତର ମଧ୍ୟରେ ଯେ ସେହି ଢଙ୍ଗର ଶିଶୁ ପାଳିଛି ଥିଲେ ନିଜର ଶିଶୁକନ୍ୟାଠାରୁ ବଳି, ଏହା ତାଙ୍କର ଗଣ୍ଡପ୍ରବାହୀ ନିଃଶବ୍ଦ ଅନନ୍ଦାଶ୍ରୁଧାରାରୁ ବେଶ ଜଣା ପଡୁଥିଲା ।

ନୈଃଶବ୍ଦ୍ୟର ଏହି ଚରମ ବିକାଶ ମୁହୂର୍ତ୍ତରେ ମଠର-ହର୍ନର ଘନ ଘନ ଧାତବିକ ସତର୍କ ଧ୍ୱନି ।...ଅମ୍ନ—ବହ୍ୱଳା ଭଦ୍ର ମହିଳା ହୋଇଗଲେ ଅମ୍ନ-ସଂବଳା...ଶିଶୁଟିକୁ ଚଣାବାଲାର ଇତର କବଳରୁ କଲେ ବିମୁକ୍ତ ଓ ଚାଲି ଯିବାକୁ ହେଲେ ଉଦ୍ୟତ ।

ସେତିକିବେଳେ 'ଖୋକା', 'ଖୋକା' ବୋଲି ଡାକି, ଚଣାବାଲା ଉଚ୍ଛନ୍ନ; ଆଉ ବଡ଼ ଗୋଟିଏ ଠୁଙ୍ଗାରେ ଭେଟି-ବେଭାର ଖଞ୍ଜିବାକୁ ବ୍ୟସ୍ତ କାହିଁରେ କ'ଣ ?

ନିସ୍ତ୍ରମଣକାରିଣୀ ପ୍ରମାଦ ଗଣିଲେ ।

ତେଣେ ହର୍ନର ମୁହୁ-ର୍ମୁହୁ ଗର୍ଜ୍ଜନ, ଏଣେ ଚଣାବାଲାର ବ୍ୟାକୁଳ ଅବାହନ...ଏକଅଡ଼େ ସାମାଜିକ ବାସ୍ତବାନୁଭୂତି, ଅନ୍ୟଅଡ଼େ ମାନବିକ ପୂର୍ବସ୍ମୃତି...ମହା ସଂକଟ...ଉପୁଜିଲା ଦ୍ୱନ୍ଦ୍ୱ ...ଆଭିଜାତ୍ୟ-ଜିଗୀଷା ପ୍ରବଳ ଥିଲେ ମଧ୍ୟ, ସହଜାତ ବିବେକ— ଚେତନା ହେଲା ପ୍ରବଳତର...ବିବେକିନୀ ଅବଲୀଳାରେ ଚଣାବାଲା ଆଡ଼କୁ ଚାଲିଲେ, ଆଉ ଶିଶୁର ସରଳ ହସ ଅଶିଶୁ ଅଧରରେ ଫୁଟାଇ

କହିଲେ—'ଦୋକାନ ଗୋଟାକ ଅଜାଡ଼ ଭେଟି ସଜାଡ଼ିଲେବି ହେବ କଣ ?... ତୁମର 'ଖୋକା' ର ସ୍ପେଶାଲ ଚଣା ଭେଟି ଦେଇ ପାରିବତ ?'

ଏଥିରେ ଚଣାବାଲାର ଯେଉଁ ବିଶେଷ ସ୍ମୃତି ହେଲା ଉଦ୍ରିକ୍ତ, ତା'ର କର୍ମବ୍ୟସ୍ତ ହସ୍ତ ହୋଇଗଲା ଅବଶ, ବାଙ୍ମୟ କଣ୍ଠ-ନାଳୀ ହେଲା ଅବରୁଦ୍ଧ, କେବଳ ଢ଼ଳ ଢ଼ଳ ଆଖିର ସୁଢ଼ଳ ଚାହାଣି ଦେଲା ମଥିତ ହୃଦୟର ନିଭୃତ ସନ୍ଦେଶ ।

ଆବେଦନ-ଗମ୍ଭୀର ଏହି ସଂକଟ ମୁହୂର୍ତ୍ତିରେ ମହିଳାଟି ଆହୁରି ନିକଟେଇ ଆସିଲେ, ଭ୍ୟାନିଟି ବ୍ୟାଗରୁ ଦାମୀ କାର୍ଡଟିଏ ବାହାର କଲେ, ମୋଲାଏମ୍ ବ୍ଲାଉସର ନିବିଡ଼ ଅନ୍ତରାଳରୁ ହ୍ୟାଣ୍ଡି ଫାଉଣ୍ଟେନ-ଟିଏ ଉଠାଇ ଆଣିଲେ, ଷୀଣ୍ଣମାନ ଅଙ୍ଗୁଳି ଦ୍ୱୟର ଅଗ୍ରଭାଗରେ ଧରି କ'ଣ ଲେଖିଲେ, ତା'ପର ସାଗ୍ରହେ କାର୍ଡଟି ଚଣାବାଲା ହାତକୁ ବଢ଼ାଇ ଦେଇଁ ଦେଇଁ କହିଲେ—

ଆସନ୍ତା ରବିବାର 'ମୋ'ର ଖୋକାର ଜନ୍ମଦିନ...ନିମନ୍ତ୍ରଣ ରହିଲା...ଏହି କାର୍ଡରେ ଠିକଣା ଅଛି...ଭୁଲିବନି...ହିଁ, ସେହି ସଙ୍ଗେ ମୋର ସ୍ପେଶାଲ ଚଣା...ତୁମର ଖୋକାର...ହାଁ...

ଚଣାବାଲାର ଅଧରରେଖା ପ୍ରସାରିତ ଓ ଭ୍ରୂଯୁଗଳ ପ୍ରଲମ୍ବିତ ହୋଇଗଲା...ଅନାଚ୍ଛାଦିତ ଚକ୍ଷୁଦ୍ୱୟ ସେ ଏକାଏ କରି ସେହି କାର୍ଡଟି ଉପରେ ଦୃଷ୍ଟି ନ୍ୟସ୍ତକଲା ।...ଲେଖା ପଢ଼ି ପାରିଲ

କ ନା, କହୁ ହେବ ନାହିଁ, ତେବେ ବିଗତ ଦିନର 'ଖୋକା'ର ଅଲେଖ୍ୟ ଯେ ସେହି ବକ୍ର ରେଖା ଗୁଡ଼ିକର ସମନ୍ୱୟରେ ଫୁଟି ଉଠିଥିଲା ଅଖି ଅଗରେ, ତା'ର ବିମୁଗ୍ଧ ଚାହାଣି ଏଥିର ଅକାଟ୍ୟ ପ୍ରମାଣ ବାଢି ଦେଉଥିଲା ।

ଅନ୍ୟ ଦିଗରେ 'ଖୋକା' (ମହୁଲା) ମଧ୍ୟ ଅନୁରୂପ ଲୟ୍ଯ ଲଗେଇ ଚଣାବାଲା ମଧ୍ୟରେ ଦେଖୁଥିଲେ ତାଙ୍କର ଖୋକା ଦିନର 'ଘୁଙ୍ଗୁର ଦାନା'କୁ ।

ଏହିପରି ଗୋଟାଏ ପାରସ୍ପରିକ ବିରହ-ମିଳନର ମଧୁମୟ ଦ୍ୱନ୍ଦ୍ୱ ମୁହୂର୍ତ୍ତିରେ, ଚଣାବାଲା ହଠାତ୍ ହୃଦୟରେ ଛନକା ପଶିଲା ଭଳି ହୋଇ ଚମକି ଉଠିଲ, ଅଉ କାଠ ପାଲଟି, କଲାକାଠ ପଡିଗଲ ସଙ୍ଗେ ସଙ୍ଗେ ।

ବିଷଧରର ସ୍ୱଭାବ ବିଷବୈଦ୍ୟ ବୁଝେ ।···ମହୁଲାଟି ସେହିପରି ବୁଝି ପାରିଲେ ଚଣାବାଲାର ସେ ଭାବ ଏବଂ ତତ୍‌କ୍ଷଣାତ୍ ତାହାର ପ୍ରତିକାର କଲେ ଏହିପରି ଅଶ୍ୱାସନା ଦେଇ—

'ଭୟ ନାହିଁ···ପୁଲିସ୍ ଡାଉଚି ତୁମକୁ ଶାମବଜାରରୁ··· ସେଠି ମୋ'ର ବାପ-ଘର···ଏ' ବାଲିଗଞ୍ଜର ଠିକଣା···ସେ'ଠି ମୋ'ର ଶାଶୁଘର...ବାବସ୍ଥାର ସାହେବଙ୍କ କୋଠି...ଶଙ୍କିବ ନାହିଁ ...ମୋ'ର ଏହି କାର୍ଡଟି ଗେଟର ଦରୱାନକୁ ଦେଖାଇଲା ମାତ୍ରେ,

ସେ ସଲାମ୍ ଠୁକ୍ଧି ତୁମକୁ ବାଟ ଛାଡ଼ି ଦେବ...ଏ' ମୋର ଅତି ଗୋପନ ସଙ୍କେତର ବାହକ···ବାଏ, ବାଏ...ନା, ନମସ୍କାର, ନମସ୍କାର···'

ଏ'ଭଳି ସୌଜନ୍ୟଜ୍ଞାପନରେ ମୋ'ଭିତରୁ ଗୋଟାଏ ହସ କୁରୁଳି ଉଠିଲା; କୌଣସି ମତେ ତାହା ଚାପି ମନକୁ ମନ କହିଲି—ଇଂରେଜ ଛାଡ଼ିଗଲେ ମଧ୍ୟ ଇଂରେଜୀ ଛାଡ଼ିବାକୁ ଯେତେବେଳେ ଆମେ ନାରାଜ, ସେତେବେଳେ ଏହିଭଳି ଭାଷା ଓ କୃଷ୍ଟିର ଦ୍ୱନ୍ଦ୍ୱ ଲାଗି ରହିଥିବ, ଏଥିରେ ଆଉ ଆଶ୍ଚର୍ଯ୍ୟ କ'ଣ ?···ଛାଡ଼···ତା'ପର—

ଏ'ଠା ଦୃଶ୍ୟର ଏହିଠାରେ ଅବସାନ, ଏହି କଥା ଚିନ୍ତା କଲା ମାତ୍ରକେ, ଚଣାବାଲାର ଇତିହାସ-ଚିନ୍ତା ପ୍ରବଳ ହୋଇ ଉଠିଲା।··· ଚିନ୍ତାର ଧାରା ଏହିପରି ଚାଲିଲା — 'ପୁଲିଶ୍', 'ଶ୍ୟାମ-ବଜାର' ଏହି ଦୁଇଟି ଶବ୍ଦରେ ନିହିତ ରହିଚି ଚଣାବାଲାର ଗୋଟାଏ ଅଧ୍ୟାୟର ଇତିହାସ।...ମୋ'ର ଆଲୋଚନା ସମ୍ପର୍କରେ ଏହା ଅପରିହାର୍ଯ୍ୟ।...ବ୍ୟକ୍ତିବିଶେଷର ମନର ଖବର ନେବାକୁ ହେଲେ, ଚରିତ୍ରର ଖବର ନେବାକୁ ହୁଏ।···ଚରିତ୍ର-ଦର୍ଶନ ପର୍ଯ୍ୟବେକ୍ଷଣ ସାପେକ୍ଷ।···ପର୍ଯ୍ୟବେକ୍ଷଣ ରସାଣିତ ହୋଇଥାଏ ଇତିହାସ ଦ୍ୱାରା।···ଇତିହାସର ସମ୍ବଳ ତଥ୍ୟାବଳି।···ସୁତରାଂ ତଥ୍ୟ ସମ୍ବଳିତ ଇତିହାସ ସଙ୍ଗେ ଯେ ମନର ତାତ୍ତ୍ୱିକ ବିଶ୍ଳେଷଣ ଅଙ୍ଗାଙ୍ଗୀ, ଜଡ଼ିତ ଏଥିରେ ସନ୍ଦେହ ନାହିଁ।··· ମୁଁ ମାତ୍ର ଦୁଇଟି ତଥ୍ୟ (ଶିଶୁ-ପ୍ରୀତି ଓ ନିର୍ଝଞ୍ଝାଟ ସଂସାର) କୁ ଭିତ୍ତି କରି ଚଣାବାଲାର ସୂକ୍ଷ୍ମ ମନସ୍ତତ୍ତ୍ୱ ( ଅବ୍ୟକ୍ତ ମର୍ମବେଦନାର ପ୍ରଶ୍ନ ) ଆଲୋଚନାରେ

ପ୍ରବୃତ୍ତ ହୋଇଥିଲି।... ସେଥିରେ କି ପ୍ରମାଦ ତାହା ବର୍ତ୍ତିମାନ ଉପଲବ୍ଧି କରୁଛି।...ମୁଁ ଏକତରଫା ବିଗ୍ଭର କରିଥିଲି।...ଚଣା-ବାଲାର ଗୁଣ-ଦିଗଟାହିଁ ସାର କରିଥିଲି, ଦୋଷ-ଦିଗଟା କଳ୍ପନାରେ ସୁଦ୍ଧା ଆଣି ନଥିଲି। ଦୋଷଗୁଣ ମିଶି ମାନବ।...ମାନବର ତୌଲ କରିବାକୁ ହେଲେ, ତୁଳା-ଦଣ୍ଡର ଏକ ପଲାରେ ଗୁଣ, ଅନ୍ୟ ପଲରେ ଦୋଷକୁ ଥୋଇବ।...ଦୋଷ-ଗୁଣର ତାରତମ୍ୟ ଦେଖିବ। ...ଓଜନ ଠିକ୍ କରିବ।...ତେବେ ଯାଇ ଜଣେ ହେବ ନିରପେକ୍ଷ ଦଣ୍ଡିଦାର, ମାନବ ପ୍ରତି କରିବ ଠିକ୍ ବିଗ୍ଭର ...ମୁଁ ଯଥାର୍ଥ ବିଗ୍ଭରକ ହେବି, ତଥ୍ୟକୁ ଯଥା ସଂବଳ କରି, ଚଣାବାଲାର ବିଗ୍ଭର କରିବି,— ଏହି ଭାବରେ ହେଲି ଅନୁପ୍ରାଣିତ।...'ପୁଲିସ୍' ଓ 'ଶ୍ୟାମବଜାର' ତଥ୍ୟ ସଂଧାନର ସୂତ୍ର ଦେଇଛି।...ବାରିଷ୍ଟର, ବାରିଷ୍ଟରାଣୀଙ୍କ କଥା ବାର୍ତ୍ତାରୁ ଯଦି ସେ-ସଂକ୍ରାନ୍ତରେ ବିଶେଷ ଆଲୋକ ପାତ କରି ପାରେ —ଏହି ଭରସା ରଖି ହଲଣ୍ଟାର ତାଡ଼ନାରେ ମୁଁ ଟେକିତେବେଲେ ଟପ ଫାଟକ ଡେପି, ବାରିଷ୍ଟରାଣୀଙ୍କୁ ଆଗେଇ, ଫୁଟ୍ ପାଥରେ ଠିଆ, ତା' ମୁଁ ନିଜେ ଜାଣି ପାରିନାହିଁ।...(ଅବଶ୍ୟ ମୋ'ର ମନର କଥା ବର୍ତ୍ତିମାନ ବିଶ୍ଳେଷଣ କରି କହିବାକୁ ଯେତେ ସମୟ ନେଲି, ସେତେବେଳେ ଏହାର ଶତାଂଶରୁ ଏକାଂଶ ସମୟ ମଧ୍ୟ ଲାଗି ନଥିଲି ଚିନ୍ତା ଓ କାର୍ଯ୍ୟ ମଧ୍ୟରେ, କହିଲେ ଅତ୍ୟୁକ୍ତି ହେବନାହିଁ।)...

ମଟରକୁ ଅନାଇ ଦେଖେଁ—ବାରିଷ୍ଟର ସାହେବଙ୍କ (ସାହେବର ପୋଷାକ ଅବଶ୍ୟ ନ ଥାଏ) ତୁଷ୍ଟି ଭାବ...ବୋଧହୁଏ ଅନେକ ଅସ୍ଫାଳନ (ଘନ ଘନ ମଟର ହର୍ନ ବାଦନ ଜନିତ) ପରେ ଏକାବେଳକେ ବୌଦ୍ଧ—ଅବତାର।... ବାରିଷ୍ଟରାଣୀଙ୍କ ଅଡ଼କୁ

ଅନାଇ ଦେଖେଁ, ସେ ଫାଟକ ପାଖ ହୋଇ ମଝରେ ଅଡ଼କୁ ଅଗଳ ଥିଲେ, ପୁଣି କାହିଁକି କେଜାଣି ବେବୀକୁ ଟେକି ବଗିଚ୍ଚ ଭିତରକୁ ଲେଉଟିଲେ ।···ଚଣାବାଲା ସେତେବେଳକୁ ଦୋକାନର ସୀମା ଛାଡ଼ି ଫାଟକ ପର୍ଯ୍ୟନ୍ତ ଧାଇଁ ଆସିଥାଏ (ଅବଶ୍ୟ ତା'ର 'ଖୋକୀ'ର ଅଦୃଶ୍ୟ ଆକର୍ଷଣରେ) ।...ଫାଟକ ସୀମାନ୍ତରେ ଏକପ୍ରକାର ଉଭୟଙ୍କର ଭେଟ ···ସୁତରାଂ ମୋ'ର ଶୁଣିବାକୁ ବିଶେଷ କଷ୍ଟ ହେଲନାହିଁ ଯେତେବେଳେ ବାରିଷ୍ଟରାଣୀ ଧୀର ଜଡ଼ିତ କଣ୍ଠରେ କଥା ଆରମ୍ଭ କଲେ,—ମୋର ବେବୀ କହୁଚି···

ବେବୀଟି କିନ୍ତୁ ତା'ର ସ୍ୱଭାବ ସୁଲଭ ଚପଳତାରୁ ଅନ୍ତରାୟ ହେଲା ଓ ଅଧୈର୍ଯ୍ୟ ଜଡ଼ତା ନ ଥାଇ, କୁଲ୍‌ କୁଲ୍‌ କଣ୍ଠରେ, ଅର୍ଦ୍ଧ ସ୍ଫୁଟ ଭାଷାରେ ଅପୂର୍ଣ୍ଣ ପାଦ ପୂର୍ଣ୍ଣ କଲା ଏହିପରି—

'ତୁମଲ ବେବୀକୁ ଅନାବ, ମୁଁ ତା'ସଙ୍ଗେ···'

ଏତକ କହି, ବେବୀ ପରବର୍ତ୍ତୀ ଶବ୍ଦ ପାଇଁ (ବୋଧହୁଏ ଭୁଲି ଯାଇଥିଲା) ମା ଆଡ଼କୁ ଅନାଇଲା । ମା ମୃଦୁ ମୃଦୁ ହସି ମିଠା ମିଠା କଣ୍ଠରେ କହିଲେ—

'ମିଠା'...

'ମିଠା ବସିବି...ହଁ, ସେ ମତେ କ'ନ ଡାକିବ, ମାମା···?'

'ଖୋକା'

'ହଁ, ମୁଁ ତା'ଙ୍କୁ ଡାକିବି ଖୋକା...'

ଚଣାବାଲର ଆଖି ଛଳ ଛଳ ହୋଇ ଗଲା, ଓଠ ଥର ଥର ହୋଇ ଉଠିଲା···ସେ ମନର ବେଦନା ଗଦ ଗଦ କଣ୍ଠରେ ନିବେଦନ କରିବାକୁ ଗଲା, କିନ୍ତୁ ବାରଷ୍ଟରାଣୀ କ'ଣ ବୁଝିଲେ କେଜାଣି, ବାଧା ଦେଇ ନିଃସଙ୍କୋଚ ଓ ଦୃଢ଼ କଣ୍ଠରେ କହିଲେ—

'ମୁଁ କୌଣସି କଥା ଶୁଣିବି ନାହିଁ—ପୁଅର ଝିଅ ହେଉ କି ଝିଅର ଝିଅ ହେଉ, ମୋ'ର ବେବୀର ସମବୟସୀ ନିଶ୍ଚୟ ତୁମର ନାତୁଣୀଟିଏ ଅଛି।···ଆଣିବାକୁ ହେବ...ଏ' ମୋ'ର 'ଖୋକା' ର ଅନୁରୋଧ, ଆଉ ତୁମ 'ଖୋକା'ର ହୁକୁମ !!'

ବିଚାରକ ଯେମିତି ଫାସିର ଆସାମୀକୁ ଶେଷ ନିଷ୍ପତ୍ତି ଶୁଣାଇ ଆସନ ତ୍ୟାଗ କରିଥାଏ, ଠିକ୍ ସେହିଭଳି ବେବୀ ସହ ବାରଷ୍ଟରାଣୀ ସ୍ଥାନ ତ୍ୟାଗ କଲେ।...ଚଣାବାଲା ଏ'ଭଳି ଅପ୍ରତ୍ୟାଶିତ ଆଦେଶ ଶୁଣିବାରେ ଭେଲ୍‌କା ବନି ଚାହିଁ ରହିଲା ଆଦେଶକାରିଣୀର ଗମନ ପଥକୁ।···ସେତେବେଳେ ତା'ର ପ୍ରସ୍ରବଣଭୂତ ନୟନ ଯୁଗଳରୁ ଯେମିତି ଅଶ୍ରୁର ଝରଣା ଫିଟି ନିଗିଡ଼ି ପଡ଼ୁଥାଏ।···ଅହା ! ବିଚରା ନିଃସାହା, ଏଇ କଥାଟି ସେ କହିବାକୁ ଯାଉଥିଲା ତା'ର 'ଖୋକା'କୁ ବିଚଳିତ କଣ୍ଠରେ।···ହେଲେ 'ଖୋକା' ନିଜର ପିଲା ହିଁ ନାଅ

ଜାଦ୍ ଧର ହେଉ ବା ବଡ ଧନର ବିଶ୍ୱାସରେ ଅବିଚଳ ଥାଇ ହେଉ ହିମାଚଳର ବାଧା ସୃଷ୍ଟି କଲା ସିନା···ସୁତରାଂ ନିଃସହାୟ ଚଣାବାଲା ବିଚକ୍ଷଣର ହୃଦୟର କୋହ ଆଖିର ଲୁହ ହୋଇ ଆତ୍ମ-ପ୍ରକାଶ କରିବ, ଏଥିରେ ଆଉ ଆଶ୍ଚର୍ଯ୍ୟ କ'ଣ ?···ମୁଁ ସମବେଦନାରେ ହେଲି ଅପ୍ଲୁତ; ସେହି ବେଦନା ଅଧିକ ଗାଢ଼ରେ ହୋଇ ଉଠିଲା, ଯେତେବେଳେ ଅବଲୋକନ କରେ, ସେ ସେହି ବିମୂଢ଼ ଭାବରେ ଥିଲେ ସୁଦ୍ଧା, ତାର ହସ୍ତଦ୍ୱୟ ସୁଦୃଢ଼ ଭାବରେ ବ୍ୟାପୃତ ଥାଏ ସେହି ଅଭିଜ୍ଞାନ କାର୍ଡଟିକୁ ଆପଣାର କୁର୍ତ୍ତି କାନିରେ ଗଣ୍ଠିଧନ କରି ଗଣ୍ଠେଇବାକୁ ।

ମୁଁ ମଧ୍ୟ ମନକୁ ଦୃଢ଼ କଲି···ସେହି ଦୃଶ୍ୟରୁ ଆପଣାକୁ କଲି ବିମୁକ୍ତ···ଏଣେ ଉଙ୍କାଇ ଦେଖେଁ—ବାରିଷ୍ଟର ସାହେବ ଦେଶୀୟ ପୋଷାକରେ ଥିଲେ ମଧ୍ୟ, ବିଦେଶୀୟ ଆଦବ କାଇଦାରେ ପକା ଦୋରସ୍ତ ।···ଦୁର୍ଜ୍ଜୟ ଅଭିମାନ···ତଥାପି ବିବି ସାହେବା ମଠର ନିକଟକୁ ଆସିଲା ମାତ୍ରେ, ନିଜେ ମଠରରୁ ଓହ୍ଲାଇ ଆସି ଦରଜା ଫିଟାଇ ଦେଲେ, ଓ ବନ୍ଦ କରିଦେଲେ ।··· ସେତେବେଳକୁ ମୁଁ ମଠର ନିକଟରେ ।···ମଠର ଉହାଡ଼ରେ ଆପଣାକୁ ଛପାଇ ରଖି ଉତ୍କଣ୍ଠାରେ ଉତ୍କର୍ଣ୍ଣ...ମନରେ ଆଶାର ବୈତରଣୀ—ସ୍ୱାମୀ ସ୍ତ୍ରୀ ମଧ୍ୟରେ ଚଣାବାଲାର ପ୍ରସଙ୍ଗ ପଡ଼ିବ, ବାଦାନୁବାଦର ଝଡ଼ ବୋହିଯିବ, ଆଉ ମୁଁ ଫାଇଦା ଉଠାଇବି, ପାକଲ ଧାନ ଶିଷାରୁ ଝଡ଼ିଲା ଧାନ ସଂଗ୍ରହ କଲା ପରି ବହୁ ତଥ୍ୟ ।··· କିନ୍ତୁ ମଠରଷ୍ଟାର୍ଟର ଅଗ୍ନିନିକ ଶବ୍ଦ ମୋ'ର ଧ୍ୟାନ ଭୁଟାଇଲା···ଉଁକି ମାରି ଦେଖେଁ—ସାହେବ, ବିବି ଯେ ଯାହା ତାଳରେ ଥାଇ ତାସ-ପଟର ନିର୍ଜୀବ ଛବି ବିଶେଷ ।···ବେଙ୍ଗାଟି ବୋଧହୁଏ ଏ' ଅଦ୍ଭୁତିଆ ଭାବ

ସମ୍ଭାଳି ପାରିଲି ନାହିଁ, ସେଥିପାଇଁ ସେ ଡାକିଉଠିଲି—'ଡ୍ୟାଡି···ମାମା···'; ଅନୁଭବ କୁଳୁ କୁଳୁ କଣ୍ଠରେ କି ବ୍ୟାକୁଳତା ପ୍ରକାଶ କରିବାକୁ ଯାଉଥିଲା, ଏତିକିବେଳେ ମଠରେ ଛାଡ଼ିଦେଲି ···

ମଠରେ ଅଦୃଶ୍ୟ ହେଲି...କିନ୍ତୁ ମଠରେର ଦୃଶ୍ୟ ରହିଗଲା···ପିତା-ମାତାର ନିସ୍ପନ୍ଦ ଭାବ, ଆଉ ବେବୀଟିର ବ୍ୟାକୁଳତା ମୋ' ଭିତରେ ଉଦ୍ରେକ କଲା ଗୋଟାଏ ଯୁଗଧର୍ମୀ ଉପମା-ବୋଧ।···ଆଜି ପୃଥିବୀରେ ଦୁଇଟି ପରସ୍ପର ବିରୋଧୀ ଗୋଷ୍ଠି ମଧ୍ୟରେ ଚାଲିଛି ଶୀତଳ ଯୁଦ୍ଧ—ଗୋଟିଏ ସାମ୍ରାଜ୍ୟବାଦୀ, ଅନ୍ୟଟି ସାମ୍ୟବାଦୀ। ଏହି ଦୁଇଟି ନୀତିଧୁରନ୍ଧରଙ୍କୁ ଅହ୍ୱାନ ଜଣାଇ, ନବଜାତକ ଭାରତ ଯେମିତି ତା'ର ସହାବସ୍ଥାନ-ନୀତମାଧ୍ୟମରେ ସ୍ୱକୀୟ ନବପରିକଳ୍ପିତ ସମାଜବାଦୀ ସମାଜର ଅସ୍ପଷ୍ଟ ରୂପକୁ ସ୍ପଷ୍ଟ କରି ବାଢିଦେବ, ଏଥିପାଇଁ ବ୍ୟାକୁଳ !

ଯାହାହେଉ, ମୋ'ର ମୋହାଚ୍ଛନ୍ନତା ତୁଟିଲା।···ଚେତା ପଶିଲା।···ପୁଣି ସେହି ପୁଲିଶ୍—ଶାମବଜାର ଚିନ୍ତା ମୋତେ ଘାରିଲା। ମୁଁ ଆସିଥିଲି ଯାହିଁ ସେହି ସଂକ୍ରାନ୍ତ ତଥ୍ୟ ସଂଗ୍ରହ କରିବି—ଏହି ଆଶାରେ।···ହେଲି ନିରାଶ।—ଭାଙ୍ଗି ପଡୁଚି, ଏତିକି-ବେଳେ ବାଟ ଦିଶିଗଲା।—ଗାଢ଼ ଅନ୍ଧକାରର ବୁକୁ ଚିରି ବିଦ୍ୟୁତ୍ ଝଲକ ଯେମିତି ପଥିକକୁ ବାଟ ଦେଖାଇ ଦିଏ, ଠିକ୍ ସେହିପରି ପ୍ରତ୍ୟୁତ୍ପନ୍ନମତିତ୍ୱ ମୋ'ର ନୈରାଶ୍ୟ ଭେଦ କରି ବୁଦ୍ଧି ବତାଇ ଦେଲା—ନିକଟରେ ତଡ଼ାଗ, ଅଥଚ ମୃଗର ତୃଷା ଯେନି ମୃଗ-ତୃଷା ପଛରେ ଧାଇଁଚି!···ତଥ୍ୟର ମାଲିକ ସ୍ୱୟଂ ଚଣାବାଲା ବିଦ୍ୟମାନ।

···ଚଣାକଣିବ, ଭାବ ପ୍ରୋଷ୍ଟି ଜମାଇବ—ସେହି ସୂତ୍ରରେ ଉଦ୍ଦେଶ୍ୟ ହାସଲ କରିବା।...ସମୟ ଲାଗିବ...ଲାଗୁ··ହେଲେ, ଆଜ୍ଞ କରିବ ଅନୁକୂଳ।···ଶୁଭସ୍ୟ ଶୀଘ୍ରଂ···ଏହି ସଙ୍କଳ୍ପ ନେଇ, ଦ୍ରୁତ ପାଦ-କ୍ଷେପରେ ଆସି ଦେଖେଁ—ସ୍ଥାନ ଶୂନ୍ୟ !...'ଚଣାବାଲା କାହିଁ ?'··· ପ୍ରଶ୍ନଟି ମନକୁ ମନ କଲି ସତ, କିନ୍ତୁ ତାହା ବିସ୍ମୟର ଧ୍ୱନିମୟ ଆବେଗ ନେଇ ଏ'ଭଳି ବିଧ୍ୱନିତ ହୋଇ ଉଠିଥିଲା ଯେ, ଅନତି ଦୂରବର୍ତ୍ତୀ ଅନ୍ୟ ଗୋଟିଏ ଚଣାବାଲା ତା'ର ପଶରା ଛାଡ଼ି ଅଧୀର ଭାବରେ ମୋ' ନିକଟକୁ ଧାଇଁ ଆସି, ଧୀର କଣ୍ଠରେ କହିଲା—'ବାବୁଜି ! ···ଓସ୍ତାତକୁ ଶୀତଳାମାଇଜି ସବାର ହୋଇଗଲା !... ତା' ନହେଲେ ଏମିତ ବେସମାଲ୍ ହୋଇ ଦୋକାନ ଗୋଟାକର ମାଲ୍ ଏକୁଟିଆ ଲୁଣ୍ଠେଇ ମୁଣ୍ଡେଇ ଭାଗଲ୍‌ବାଜ୍ !···ଏଣ୍ଡୁ ଦେଖନ୍ତୁ ନା···'

ସତକୁ ସତ ଉକ୍ତ ସ୍ଥାନକୁ ଚାହିଁ ଦେଖେଁ--ଚଣା-ଚନାବାଦାମର କାଣ୍ଡି ଛତରଛାଲ ହୋଇ ଏଣେତେଣେ ବିଛୁଡ଼ ପଡ଼ିଛି !···ସେ ଆହୁରି କହିଲା—'ପିଲାଏ କେତେ କଏ ଆହୁରି ହରିଲୁଟ୍ ପରି ମଜା ଲୁଟି ନେଲେ ବାବୁଜି···ମୋ' ମନା କ'ଣ ମାନିଲେ ?··· ଠାକୁରାଣୀଙ୍କ ଅନ୍ତ୍ରଣୀଆ...'

ଏହାପରି କହୁଁ କହୁଁ ସେ ଯୁକ୍ତକର ଅପଣା କପାଳରେ ଯୁକ୍ତ କରୁଥାଏ, ଆଉ ମୁଁ ତା'କୁ ଅପ୍ରତିଭ ଦୃଷ୍ଟିରେ ଚାହିଁ ରହିଥାଏ ! •••ଅକସ୍ମାତ୍ ମୋ'ର ଆଖି ପଡ଼ିଗଲା ତା'ର ଅସ୍ଥାନ ଉପରେ ···ମୁଁ ତୀର-ତୀବ୍ର ବେଗରେ ଧାଇଁ ଗଲି ସେ ସ୍ଥାନକୁ; ପହଁଚ

ଦେଖେଁତ ପଣସ୍ ଉହାଡ଼ରେ ଥୁଆ ହୁଇଛି ଜନୀଷ—'ଓସ୍ତାଡ୍'ର (ଚଣାବାଲାର) **ଲଇଟ୍ ଓ ଆସନ**।...ମୁଁ ଅବାକାବା !!

'ଏଁ, ତା'ର ଅଙ୍ଗର ଅଙ୍ଗ, ଜୀବନର ଜୀବନ-ଏହୁ ଦୁଇଟି ସାଥିକୁ ବି ଛାଡ଼ି ଭାଗଲବାକ୍ !'—ଏହିପରି କହୁ କହୁ ମନକୁମନ ମହା ବିସ୍ମୟରେ ଅଭିଭୂତ, ସେତିକିବେଳେ ସେହି ଅନ୍ୟ ଚଣାବାଲାଟି ମୋ'ର ମନର କଥା କ'ଣ ବୁଝିଲା କେଜାଣି, ଭାରି ନିଉଚ୍ଛଳ ହୋଇ କହିଲା—'କାଲୀମାଇଜୀର କସମ୍ ବାବୁଜି !···ଓସ୍ତାଡର ମୋହିଆ ଅସିଲା·ମାତ୍ରେ ତା'ର ଜିମ୍ମା ଲଗାଇ ଦେବ...'

ଏହିପରି ଆହୁରି କେତେ କ'ଣ କହିଯାଉଥିଲା, ମାତ୍ର ତାହା ଶୁଣି, ଶୁଣିବାର ବା ବୁଝି, ବୁଝିବାର ସ୍ପୃହା ମୋ'ର ଆଦୌ ନ ଥିଲା—କାରଣ ମୋ'ର ମନ,ଧ୍ୟାନ ସେତେବେଳେ ନିବଦ୍ଧ ହୋଇ ରହିଥାଏ ସେହି ଜନୀଷ ଦୁଇଟି ପ୍ରତି, ଆଉ ମୁଁ ଦେଖୁଥାଏଁ ନିଷ୍ପଲକ ଦୃଷ୍ଟିରେ—ଲଇଟ୍ଟି ମାଲିକର ଅନୁପସ୍ଥିତିରେ ଲିଭି ଲିଭି ଆସୁଚି !... ଆସନଟି ତା'ର ନିତ୍ୟ-ସହଚରକୁ ମ୍ଳାନ ମୁଖରେ ଅନାଇ ରହି, ନୀରବ ଭାଷାରେ ବ୍ୟଥା ଜଣାଉଚି !!

'ପଳାଇଲ !...କାହିଁକି ?...ନିଶ୍ଚୟ ପୁଲିଶର ଭୟ !...'—ଏହିଭଳି ପ୍ରଶ୍ନୋତ୍ତର ଆପଣା ମନକୁ କରୁକରୁ, ଦେଖିଥିଲି ଭାବରେ ପଥ ଚାଲି ଚାଲି, ପଥୁଆମାନଙ୍କ ସଙ୍ଗେ ଧକମ୍ ଧକ୍କା ଲଗାଇ ଟ୍ରାଫିକ୍ ପୁଲିଶର ଧମକା ଧମକ ଖାଇ, କେତେବେଳେ ଯେ ଘରେ ଆସି ହାଜର, ତାହା ଜାଣି ପାରି ନାହିଁ ।...ଜାଣିଲି ସେତକ-ବେଳେ, ଯେତେବେଳେ ଘରଣୀ ମୋତେ ଝିଙ୍କାଟାଏ ଦେଇ, ଝିଙ୍ଗାସି କହିଲେ ଗାଢ଼ ଅଭିମାନଭରା କଣ୍ଠରେ—'ନିଶା କରି ଶିଖିଛତ ?...ହୁଁ !'...ମୁଁ ଭବ-ନିଶାର ଝାଞ୍ଜ ଗଳାରେ ଯେମିତ ହସି ହସି କହିଲି—'ଭାଙ୍ଗ ନିଶା ନୁହେଁଗୋ, ଭାବର ନିଶା'...

କହିତ ଦେଲି...କହି ଦେଇ ଯାଏଁ କୁଆଡେ...ଏକେ ଖର-ପ୍ରକୃତ ମୋ'ର ଘରଣୀ, ତହିଁରେ ଗାଝିଲା ଝିଅ, ଏ'ଭଳି ଭଇଟି ହିଉମର (ସରସ ବୈଦଗ୍ଧ୍ୟ) ବୁଝିବାକୁ ଖମ୍ବଆଳୁ !...ସୁତରାଂ ହୋଇଗଲେ ଶହେ କୋଡ଼ିଏ ଡିଗ୍ରିରୁ (ଅବଶ୍ୟ ଫାର୍ନହାଇଟ୍ ମାପରେ) ଅଧିକ ପ୍ରଖର । ସେ ଭାବିଲେ ମୁଁ ତା'ଙ୍କୁ ଚିଗୁଲେଇ ହେଉଚି, ଠାଟ୍ଟା ଠାପର କରୁଛି ।

ଫଳରେ ଚାଲିଲା ଦାର୍ଜିକାମାଡ଼, ଲଗିଲା ଭାବ ଅଭାବର ପ୍ରୀତି ପାଲି...ମୁଁ ବିଲ୍‌କୁଲ୍ ସ୍ଥିର ରଙ୍ଗମଞ୍ଚ ପାଲଟି ଗଲି...ମୋତେ

ଦଳିତ ମଥିତ କରି ଏକଆଡେ ଅନୁଷ୍ଠିତ ହେଲା ଯେମିତି ଏକକ ଅଭିନୟର ତାଣ୍ଡବ, ଅନ୍ୟଆଡେ ସେମିତି ନେପଥ୍ୟ–ତାନ—ଅର୍ଥାତ୍ ଅନ୍ତର ମଧ୍ୟରେ (ଅନ୍ତର) 'ପୁଲିଶ୍', 'ଶ୍ୟାମବଜାର', ଆଉ ନୂତନ ସହଯୋଗୀ 'ପଳାୟନ' ସମେତର ବିଷମ ଐକ୍ୟ-ତାନ !···

ଯାହା ହେଉ, ପାଲି ଯଦି ଏଇଠାରେ ଶେଷ ହୋଇ ଥା'ନ୍ତା !···ତା' ହେଲା ନାହିଁ ···ପାଲି ଜରର ବାହାନା କରି ଘରଣୀ ସେ-ସ୍ୱପ୍ନରେ ଆଶ୍ରୟ ନେଲେ ମୋ'ର ଶୟନ କକ୍ଷର ପାର୍ଶ୍ୱ–କକ୍ଷରେ··· ମୁଁ ବି ଏହାକୁ ପାଳିକ ମନେ କରି ଶଯ୍ୟା ଗ୍ରହଣ କଲି... ନିଦ ହେଉ ନ ଥାଏ···ଅର୍ଦ୍ଧାଙ୍ଗିନୀ ଠାରୁ ସିନା ମୁକ୍ତି ପାଇଲି, ଚିନ୍ତା ସଙ୍ଗିନୀ ଠାରୁ କାହିଁ ?···ଅସ୍ପଷ୍ଟ ସେହି ବିଷମ ଐକ୍ୟ—ତାନ ଏଥର ସ୍ପଷ୍ଟ ହୋଇ ମୋ'ର କାନକୁ (ମନକୁ) ବିଷମୟ କରି ଦେଲା ···କେମିତି ସେହି ବାଦକ ତ୍ରୟ (ପୋଲିଶ, ଶ୍ୟାମବଜାର, ପଳାୟନ) ମଧ୍ୟରେ ସାମଞ୍ଜସ୍ୟ ଅଛି, ସେହି ସୂତ୍ରରେ ଚଣ୍ଡାବାଲର ଜୀବନ - ନାଟକର କେଉଁ କଳ୍ପନାତୀତ ବିଶେଷ ଅଙ୍କଟି ଉଦ୍‌ଘାଟିତ ହେବ, ଏହି କଥା ଭାବୁ ଭାବୁ କେତେବେଳେ ନିଦେଇ ପଡ଼ିଛି, ଆଉ ସ୍ୱପ୍ନ ଦେଖିଚି—

'ଶ୍ୟାମବଜାରର ସେହି ଛକ—ଯେଉଁଠି ପାଞ୍ଚୋଟି ରାସ୍ତା ପଞ୍ଚଆବ (ନଦୀ)ପରି ଆସି ମିଳିଛନ୍ତି ।···ସେହି ଦୁସ୍ତର ଟ୍ରାଫିକ୍ ସାଗର ସଙ୍ଗମର ମଝାମଝି ଠ-ଦ୍ୱୀପ-ଅନୁରୂପର ଗୋଟିଏ ବେଦୀ । ସେହି ବେଦୀ ଉପରେ ସମୁଚ୍ଚ ଉପବେଦୀ । ଏହି ଉପବେଦୀ ଉପରେ ଦଣ୍ଡାୟମାନ ଦିକ୍ ନିର୍ଦ୍ଦେଶକ ଟ୍ରାଫିକ୍ ପୁଲିସ । ସେ ଯାନବାହନ ଚଳାଚଳର

ଯଥା ନାଯ଼ୂନ୍ଦଣରତ ।···ଶାମବଜାରର ଏହି ୧ ଥିଲଠି ସଦାବେଳେ ଜନାକାର୍ଣ୍ଣ ଓ ଜାନବାହନ ବହୁଳ ଥାଏ—କାରଣ ଏହିଠାରେ ଥିଏଠର, ସିନେମା ନକ୍ଷତ୍ର-ପୁଞ୍ଜର ସମାବେଶ ।·· ମ୍ୟାଟିନୀ-ଶୋ ଭାଙ୍ଗିଛି···ସଞ୍ଜିବତୀ (ବିଜୁଳିବତୀ) ଜଳି ଉଠିଥିଲେ ମଧ୍ୟ, ରତ ରତ ଧନ ରହୁଚ ।···ଜନ ଓ ଜାନବାହାନର ଗହଳି ଚହଳି କାହିଁରେ କ'ଣ ।···ଏହି ସମୟରେ ହଠାତ୍ 'ଗ୍ରେର' 'ଗ୍ରେର' ବୋଲି ପାଟି ଉଣ୍ଟ୍ରରେ ଦାଣ୍ଡ ଫାଟିପଡେ··· ପ୍ରଥମେ ଦେଖାଯାଏ ଗୋଟିଏ କ୍ଷୁଦ୍ର ଜନତାର କ୍ଷୀଣଧାର୍ ।···ଏହି ଧାର୍ଟି ଗୋ-ମୂତ୍ର ଛନ୍ଦରେ ଏ'ଗଳି, ସେ'ଗଳି ପରିକ୍ରମା କରି, ପୁଣି ପ୍ରଧାନ ରାଜପଥକୁ ବାହାରି ଆସେ ।···କ୍ରମେ ତାହା ସରଳ ରେଖାରେ ପରିଣତ ହୁଏ ।···ନାନା ଉପଧାର୍ର ଐଶ୍ୱର୍ଯ୍ୟ ନିବେଦନ ତାକୁ ଦିଏ ବ୍ରହ୍ମପୁତ୍ରର ବିପୁଳତା । ଏହି ବିପୁଳ ବାହିନୀ ସଂଗମ ସ୍ଥଳର ଉପବର୍ତ୍ତି ହୁଏ ।···'ଗ୍ରେର' 'ଗ୍ରେର' ଡାକର ଅବିରାମ କଲଧ୍ୱନି ସବୁ କଲ୍ଲୋଳକୁ ବଳିଯାଏ ।···ଗ୍ରେର କିଏ ଚିହ୍ନିବା କଠିନ ହୋଇପଡ଼େ ···ହୁଏତ ସେ ବି ସାଧୁଙ୍କ ସଙ୍ଗେ 'ଗ୍ରେର' ଡାକର ଭେଦ୍ଧ ଧରି ଅଭିନୟ ହୋଇ ଯାଇଥିବ ।...ତେବେ ଗ୍ରେର ଯେତେ ଚାଲାକ କଲେବି ଗ୍ରେର···ଗ୍ରେରର କନ କନ ସ୍ୱଭାବ ଯିବ କୁଆଡ଼େ ? ···ଦଳରୁ ଖସି ପଳାଇଲେ, ତା'ର ଖାସିର ଦଶାହେବ, ଏହି କଥା ଜାଣି ସେ ପଳାଇ ପାରିନାହିଁ ଅବଶ୍ୟ ।···ତେବେ ଏହି ଘାଟି-ସ୍ଥାନକୁ ଆସି ସେ ହଡ଼ବଡ଼େଇ ଯାଏ, ଯଉଁ ଲୋକଟି ତାର କନ କନ ଚାହାଣୀ ପ୍ରତି ତୀବ୍ରଦୃଷ୍ଟି ରଖି ସନ୍ଦେହରେ ତା'ର ପିଛା ନେଇଛି, ତା'ର ଦ୍ୱାରା କାଳେ ଅଭିଭୂତ ହୋଇ ପଡ଼ିବ ଏହି ଆଶଙ୍କା ତା'ର ପ୍ରବଳ ହୋଇ ପଡ଼େ···ଏଣେ ଦମ୍ଭ ଛୁଟିଲାଣି···କଣ କରେ ! ସୁତରାଂ ଛକ ମୁଣ୍ଡରେ ବାଙ୍କ ମୁହଁରେ ଉପସ୍ଥିତ ହେବା ମାତ୍ରେ, ସେ ଗୋଟାଏ ଉପସ୍ଥିତ

ବୁଦ୍ଧିର ଅଗମ୍ୟ ନୁହେଁ । ···ସେଇଠି ଠାଏ ଝୋକାଳିଆ ଚଣା-ଫେରିବାଲାଟିଏ ଠିଆ ହୋଇ ଏହି ପଟୁଆର ଦର୍ଶନ ନିଶ୍ଚିନ୍ତ ମନରେ ଉପଭୋଗ କରୁ ଥିଲା ।—ଏ'ପେ ଗୋଟାଏ ଗୁଡ଼ବକ୍, ଚୋର ଅତି ସହଜରେ ଠଉରାଇ ନେଲା ।—ତାର ନିକଟକୁ ଧସିଡ଼ହୋଇ ଯାଇ ତା'ର ହାତରେ ଚୋରି ମାଲଟା ଧରାଇ ଦେଲା ଓ 'ଚୋର', 'ଚୋର' ବୋଲି ପାଟି ତୁଣ୍ଡ କରୁ କରୁ ପଟୁଆର ଗହଣରେ ମିଶିଗଲା ।—ଏଣେ ଚଣାବାଲାଟି କୌତୁକୀ ହୋଇ କ ଠିକ ବୋଲି, ତାହା ଦେଖେ, ଦେଖି ଅବାକ୍—ସୁନାହାର ! ସାନ ପିଲା ବେକର ହେବ !—ଏହି ଅବସ୍ଥାରେ ପଛୁଡୁ ଜଣେ ଆସି ତା'ର ପିଠିରେପଡ଼ି ବେକଖଣ୍ଡୁକୁ ଧରି କହେ — ଚୋରତ ଏଇଠି ! — ଆଉ ହୁରି ପକାଇ ଜନତାର ମନୋଯୋଗ ଆକର୍ଷଣ କରେ ।—ତେଣେ ଅସଲ ଚୋରଟି ଅପଣାକୁ ଲଙ୍ଘାଳ ମୁକ୍ତ ମନେକରି ଥକାମାରି ଠିଆ ହୋଇଗଲା ବେଳେ; ସେହି ପୂର୍ବ ଅନୁସରଣକାରୀଟି ତା'ଉପରେ ବ୍ୟାଘ୍ର ଝାମ୍ପ ଦିଏ, ତା'କୁ କାବୁ କରିପକାଏ । ···ଚୋରର ମୁହଁ ଟାଣ ।···ବିଧା ଗୁପୁଡ଼ା ବର୍ଷିଗଲେ ମଧ୍ୟ, ଠିକ୍ଏବ ନ ଦମି ଜନତା ଆଗରେ ସଫେଇ ଗାଏ ।···ଜନତା ମଧ୍ୟ ଅଳ୍ପ ଧୋକାରେ ପଡନ୍ତି ନାହିଁ ।···ଏକ ଅଡେ ଜଣକ ହାତରେ ମାଲ, ଅନ୍ୟ ଅଡେ ଆଉଜଣେ ବିନା ମାଲ ସାବୁତରେ ଦୋଷୀ ବୋଲି ସାବ୍ୟସ୍ତ ।···ଶେଷକୁ ପୁଲିଶ୍ ଆସି ମୀମାଂସା କରିଦିଏ—ଅର୍ଥାତ୍ ଉଭୟଙ୍କୁ ପଗ୍ଡି ଘେନି ଯାଏ ଥାନାକୁ ।···ତଦନ୍ତ ଚାଲେ ।···ଯେଉଁ ଶିଶୁ ହିଁଅଟିର କଣ୍ଠ-ହାର, ସେ ଚଣାବାଲାକୁ ଚିହ୍ନେ, କିନ୍ତୁ ଚୋରକୁ କେବେ ଦେଖିନି ବୋଲି କହେ ।···ସିନେମା ଦେଖି ଫେରିଲା ବେଳେ ଏ' ଘଟଣା ଘଟିଛି ବୋଲି ଅଭିଭାବକ କହନ୍ତି ।···ପୁଲିଶ୍କୁ କିନ୍ତୁ ଏ' ଦୋଧାଇ-ସମସ୍ୟା ବଳାଏ ନାହିଁ । ସେ ନିର୍ଘାତ୍ ଉଭୟଙ୍କୁ ଦୋଷି

ସୂତ୍ରରେ ବାନ୍ଧି ଦିଏ, ଏବଂ ସେହି ଯୁକ୍ତି ବାଢ଼ି ମ୍ୟାଜିଷ୍ଟ୍ରେଟ୍‌ଙ୍କୁ ରିପୋର୍ଟ ପେଶ୍ କରେ ।···ମ୍ୟାଜିଷ୍ଟ୍ରେଟ୍ ଝିଅଟିର ସାକ୍ଷ୍ୟ ନିଅନ୍ତି ଏବଂ ତାକୁଇ ପ୍ରାମାଣିକ ତଥ୍ୟ କରି ଚଣାବାଲାକୁ ଖଲାସ କରି ଦିଅନ୍ତି । ରାଏରେ ପୁଲିସର ଫୁଲିଶ୍ ଯୁକ୍ତି ଖଣ୍ଡନ କରି ଉଲ୍ଲେଖ କରନ୍ତି ଯେ, ଯଦି ଚଣାବାଲା 'ଦୋଷି' (ଅସାମୀର), ତେବେ ସେ ପଳାଇ ନ ଯାଇ ଠିଆହୋଇ ରହିଲା କାହିଁକି ?···ଯଦି ସେ 'ଚୋର', ତେବେ ହାରଟି ସେ ଲୁଚାଇବାର ଚେଷ୍ଟା ନ କରି, ସର୍ବ ସମକ୍ଷରେ ଧାରଣ କରି ତାହା ନିରିଖି ଦେଖୁଥିବାର କାରଣ କ'ଣ ?

···ସେ ଯାହାହେଉ, ଖଲାସ ପାଇଲା ମାତ୍ରେ ଚଣାବାଲାଟି 'ଖୋକା', 'ଖୋକା' ବୋଲି କୁନି ଝିଅଟିକୁ କାଖେଇ କୁଣ୍ଢେଇ, କାନ୍ଧରେ ବସେଇ, ସେଇ କୋର୍ଟ ହତାରେ ବହେ ନାଚିଗଲା ଆପଣାର ଅଭ୍ୟସ୍ତ ନାଚ ନାଚି ।···ଅନ୍ୟାନ୍ୟ ଦର୍ଶକମାନଙ୍କ ଠାରୁ ବଳି ମୁଁ ଏତେଦୂର ବିହ୍ୱଳ ହୋଇଯାଇଥିଲି ଯେ, ମୋର ଆତ୍ମା ଯେମିତି ସେହି ଚଣାବାଲାର ଆତ୍ମା ସଙ୍ଗେ ଏକୀଭୂତ ହୋଇ ସମସ୍ୱରରେ ଚିତ୍କାର କରି ଉଠିଥିଲା—'ଖୋକା' ··· 'ଖୋକା' ······

ଠିକ୍ ସେତିକି ବେଳେ 'ଖୁକା'ର କ'ଣ ହୋଇଚି, କୁହ, କୁହ ବୋଲି ମୋ'ର ଘରଣୀ ଗଲା ରାତିର ସମସ୍ତ ମାନ ଅଭିମାନ ତୁଟେଇ ଦେଇ, ଘର କୋଉଠିରୁ ଧାଇଁଆସି, ମୋତେ ଠେଲି ପେଲି ଉଠାଇ ଦେଇ ମିନତିଭରା କଣ୍ଠରେ ପଚାରିବାକୁ ଲାଗିଲେ ।···ଖୁକା ମୋ'ର କନିଷ୍ଠ କନ୍ୟାର ନାମ, ଯଦିଚ ସେ ଅଧୁନା ଖୋକା ଖୋକା ମିଶି ତିନୋଟିର ଜନନୀ ।···'ଖୁକା' ନାମ-ମହାତ୍ମ୍ୟ ଯୋଗୁଁ ଏ'ମିଳନ,—

ସେଥିପାଇଁ ମୁଁ ଖୁସି ହେଲି ସତ, କିନ୍ତୁ ଖୁକୀର ଜନନୀକୁ ଅଦୌ ଖୁସି କରି ପାରିଲି ନାହିଁ ।···'ଖୁକୀର ଆମର କଷ୍ଟ ହୋଇନାହିଁ' ବୋଲି ଯେତେ କରି ବୁଝାଇ କହିଲି, ଦୁଇଥର ଗୋଟାଙ୍କର ନିଯୁମ ଖାଇଲି, ତଥାପି ତାଙ୍କର ହୃଦ୍‌ବୋଧ ହେଲା ନାହିଁ···ସେ ସେଇକ୍ଷଣି ରିକ୍‌ସା ଡାକି ବହୁବଜାର ଅଭିମୁଖେ ଯାତ୍ରା କଲେ···। ବହୁବଜାରରେ ଖୁକୀର ଶ୍ୱଶୁର ଘର ।···ମୁଁ ବାଧା ଦେଲିନାହିଁ··· କାରଣ ମନେ ପଡ଼ିଗଲା ଗୃହିଣୀର ସେହି ଉକ୍ତିଟି ଯାହା ବଳରେ ସେ ଅକାଠ ଯୁକ୍ତିକୁ କାଟିଥାନ୍ତି, ଯାହା ତାଙ୍କର ଅଦ୍ଭୁତ ପଇଟି ଥା'ନ୍ତି— 'ଯାହା ନ ଦେଖିବ ଦୁଇ ନୟନେ—ପରତେ ନ ଯିବ ଗୁରୁ ବଚନେ'।—କିନ୍ତୁ ମୁଁ ଗୃହିଣୀର ଏ' ପ୍ରକୃତିକୁ ଉପହାସ କରିବି କ'ଣ ପ୍ରକୃତ ପରିସ୍ଥିତିର ଏମିତି ପରିହାସ ଯେ ଏ'କଥା ମନେ ପଡ଼ିବା ସାଥି ସାଥି ସେହି ପ୍ରବଚନଟି ପ୍ରାମାଣ୍ୟ-ବଚନ ହୋଇ ଠିଆ ହେଲା ମୋ'ପକ୍ଷେ ।···ଛି, ଛି, ତଥ୍ୟ ନ ଜାଣି, ଶୁଣିକୁ ସାର କରି ସେହି ଶବ୍ଦ ଗୁଡ଼ିକ (ପୁଲିଶ, ଶାମବଜାର, ପଳାୟନ) ମଧ୍ୟରେ ଗୋଟାଏ ଅଳୀକ ଯୋଗ-ସୂତ୍ର ସ୍ଥାପନ କରିବାର ଚେଷ୍ଟା !—ସ୍ୱପ୍ନ କୁହ, କଳ୍ପନା କୁହ, ଏହା ଅତିରିକ୍ତ ଚିନ୍ତାର ରିକ୍ତ ବିଳାସ ଛଡ଼ା ଅଧିକ କ'ଣ ?

କେମିତି ଚଣାବାଲାକୁ ଭେଟିବି, ତଥ୍ୟ ସଂଗ୍ରହ କରିବି, ଏଥିପାଇଁ ମନଟା ଅଥୟ ହୋଇ ଉଠିଲା ।···ଘଡ଼ିରେ ସନ୍ଧ୍ୟା ପାଞ୍ଚଟା ବାଜିବ କେତେବେଳେ, ମୁଁ ବୁଲି ବାହାରିବି, ଏଥିପାଇଁ ଘଡ଼ିର କଣ୍ଟା ଯେମିତି ଅଟକି ଯାଇଛି, ଏହିପରି ମନେ ହେଉଥାଏ ...ମନର ଆବେଗ ସଙ୍ଗେ ସମୟର ବେଗ ପାରି ଉଠେ ନାହିଁ— ଏହା ଯେ ଯଥାର୍ଥ, ସେହି ଦିନହିଁ ମର୍ମେ ମର୍ମେ ଅନୁଭବ କଲି ।···

ଯାହା ହେଉ ଘାଞ୍ଚା ବାଜିବା ଯାଏ ଆଉ ଅପେକ୍ଷା କରି ରହି ପାରିଲି ନାହିଁ—ସାଢ଼େ ଗୃହଦ୍ୱାର ସଙ୍କେତରେ ବଡ଼ କଣ୍ଟା ଗୋଡ ଦେଇ ଯେମିତ ଟଂ ଶବ୍ଦ କରୁଛି, ମୁଁ ବି ସେମିତ ଡଙ୍ଗ ହୋଇ ନିଃଶବ୍ଦରେ ଘରୁ ଗୋଡ଼ କାଢିଚି···ଗୃହିଣୀ ଖୁକୀ ଘରଅଡୁ ଲେଉଟି ଅସି ମନର ଆନନ୍ଦରେ ଥିଲେ···ସେଥିଯୋଗୁଁ ନିତ୍ୟନିଅ ମୋତର ବ୍ୟତକ୍ରମ ଦେଖି ବିସ୍ମିତ ବା ନାରିଜ ହେବା ଦୂରେ ଥାଉ, ବରଂ ହସ ହସ ମୁହଁରେ ମୋ' ହାତରେ ପାନ ଖିଲେ ଓ ପାନବଟାଟି ଧରାଇ ଦେଇ, ଦୁର୍ଗାନାମ ସ୍ମରଣ କରିଥିଲେ···ମୁଁ ଏହାକୁ ଶୁଭ ଲକ୍ଷଣ ମନେ କରି, ବିଲକ୍ଷଣ ମନ ଖୁସିରେ ଜୟ-ଯାତ୍ରା ପଥରେ ଗୁଡ଼ ଅନୁକୂଳ କଲି...

ହେଲେ, 'ଶୁଭ ଅନୁକୂଳ' ଯେ ବସ୍ତୁତଃ ଅଶୁଭ ପ୍ରତିକୂଳ, ଦୁଗତ ନାଶିନୀ 'ଦୁର୍ଗା' ଯେ କାର୍ଯ୍ୟତଃ ଦୁଗତ-ଦାୟିନୀ, ଅଧିକନ୍ତୁ 'ଯେ କରେ ମୋତେ ଆଶ, ମୁଁ କରେ ତାର ସର୍ବନାଶ'—ପାଗଳ ହରନାଥଙ୍କର ଏହି ଆପ୍ତବାଣୀ ଭକ୍ତର ଦମ୍ଭ ଭାଙ୍ଗିବାକୁ ଉଚ୍ଚାରିତ ହୋଇ ଥାଉ, କିମ୍ବା ଭକ୍ତହୃଦୟରେ ଦମ୍ଭ ସଞ୍ଚାର କରିବାକୁ ଉଦ୍ଦିଷ୍ଟ ହୋଇଥାଉ—ଏହି ଉକ୍ତି ଯେ ପାଗଳର ପ୍ରଳାପ ନୁହେଁ, ସତ୍ୟ ଦର୍ଶୀର ସୁସମ୍ବନ୍ଧ ଆଳାପ, ଏଥିର ଓ ଅନ୍ୟ ଦୁଇଟିର ପ୍ରମାଣ ଲେଉଟିବାକୁ ମୋତେ ବେଳ କାଳ ଲାଗିଲା ନାହିଁ ।

ଚାଲିପଥରେ ଗୁଲିଚି···ଏକ ଧ୍ୟାନରେ···ମନେ ହେଉଥାଏ—ଅଶ୍ୱୋତ୍ପତ୍ତିର କଲି ବେଳେ ଯୋଗୀର ଯୋଗ-ସ୍ଥାନ ଭଳିଆ ଅନ୍ୟକେହି ଯେଉଁପରି ଅସ୍ତ୍ର-ଚିକିତ୍ସକର ଲକ୍ଷ୍ୟ-ବସ୍ତୁ ହୋଇ ନ ଥାଏ, ଆଉ

ତାକୁଇ ଲକ୍ଷ୍ୟ କରି ସେ ଯେଉଁପରି କାର୍ଯ୍ୟାନୁଷ୍ଠାନରେ କ୍ଷିପ୍ରତା ଅବଲମ୍ବନ କରିଥାଏ, ଠିକ୍ ସେହିପରି ଚଣାବାଲା ସଙ୍କ୍ରାନ୍ତରେ ଚଣାବାଲାର ତଥ୍ୟ-ସଂଗ୍ରହ ବ୍ୟତୀତ ଅନ୍ୟ କିଛି ପ୍ରତି ମୋ'ର ମାୟା ମମତା ନ ଥାଇ, କେବଳ ତଥ୍ୟ-ଜିଜ୍ଞାସୁ ହୋଇ ମୁଁ ଚଣାବାଲାକୁ ଭେଟିବାକୁ ଧାବମାନ···ସେହି ଦ୍ରୁତ ଅବସ୍ଥାରେ ଅନ୍ତର ମନେ ହେଉଥାଏ—ଯଥା-ସ୍ଥାନରେ, ଯଥା–ଆସନାରୂଢ଼ ଥାଇ ଚଣାବାଲାର କାଲ୍ପନିକ ଛବି ଯେମିତି ଚଳଚ୍ଚିତ୍ରର କ୍ଲୋଜ୍ଅପ୍ ଭଳି ମୋ' ଆଖି ନିକଟକୁ ଧାଇଁ ଆସି, ଆଖିକୁ ଧନ୍ଦ ଦେଉଛି (ଆପେକ୍ଷିକ ନିୟମ ଅନୁସାରେ ଏହା ଅସମ୍ଭବ ନୁହେଁ)··· ଠିକ୍ ଏତିକିବେଳେ ଅଧବାଟରେ ଉପୁଜିଲା ବାଧା···ମୋ'ର ଜଣେ ସିନେମା ରସିକ (ସିନେମାଫ୍ୟାନ୍) ବନ୍ଧୁଙ୍କ ସଙ୍ଗେ ବହୁଦିନ ପରେ ହଠାତ୍ ଦେଖା।···ସେ ନ.ଛୋଡ ବନ୍ଦା—ସିନେମା ଦେଖି ଯିବାକୁ ହେବ।··· 'କାବୁଲିବାଲା'— ଛବି। ମୁଁ ଅନ୍ତରର କଥା ଗୋପନ ରଖି, ନାନା ଅନ୍ତରାୟର ଦ୍ୱାହି ଦେଇ, କୌଣସି ମତେ ତାଙ୍କ କବଳରୁ ମୁକ୍ତ ପାଇଲି। ···କିନ୍ତୁ ହେଲେ କ'ଣ ହେବ, ମୋର ଚିନ୍ତାକୁ କବଳିତ କଲା 'କାବୁଲିବାଲା'—ଗଳ୍ପ···ପଥ ଗୃହୀଳ ସତ, କିନ୍ତୁ ଚଳ-ପଥ ହେଲା ନିର୍ଦ୍ଧାରିତ, ଆଉ ଗଳ୍ପଟି ମନର ପର୍ଦ୍ଦାରେ ରୂପାୟିତ ହେଲା ଏହିପରି—

ସୁଦୂର କାବୁଲ···ଆଫଗାନିସ୍ଥାନ···ଅଜଣାର ଦେଶ···ଭାଗ୍ୟାନ୍ୱେଷୀ ଗୋଟିଏ କାବୁଲିବାଲା ଦାରିଦ୍ର୍ୟର କଷାଘାତରେ ଅସହଣି ହୋଇ ଅନ୍ୟାନ୍ୟଙ୍କ ପରି ସ୍ୱପ୍ନର ଦେଶ ଭାରତକୁ ବାହାରି ଆସେ··· ବାସ୍ତବର କେନ୍ଦ୍ର, କଲିକତାରେ ଆସ୍ତାନା ଗାଡ଼େ··· ।···ପେସ୍ତା

କସ୍‌ମିସ୍‌ ଆଖିରେଟେ ଆଖି ଫେର କରି ବୁଲେ ।···ହଠାତ୍ ଗୋଟିଏ ବଡ଼ ଘରର କୁନି ଝିଅଟିକୁ ଦେଖେ ।···ତାର ସମବୟସୀ ଝିଅଟିର କଥା ମନେ ପଡେ ।···ପିତୃ ହୃଦୟ ଆଲୋଡିତ ହୁଏ, ପିତାର ମାୟା ମମତା ଏହି 'ଖୋକୀ' ଠାରେ ଅଜାଡି ଦିଏ ।···ଘଟଣାଚକ୍ରରେ କାବୁଲିବାଲା ଗୋଟିଏ ହତ୍ୟା ଅପରାଧରେ ଜଡ଼ିତ ହୁଏ···ବିଚାରରେ ଦଶବର୍ଷ ଜେଲ ଖଟେ ।···କିନ୍ତୁ ଖୁକୀକୁ ଭୁଲି ପାରେନି ।··· ମୁକ୍ତିଲାଭ ପରେ ସେ ସବୁରି ଆଗେ ତା'ର 'ଖୋକୀ'କୁ ଦେଖିବାକୁ ଧାଇଁ ଆସେ ।···ଖୁକୀ ସେତେବେଳକୁ ବାହା ବୟସୀ ଭୁଆସୁଣୀ —ସେହିଦିନ ପୁଣି ତାର ବାହାଘର···କାବୁଲିବାଲାର ଧାରଣା, ତା'ର 'ଖୋକୀ' ସେହି ଦଶବର୍ଷ ତଳର ଖୁକୀ ରହିଛି । ଦେଖା ସାକ୍ଷାତ୍ ହୁଏ, କିନ୍ତୁ କେହି କାହାରିକୁ ଚିହ୍ନି ପାରନ୍ତି ନାହିଁ । ଏଇଠାରେହିଁ ଟ୍ରାଜେଡ଼ି (ବିଷାଦ କାଳିମା) !!

ଠାକୁରଙ୍କ ଗଳ୍ପର କାବୁଲିବାଲା, ଆଉ ମୋ'ର ଆଖିର ଦେଖା ଚଣାବାଲା ମଧ୍ୟରେ କି ପାର୍ଥକ୍ୟ, ସେଇ ଚିନ୍ତା ତତ୍‌କ୍ଷଣାତ୍ ଆଲୋଚନା କରିବାକୁ ମୋ'ର କଳ୍ପନାପ୍ରବଣ ମନ ହେଲି ଉଠୁଛି —କିନ୍ତୁ ବିଶ୍ଲେଷଣଧର୍ମୀ ବିଚାର କଲି ନିବୃତ୍ତ—ଯେଣୁ ପୃଥିବୀ-ପ୍ରଦକ୍ଷିଣଶୀଳ କୃତ୍ରିମ ଉପଗ୍ରହର ବ୍ଲିକ୍ ବ୍ଲିକ୍ ଶବ୍ଦ ମୋତେ କଲି ସଚେତ ।—ପରିସଂଖ୍ୟାନ (ଷ୍ଟାଟିସ୍‌ ଟିକ୍‌ସ୍‌) ଯୁଗ—ଏ ଯୁଗରେ ବିନା ତଥ୍ୟରେ କୌଣସି ବିଷୟର ଆଲୋଚନା ଅସାର୍ଥକ । ଚଣାବାଲାର ସ୍ୱରୂପ ଉଦ୍‌ଘାଟନ ପୂର୍ବରୁ, ଚଣାବାଲାର ସଂପୂର୍ଣ୍ଣ ଇତିହାସ ପ୍ରୟୋଜନ । ପ୍ରଥମେ ଇତିହାସ, ତା'ପର ଐତିହାସିକ ନାଟକ । ଜୀବନ ଦର୍ଶନର ଏହାହିଁ ତାତ୍ତ୍ୱିକବିଧି । ସୁତରାଂ ତୁଳନାତ୍ମକ

ଆଲୋଚନାକୁ ଭବିଷ୍ୟତ ହସ୍ତରେ ନ୍ୟସ୍ତକଲି, ଦ୍ରୁତ ପଦକ୍ଷେପରେ ଗନ୍ତବ୍ୟ ପଥ ଅତିବାହିତ କରିବାକୁ ଲାଗିଲି ।

ଅବଶେଷରେ କଲେଜଗମ୍ବୁଜର ବା ଗୋଲଦୀଘିର ପୂର୍ବପଟ ଦେଇ ପଶି, ଯେତେବେଳେ ସୁଇମିଂକ୍ଲବର କାନ୍ଥଘଡ଼ିକୁ ଚକାଇ ଦିଏ, ସେତେବେଳେ ଘଣ୍ଟାକଣ୍ଟା ପାଞ୍ଚ ଓ ଛଅ ଅଙ୍କର ମଧ୍ୟବର୍ତ୍ତୀ, ଆଉ ବଡ଼ କଣ୍ଟା ସାତ ଅଙ୍କକୁ ଅଗ୍ରସର ମାନ ।···ମୋ'ର ଉଦ୍‌ଘାଟନ ବାର ଅଙ୍କ ବର୍ତ୍ତୀ ଦୁଇ କଣ୍ଟାର କୋଳାକୋଳି କଳ୍ପନାକୁ ବଳି ପଡ଼ିଲି ।···ଏହା ଯେ ପୂର୍ବାହ୍ଣ, ଅପରାହ୍ଣର ସନ୍ଧିକ୍ଷଣ, ନ ଯଯୌ ନ ତସ୍ଥୌ ଅବସ୍ଥା, ଏହା କହିବା ବାହୁଲ୍ୟ ମାତ୍ର ।···ଯାହା ହେଉ, ସେହି ପରିସ୍ଥିତି ଅତିକ୍ରମ କରି, ଉକ୍ତସ୍ଥାନରେ ଉପସ୍ଥିତ ହେଲି···କିନ୍ତୁ ଅପ୍ରତିଭ ନୟନରେ ଚାହିଁ ଦେଖେଁତ—ବେଦୀ ଶୂନ୍ୟ—ଦେବୀ-ପ୍ରତିମା ନାହିଁ, ବେଦୀଉପରେ ଦୀପଟିଏ ଧୁକୁ ଧୁକୁ ହୋଇ ଜଳୁଛି !···ତେବେ... ଏ' କ'ଣ ଅଷ୍ଟମୀରେ ପ୍ରତିମା ବିସର୍ଜନ ??

ବିସ୍ମୟ କଟିଗଲା, ନିକଟେଇଲି, ନିକଟକୁ ଯାଇ ଦେଖେଁ, ଚଣା-ବାଲାର ବସିବା ସ୍ଥାନରେ ବସିଛି ଚଣାବାବାଲାର ମୋଟିଆ । ସାମ୍ନାରେ ପସରା ମେଲେଇଛି—ପଣ୍ୟ କିଛି ନୁହେଁ, କେବଳ ଅଛଡ଼ା ଚିନା-ବାଦାମର ଠୁଙ୍ଗାଟିଏ । ଇଟା ହୋଇଛି ତା'ର ଆସନ, ଲଇଟ୍ ହୋଇଛି ଦୁଇପଇସିଆ ଲିକ୍ ଲିକ୍ ମହମବତୀ । ···ସେହି ବତୀର କ୍ଷୀଣ ଆଲୋକ-ଶିଖା ଗନ୍ଧବହର ଖର ନିଃଶ୍ୱାସରେ କ୍ଷିପ୍ତ ।···ଗରାକ ନାହିଁ, ବିକାଳୀର ମଧ୍ୟ ଗରଜ ନାହିଁ···କାରଣ ସେ ଜାଣେ, ତା'ର ପସରାର ମୂଲ୍ୟନାହିଁ । ···ଏ'ପରି ଗୋଟାଏ 'ସୋ', ବା ପ୍ରଦର୍ଶନୀର ଉଦ୍ଦେଶ୍ୟ

କ'ଣ ?··· ଓ, ସଂସ୍କାର!—ବଂଶ ବୁଡ଼ି ନାହିଁ, ବଂଶରେ ବତୀ ଦେବାର ଲୋକ ଅଛନ୍ତି, କିନ୍ତୁ ଅଂଶୀ ଚଣାବାଲାର ସେହି ଅଭାବ ପୂରଣ କରିବାକୁ ମୋଟିଆ ଆଜି ବଂଶଧରର ଭୂମିକା ଗ୍ରହଣ କରିଛନ୍ତି ! କୁଳ ଉଜ୍ଜ୍ୱଳ କରି ରଖିଛ !!

ଏ'ଭଳି ଅବଧାରଣାର କାରଣ ମୋ'ର ସଂସ୍କାରବୋଧ ହେଉ କି ତା'ର ହେଉ, ମୋତେ ବେଶ୍ ମଜ୍ଜାଟାଏ ମିଳିଗଲା ।···ଗ୍ରାହକ ହେଲି···ସୁଖ ଦୁଃଖ ପଚାରିଲି··· ଅନ୍ତରୀଙ୍ଗତା ଜମିଲା···ଆତ୍ମଗୋପନର ମନ୍ଦିର ଦ୍ୱାର ସେ ଖୋଲିଦେଲା, ତା'ର ଆଡୁ ଆରମ୍ଭ ହେଲା ଚଣାବାଲାର ପ୍ରସଙ୍ଗ ।

ଦୀର୍ଘ ପନ୍ଦର ବର୍ଷ ହେଲା ସେ ଚଣାବାଲାର ମୋଟିଆଗିରି କରି ଆସୁଛି, ଏକରକମ ଅନ୍ତରୀଙ୍ଗ ପାଲଟି ଯାଇଛି । ମୁଁ ଏହି ଅନ୍ତରୀଙ୍ଗତାର ସୁଯୋଗ ଗ୍ରହଣ କରି, ଅନ୍ତରୀଙ୍ଗ ଭାବରେ ପ୍ରଶ୍ନ କଲି—'ଚଣାବାଲା ଆସିନାହିଁ, ଆଉ ତୁମେ ଏମିତି ଗଣ୍ଡେ ଚିନାବାଦାମ ଥୋଇ ବସିଛ—କାରଣ କ'ଣ ?' ସେ ଅକାରଣ କାଳ ହରଣ ନ କରି ଉତ୍ତର ଦେଲା—'ଚଣାବାଲା ଦେଶକୁ ଯାଇଛି'—ମୁଁ ଦେଶ—କାଳ—ପାତ୍ର ଭୁଲି ଯାଇ ଶ୍ୱାସ ରୁଦ୍ଧ କଣ୍ଠରେ କହିଲି—'**ଦେଶ**' !'... ମୋଟିଆ ମୁରୁକି ହସ ହସି କହିଲା—'ଉମର କଟିଗଲା ବିଦେଶରେ, ଦେଶକୁ ମନେ କରିବନି ବାବୁ'ଜି ?' ମୁଁ ନିଃଶ୍ୱାସ ପକାଇ, ଆତ୍ମସଂଯମ ପୂର୍ବକ କହିଲି—'ହଁ, ଠିକ୍, ଠିକ୍...ଆଉ···' ।—'ମୁଁ ଏମିତି ବସିଛି କାହିଁକି ?'...ପ୍ରଶ୍ନଟି ଏହିପରି ଛଡ଼ାଇ ନେଇ ସେ କହିବାରୁ, ମୁଁ ବିବ୍ରତ ବୋଧକଲେ ମଧ୍ୟ, ସାଗ୍ରହେ

କହିଲି—'ହିଁ···ହିଁ'। ସେ ହାତ ଠାରି ମୋ'ତେ ଆହୁରି ପାଖକୁ ଲଗି ବସିବାକୁ ଡାକିଲା—ମୁଁ ସେଇଆ କରନ୍ତେ, ସେ ମୋ' କାନେ କାନେ କହିବାକୁ ଲଗିଲା—'ବାବୁଜି !...କ'ଣ କହିବି ? ମୋର ମୁନିବର ଦୁଇଟି ଅସଲ ଟଙ୍କା ହରଣଚୂଲ ହୋଇ ଯାଇଚି— ତା'ର ବସିବା ଆସନ, ଆଉ ଲାଇଟ୍···ମୁନିବ ଯେମିତି ଦେଖିଥିଲି ଲୋକ, ଆଉ ଆଜି ଯେମିତି ଘରମୁହାଁ ହୋଇ ଧାଇଁଲା, ସେଥିରେ କେଉଁଠି ଯେ ପକାଇଲା ସେଇ ଦୁଇଟି ଟଙ୍କା...ଘରେ ନାହିଁ... ରାସ୍ତାରେ ପକାଇଥିବ···ଉଁ ହୁଁ···ମୋ'ର ମନ କହୁଚି,···ଏଇଠି ଥିଲା, ନଷ୍ଟେ କେହି···' ମୁଁ ତା'ର କହଣି ମଧ୍ୟରେ ପୂର୍ବ ଦିନର ଅନ୍ୟ ଚଣା-ବାଲାଟିର ସନ୍ଧାନରେ ତା'ର ବସିଲା ସ୍ଥାନ ଆଡ଼କୁ ବାର ବାରଅାଖି ଫେରାଉଥାଏ।···ସେ ବାରିଲା, ତା'ର ସନ୍ଦେହ ଦୃଢୀଭୂତ ହେଲା, ହେଲା ନ କରି ସେ ମୋତେ ପଚାରିଲା—'ସେଇଠି ଯଉଁ ବାଦାମ-ବାଲା ବସେ, ତା'କୁ କାଲି ସେଇଠି ଦେଖିଥିଲେ କି ?'··· ମୁଁ କାଲିକାର ବୃତ୍ତାନ୍ତ ଆଦ୍ୟୋପାନ୍ତ କହିବାରୁ ମୋଟିଆ ମାରେ କି ମରେ, ଏହିପରି ଭାବ ଦେଖାଇ, ଗାଳି ଗୁଲଜର ଅନ୍ତ ରଖିଲାନି, ତା'ପରି ଘୁଁ କୁ ଘୁଁ ଚାହିଁ କହିଲା—'ହୁଁ, କେତେ ଦିନ ଲୁଚିବ ସଇତାନ୍ ...ବାବୁଜି ! ମୋ'ରି ଭାଇଲି···ଏଇ ଆସନ ଓ ଲାଇଟ୍‌ର କାହିଁଆ କଥା ସେ ଦିନେ ମୋ'ଠୁଁ ଶୁଣିଥିଲା...ଭାବଦୋସ୍ତିରେ କହୁ ଏବେ ବୁଝୁଚି...ହାରାମି କେମିତି ହାତ ସଫେଇ କରିବ, ସେଇ ଫିକରରେ ଥିଲା...ବଦ୍‌ମାସ...।' ତା'କୁ ଅସମ୍ଭାଳ ହୋଇ ଠିଆ ହେବାର ଦେଖି ମୁଁ କହିଲି—'ଦେଖ, ଯଦି ଦେଖାହୁଏ ଆଉ ସେ ନ ମାନେ, ତେବେ ?—ସେ ତୁରନ୍ତ ଜବାବ ଦେଇ କହିଲା—'ପଞ୍ଝୁ ଆଡ଼ ବସେଇବି'। ମୁଁ କହିଲି—'ପଞ୍ଝୁ ଆଗରେ ଯଦି ହଲପ ଧରି କହେ, ତୁମ ଜିମ୍ମା କରି ଦେଇଚି, ତା'ହେଲେ ?'...

ତା' ମୁହଁରୁ ରକ୍ତ ଖସି ପଡ଼ିଲା, ଆଉ ସେ ହତାଶ ଭାବରେ କହିଲା—'ତା' ସେ କହିବ, ଆଉ ଆପଣଙ୍କୁ ବି ଗାଳି ମାରିବ'—ଏତକ କହିବା ସଙ୍ଗେ ସଙ୍ଗେ ପୁଣି ସଂଗ୍ରାମରେ ଲାଗି ପଡ଼ି, ସେହି ଅନ୍ୟ ଚଣାବାଲାର ଉଦ୍ଦେଶ୍ୟରେ, ତା'ର ବସିବା ସ୍ଥାନକୁ ତର୍ଜନୀ ଦେଖାଇ ଏହିପରି ଗର୍ଜିବାକୁ ଲାଗିଲା—'ଅରେ ଟୋକା !··· ବାର ଗୁଣିଆର ମନୁବ୍ ଚଣା-ଗୁଡ଼ିଲ ଗ୍ରେବା କଥାକୁ ଥରେ ଖିଆଲକର··· ଯଦି ରକ୍ତ ବାନ୍ତି ନ କର ମରିବୁ !··· ବାବୁଜୀ, ଗଲ୍, ପଣ୍ଡ ଲଗାଏଁ,—ମାଲ୍ କବୁଲ, ନାହିଁତ ଜାନ୍ କବୁଲ୍ !'··· ତା'ପର ଆଖିଓଦା କରି ଗଦଗଦ କଣ୍ଠରେ କହିବାକୁ ଲାଗିଲା—'ଲକ୍ଷ୍ମୀ ଦୋକାନର ଅସଲ ସମ୍ବଲ ସେହି ଅସନ ଓ ଲାଇଟି ବାବୁଜୀ ! ଏ' ଦୁଇଟି ଗ୍ଳଡ଼ି ଗଲେ ଦୋକାନୀକୁ ଲକ୍ଷ୍ମୀ ଛାଡ଼ି ଯିବ ! ମୁଁ ତ ମୋଟିଆ ଲୋକ, ମୋତେ ମୋଟେ ମିଳିବ···କିନ୍ତୁ ଏତେଦିନ ଯା'ର ଦାନା ଖାଇ ଆସିଲି, ତା'ର ବେହାଲ କେମିତି ଦେଖିବି, ବାବୁଜୀ ? ଆପଣ ଜାଣନ୍ତିନି, ବାବୁଜୀ, ବିଚରା ଘରଦ୍ୱାରକୁ ଅନେଇନି । ଏଇ ଦୋକାନକୁ ଅନେଇ···'ଆଉ କହିଲା ନାହିଁ, କି ଅନେଇଲା ନାହିଁ···ଆଖି ପିଚୁଡ଼ାକେ ଫାଟକ ପାର ।

ମୋ'ର ଆଶାରେ ନୈରାଶ୍ୟର ଛାୟା...! ···ଠିକ୍ ଯେମିତି ମାଛ ଥୋପ ଗିଳୁ ଗିଳୁ ହଠାତ୍ ଛାଡ଼ିଯାଏ, ବନ୍‌ସୀର ଫେରେଣ୍ଡା ନାଚୁ ନାଚୁ ରହିଯାଏ,···ମୁଁ ସେହିପରି ଭାବ ଅନୁଭବ କରି ଥକା ମାରି ଠିଆ !—ଏତିକିବେଳେ ଫାଟକ ଦ୍ୱାର ଆରପଟରୁ ମୋଟିଆ ଲୋକଟି ଅସି ଭାରି ଦୈନ୍ୟ ହୋଇ କହିଲା 'ବାବୁଜି ! ଆପଣତ ରୋଜ୍‌ନା ଏଠାକୁ ବୁଲି ଆସନ୍ତି, ଯଦି ମେହେରବାନି କରି ଏହିପରି ରୋଜ ଆସନ୍ତି, ବାବୁଜୀ, ତେବେ ଭାରି ଉପକାର ହୁଅନ୍ତା···।' ମୁଁ

ଚଣାବାଲାର ଆକସ୍ମିକ ପ୍ରତ୍ୟାବର୍ତ୍ତନକୁ ଦୈବାନୁଗ୍ରହ ମଣିଥିଲି ; ସୁତରାଂ ତା'ର ଏପରି ଅନୁରୋଧ ଯେ ମୋ' ପକ୍ଷେ ଗୁପ୍ତ ଗନ୍ତାଘରର ଗୁରିକାଠି ହେବ, ଏଥିରେ ଆଉ ଆଶ୍ଚର୍ଯ୍ୟ କ'ଣ ? ଅତଏବ ଅନତି-ବିଳମ୍ବରେ ମନ-ଗମ୍ଭୀରର ରୁଦ୍ଧଦ୍ୱାର ଫେଇ, ଅବାଧ ଆବେଗରେ କହିଲି —'ମୁଁ ନିଶ୍ଚୟ ଆସିବି, ତୁମକୁ ସବୁ ମତେ ସାହାଯ୍ୟ କରିବି ।'···'ଶୁକ୍ରିୟା...' ଏତକ କହି, ସଲାମ୍ କରି ସେ ଗୁଲିଗଲା । ହେଲେ ମୁଁ ମନେ ମନେ ତାକୁଇ ଶୁକ୍ରିୟା ଜଣାଇଲି ।...କାରଣ— ଆଶ୍ୱାସନା ମୁଁ ତାକୁ ଦେଲିନାହିଁ, ବରଂ ସେ ଓଲଟା ଦେଇଗଲା ମୋତେ.. ।

ଯାହାହେଉ ଆଶ୍ୱସ୍ତ ମନରେ ଘରକୁ ଲେଉଟିଲି । ମନ ହାଲୁକା ଥାଏ··· ନଭେଲଟିଏ ଅନେକଦିନ ହେଲା ଲାଇବ୍ରେରୀରୁ ଆଣି ଟେବୁଲ ଉପରେ ଥୋଇଥିଲି···କାଲି ଫେରାଇବା ତାରିଖ... ପଢି ନ ଥିଲି···ପଢି ବସିଲି ··'ଜୀବନ ସନ୍ଧ୍ୟା'···ପ୍ରଥମ ପୃଷ୍ଠା ଖୋଲିଲି ମାତ୍ରେ, ପ୍ରଥମ ଧାଡି ଉପରେ ଦୃଷ୍ଟି ପଡିଲା—'ମୁଁ ଜଣେ ଖୁନୀ ଆସାମୀ ।' ···ମନଟା ଗୁହୁଁକିନା ହେଲା···ବହି ବନ୍ଦ କରି ଦେଲି ପଠ୍‌କରି ··· ଗୃହିଣୀ ବି ଚଟ୍‌କରି ଖାଇବାର ଡାକଡ୍ ଦେଲେ ···କାରଣ ମୁଁ ସହଳ ସହଳ ରାତି ଭୋଜନ ସାରିଥାଏଁ ।

ଭୋଜନ ସରିଲା । ପାନଟିଏ ଖାଇ ବିଛଣା ଧରିଲି । ଧରିବା ମାତ୍ରେ ନିଦ୍ରା । ସେହି ନିଦ୍ରା ଘୋରରେ କେତେବେଳେ ଗାଁ ଗାଁ କରି ଉଠିଚି,

ଆଉ ଘରଣୀ ମୋତେ ହାବୁକା ମାରି ଚାଆଁଇ ଦେଉଛନ୍ତି । ନିଦବାଉଳା କଣ୍ଠରେ 'ଏଁ' କରି ଉଠି, ବଲ ବଲ ହୋଇ ଘରଣୀ ମୁହଁକୁ ଚାହିଁଲି । 'ତୁମେ ଏମିତ ଅଣନିଶ୍ୱାସୀ ହୋଇ ଗଁ, ଗଁ କରି ଉଠିଲ କାହିଁକି, କୁହତ ? ...ତୁମେ ଏପରି ଘଟିବାର ଯେଉଁ କାରଣ କହୁଥାଅ, ଛାତି ଉପରେ ହାତ ରଖିବାର, କି ଅନ୍ୟ କୌଣସି ଗୃପା ଥିବାର, ସେପରି କିଛି ଦେଖିଲିନି ତ ? ଉଠ ଦେଖି...।' ମୁଁ ଉଠିବାକୁ ବାଧ୍ୟ ହେଲି । ପଲଙ୍କ ତ୍ୟାଗକଲି । ସେ ବିଛଣାର ଗୃଦର ଓଟାରି ଦେଇ ଗଙ୍ଗାପାଣି ଛିଞ୍ଚି, ଅନ୍ୟ ସଫା ଗୃଦରଟିଏ ପାରିଦେଲେ ଓ ମୋତେ ଶୋଇବାକୁ କହିଲେ--ଏକ ପ୍ରକାର ଛୋଟ ପିଲାକୁ ସାନ୍ତ୍ୱନା କରି ଶୁଆଇଲା ଭଳି କଲେ କହିଲେ ଚଲେ । ଅଧିକନ୍ତୁ ମୋ'ର ଲୁଗା-ପଟା ବଦଳାଇ, ସେହି ଗଭୀର ଜନଜନିଆ ଶୀତ ରାତିରେ, ଦେହ ମୁଣ୍ଡରେ ବି ଗଙ୍ଗାପାଣି ଛିଞ୍ଚି ଦେବାକୁ ଭୁଲି ନ ଥିଲେ, ଏହା କହିବା ବାହୁଲ୍ୟ ମାତ୍ର ।

ହଁ, ତାଙ୍କୁଅ ତଳେ ମୋ'ର ନିଜର ଗୃବି ନେନ୍ଥାଟା ରଖିବା ଗୋଟାଏ ଅଭ୍ୟାସ । ସକାଳେ ଉଠି, ଗୃବି ନେବାକୁ ଯାଇ ଦେଖେଁ—ମା' ଶୀତଳାଙ୍କ ବାସି-ମନ୍ଦାରଟିଏ ସେଥି ସଙ୍ଗେ ଲାଗି ହୋଇ ରହିଛି । ସେତିକିରେ ବି ରହିଅଛି ମିଳିଲାନି, ଶୀତଳା-ପୂଜାରୀଙ୍କ ଝଡ଼ା-ଫୁଙ୍କାର ଯୋଗମାନ ମଧ୍ୟ ହେବାକୁ ବାଧ୍ୟ ହେଲି ସେଦିନ । ମୁଁ ମନେ ମନେ ଗୁମୁରୁଥିଲି ଏଭଳି ଅନ୍ଧବିଶ୍ୱାସରଦାଉରେ, ଶେଷୁ ଚରମ ପରିସ୍ଥିତିକୁ ସହି ନ ପାରି ପେଟ ଚିରି କହି ପକାଇଲି—'ତୁମେ କ'ଣ କୁହତ ମୋତେ କ'ଣ ଛୁଆ ପିଲା କରି ପାଇଲ ?' ମୋ'ର ଘରଣୀ ମୁହଁ ଛାଟି ଦେଇ କହିଲେ—'ଛୁଆଠୁ ଅଧିକ...ଛୁଆ ପିଲାଙ୍କୁତ ସଇତାନ ମାଡ଼ିବସେ ନାହିଁ, ଛୁଆ-ପିଲାଙ୍କ ଠେଇଁ ଡ଼ାହାଣୀର ନଜର ପଡ଼େ ।'

ମୁଁ ଆଉ ବେଶୀ କଷ୍ଟ ଘାଣ୍ଟିଲି ନାହିଁ—ଘଣ୍ଟାଘଣ୍ଟି କଲେ ତାପ ମାତ୍ରା ଯଦି ବଢିଯାଏ...

ଗାଢ଼, ଅସଲ କଥା, ସେଦିନ ଗୋଟାଏ ଖୁନୀ-ସଇତାନ ଯେମିତ ମୋତେ ମାଡ଼ ବସିଥିଲା—କମ୍ବୁତକ୍ରମାକାର ମୂର୍ତ୍ତି, ଆଖି 'ଦି'ଟା ଓଦାଳ ପଡ଼ଚି, ଗଜଦାନ୍ତ ଭଳି ଦୁଇଟା ଦାନ୍ତ ଓଠର ଦୁଇ କୋଣରୁ ବାହାରି ଆସିଚି, ନିପଣ୍ଡ କଳା, ଛୁରୀଟାଏ ହାତରେ ଧରିଚି, ଗାଢ଼ଙ୍କୁ ମୋ'ର ଲକ୍ଷ୍ୟ କରି-ଭୂକ୍ଷେପ କି ନ ଭୂକ୍ଷେପ ଏହିପରି ଭାବ ; ସେହି ବିକଟାଳ ମୂର୍ତ୍ତି ବିକଟାଳିଆ କଣ୍ଠରେ ଚିହି କହୁଚି—'କବୁଲ୍ କର—ଅସନ ଓ ଲାଇଟ ମୁଁ ମୋଟିଆକୁ ଦେଇଦେଇଚି ଆଉ ତୁ ଗାଭା ହୋଇ ତା' ଦେଖିବୁ !'... ଯେତେ ମୁଁ ଅନୁଧ୍ୟାନ କରିବାକୁ ଲାଗିଲି ସ୍ୱପ୍ନର ଘଟଣାଟିକୁ ଅମୂଳଚୂଳ, ସେତେ 'ଏ' ସବୁର ଅସ୍ପଷ୍ଟ ଦୃଶ୍ୟ ସ୍ପଷ୍ଟ ହୋଇ ଭାସି ଉଠିଲା ମୋ ଆଖି ସାମ୍ନାରେ ।

ସ୍ୱପ୍ନ-ତତ୍ତ୍ୱଜ୍ଞମାନେ କହୁଥା'ନ୍ତି—ଏହା ଅବଚେତନ ମନର କ୍ରିୟା କଳାପ । ଶୟନାବସ୍ଥାରେ ଚେତନ ମନ ଯେତେବେଳେ ଶିଥିଳ ହୋଇପଡ଼େ, ସେତେବେଳେ ଅବଚେତନ ମନର ପ୍ରାଦୁର୍ଭାବ ଘଟେ । ଏହି ସୂତ୍ର ଧରି ମୁଁ ଏହିପରି ଆଲୋଚନା କରିବାକୁ ଲାଗିଲି—ମୋଟିଆ ସଙ୍ଗେ ଅସନ ଓ ଲାଇଟ୍ ନେଇକି ଯେଉଁ ନାନା ପ୍ରସଙ୍ଗ ଘଟି ଥିଲା, ସେଗୁଡ଼ିକ ମୋ' ମନ ଭିତରେ ବସା ବାନ୍ଧି ରହିଥିଲା, ସୁତରାଂ ଶୋଇଲା ପରେ ସେଇଗୁଡ଼ିକ ଏହି ଦୁଃସ୍ୱପ୍ନର ମୌଳିକ ଉପାଦାନ ହେବ, ଏହା ଆଶ୍ଚର୍ଯ୍ୟ ନୁହେଁ । ଆହୁରିବି ଜୀବନ-ସନ୍ଧ୍ୟା ବାହାର ଖୁନୀ ଅସାମୀ ସ୍ୱପ୍ନର ଅତଥି ହୋଇ

ଆପଣାର ଭେଲ୍କିବାଜି ଦେଖେଇଛ, ଏହା ମଧ୍ୟ ବିଚିତ୍ର ନୁହେଁ । ···ସୁତରାଂ ଗୁହ୍ଣ ଉପରେ ହାତ ରଖିବା, ବା ଅନ୍ୟ କୌଣସି ଗୁପ୍ତ ରହିବା ଫଳରେ ଦମ୍ ଅଟକି ଯିବା (ମୁଁ ତାହା ପ୍ରାୟ ଅନୁଭବ କରିଛି) ଶରୀର-ବିଜ୍ଞାନୀଙ୍କ ନିର୍ଦ୍ଧାରିତ କାରଣ ହେଲେ ସୁଦ୍ଧା, ଅନ୍ୟତମ କାରଣ ହିସାବରେ ଦୁଃସ୍ୱପ୍ନ ଉପେକ୍ଷଣୀୟ ନୁହେଁ ।

ସେଦିନ ସାତ୍ତ୍ୱିକ ଆହାର ଅବଶ୍ୟ ହେଲା । ...ସାତ୍ତ୍ୱିକ ପରି-ବେଶ ଭିତରେ ରୌଦ୍ର-ଖରା ଲଇଁ ତଳ ଧରିଲା । ମୋର ତାତ୍ତ୍ୱିକ-ମନ ପ୍ରଖର ହୋଇ ଉଠିଲା, ମୁଁ ବୁଲି ବାହାରିଲି । ଗୃହିଣୀ ବାଧା ଦେଲେନାହିଁ ବରଂ ଯଥାରୀତି ପାଥେୟସଙ୍ଗେ ଅଧିକା କିଛି ଯୋଗାଇ ଦେଲେ । ଅଧିକନ୍ତୁ ଏମିତି ଏକ ଅଭୂତପୂର୍ବ ସ୍ୱର ଓ ଭଙ୍ଗିରେ 'ଉଚ୍ଛୁର କରିବନି' ଏହି କଥା ପଦକ କହିଲେ ଯେ, ମୁଁ ଡାଡେଙ୍କା ହୋଇ ତାଙ୍କ ମୁହଁକୁ ଫେରି ନ ଅନାଇ ରହି ପାରିଲି ନାହିଁ । ଗୋଷ୍ଠବିହାରୀଙ୍କୁ ଗୋଷ୍ଠକୁ ପଠାଇବା ବେଳର ଯଶୋମତୀଙ୍କ ବାତ୍ସଲ୍ୟ-ଭାବ ଯେମିତି ଫୁଟି ଉଠିଚି ସେହି ବଦନମଣ୍ଡଳରେ, ଏହି-ପରି ମନେ ଲକ୍ଷ୍ୟ କରିବାକୁ ଲାଗିଲି । —ଅପ୍ରତିଭ ହେଲି ସତ, କିନ୍ତୁ ପରକ୍ଷଣରେ ସପ୍ରତିଭ ମନ ଯେମିତି ବିଚାର କରିବାକୁ ଲାଗିଲି । ···ବାସ୍ତବ-ଜୀବନରେ ଦେଖାଯାଏ—କେତେକେବାପା, କେତେକ-ମା ମାନେ ଛୁଆ ଛୁଆ ନାତି ନାତୁଣୀମାନଙ୍କ ଠେଇଁ ଅମାପ ସ୍ନେହ, ମମତା ଅଜାଡ଼ି ଦେଇ ଥା'ନ୍ତି ।···ଶିଶୁର ଜନକ ଜନନୀ, ନିଜର ସନ୍ତାନ ସନ୍ତତି ହେଲେ ବି ବେଳେବେଳେ ଉପେକ୍ଷିତ ହୋଇଥା'ନ୍ତି ।... ଶିଶୁ-ସ୍ନେହ ଜୀବାତ୍ମାର ସହଜାତ ।··· ଏହା ଜୀବାତ୍ମାର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ବୃଦ୍ଧି ପାଇବାର ଦେଖା ଯାଇ ଥାଏ । ମୋ' କ୍ଷେତ୍ରରେ, ଘରେ ଆମେ ଦୁଇପ୍ରାଣୀ କୁଟୁମ୍ବ—ସ୍ୱାମୀ ଓ ସ୍ତ୍ରୀ । ସ୍ୱାମୀ କଳି-ଷଠାପାର ହୋଇଥିବା ସ୍ଥଳେ, ସ୍ତ୍ରୀ ସେଥିର ପାଖାପାଖି । ଗୃହ ଶୂନ୍ୟ ମନ୍ଦିର—ଅର୍ଥାତ୍ ଶିଶୁ ରୂପକ ବିଗ୍ରହ-ଶୂନ୍ୟ ।

ସେହି ଅଭାବ ଗୃହିଣୀ ଯେ ଗୃହ-କର୍ତ୍ତାଠାରେ ମେଣ୍ଟାଇବ, ଏଥିରେ ଆଶ୍ଚର୍ଯ୍ୟ କ'ଣ ? ଅନ୍ୟପକ୍ଷେ ଗୃହ-କର୍ତ୍ତା ଯେ ସେହି ଶିଶୁ ସ୍ନେହ ଗୃହ-କର୍ତ୍ତ୍ରୀଠାରେ ନ ମେଣ୍ଟାଉଛି, କିଏ କହିବ ।...ରବୀନ୍ଦ୍ରନାଥ ଅଶୀତି ବର୍ଷବୟସରେ ମଧ୍ୟ ଥିଲେ ଅଠବର୍ଷର ଶିଶୁ । ବାପୁଜି ଶିଶୁର ହାତ ନ ଧରିଲେ, ବାଟ ଚାଲି ପାରୁ ନ ଥିଲେ । ଚାଚା ନେହେରୁ ତ ଶିଶୁ ପ୍ରୀତିରେ ଉନ୍ମାଦ । ସୁତରାଂ ଏ ଉନ୍ମାଦନା ଯେ ସାର୍ବଜନୀନ, ସନ୍ଦେହ ନାହିଁ । ସେ ଦେଶର (ପାଶ୍ଚାତ୍ୟର) ଜଣେ ବିଶିଷ୍ଟ ତତ୍ତ୍ୱଜ୍ଞଙ୍କ ଅଭିମତ—ଅତି ସାଧ୍ୱୀ-ସ୍ତ୍ରୀ ମଧ୍ୟ ଦୀର୍ଘକାଳ ବ୍ୟାପି ନିଷ୍ଠା ସହକାରେ ବୈଧବ୍ୟ ଯାପନ କରିବା ପରେ ସୁଦ୍ଧା ନିଜର ବୟସ୍କ ସନ୍ତାନ ଥାଉଁ ଥାଉଁ, ପରିଣତ ବୟସରେ ଯେ ପତ୍ୟନ୍ତର ଗ୍ରହଣ କରିବାର ଦେଖାଯାଏ, ଏହି ତଥ୍ୟ ମୂଳରେ ରହିଛି ପ୍ରଧାନତଃ ଶିଶୁ-କାମନା । କାରଣ ଯେଉଁ ଶିଶୁ ସନ୍ତାନ ମଧ୍ୟରେ ମୃତ ପତିର ସ୍ମୃତି ନିହିତ ଥିଲା, ବିଧବାର ସେହି ସନ୍ତାନ ଶିଶୁ ହୋଇ ଆଉ ରହିନାହିଁ । ମୋର କଥାକୁ ମୁଁ ହେଜିଲି—ଚଣାବାଲାର ଶିଶୁ-ପ୍ରୀତିହିଁ ମୋ'ର ଶିଶୁମୁଗ୍ଧ ପ୍ରାଣକୁ ଆକୃଷ୍ଟ କରି ନାହିଁ କି ?...

ଏହିପରି କଳ୍ପନା-ବିଳାସ, ବା ସତ୍ୟ-ସନ୍ଧାନ, ଯାହା କୁହ, ସେଇଥିରେ ମଜ୍‌ଗୁଲ ହୋଇ ବେଶ୍ ବାଟ ଚାଲୁଥିଲି...ହଠାତ୍ ଥକାମରି ହୋଇ ଠିଆ ହୋଇଗଲି—'ଚଣାବାଲା' ଶବ୍ଦରୁ, ଚଣାବାଲାର ପ୍ରସଙ୍ଗ ମନକୁ ଘାରିଲା ମାତ୍ରେ ।...ଚଣାବାଲାର ସେହି ଅସନ ଓ ଲାଇଟ୍ ଘେନି ଧସ୍ତାଧସ୍ତି ପରସ୍ପେ ହୋଇ ଯାଇ ନାହିଁ ତ ? ତା'ର ଫଳରେ ମୋଟିଆ ଯଦି ଅପହାରକକୁ ଖୁନ୍ କରିଥାଏ ! ତା' କରିଥିଲେ ମୋର କ'ଣ ? କିନ୍ତୁ ଅପହାରକ ଯଦି ଖୁନୀ ହୋଇଥାଏ, ତେବେ ମୋତେ ସେ ରଖିତ ଦେବକି ?...

ମୁହିଁ ତ ଏକମାତ୍ର ଗଭୀ-ସାକ୍ଷୀ !...କେମିତ ଭୟ ହେଲା !···ଛି, ଛି ଦୁର୍ବଳ ହୃଦୟର ଗୋଟାଏ ଅଳୀକ ସ୍ୱପ୍ନ, ଏ' ତା'ର ପ୍ରଭାବ !··· ମନ ମାନିଲାନି ! 'ପକେଟରେ ମା-ଶୀତଳାଙ୍କ ଫୁଲ ଥିଲା (ଅବଶ୍ୟ ଗୃହିଣୀ ମୋ'ର ରକ୍ଷା-କବଚ ମନାସି, ତାହା ରଖିଦେଇଥିଲେ) ତାହା କୁସଂସ୍କାର, ଅନ୍ଧବିଶ୍ୱାସ, ଆତଙ୍କ, ବା ଦୁର୍ବଳତା, ଯେ କାରଣରୁ ହେଉ, ମଥାରେ ତତ୍‌କ୍ଷଣାତ୍ ଲଗାଇଲି, ଅଭୟ ପାଇଲି, ପୁଣି ପଥ-ଚଲା ଆରମ୍ଭ କରି ଦେଲି ।

ଗୋଲ ଦୀଘିର ପାଖାପାଖି ହେଲି, ପଶ୍ଚିମ-ପଟ ଅର୍ଥାତ୍ ସିନେମାର ବିପରୀତ ଫାଟକ-ଦ୍ୱାର ଦୃଷ୍ଟିଗୋଚର ହେଲା । ହଠାତ୍ ପୁଣି ଚମକି ଉଠିଲି । ଅଜଣା ଭୟ । ଭିତରଟା କମାର ଭାତି ପଡ଼ିଲା ଉଠିଲା ଭଳି ଧଡ଼ପଡ଼ ହେବାକୁ ଲାଗିଲା । ତଥାପି ନିରସ୍ତ ହେଲି ନାହିଁ । ବିବେକର ମୃଦୁଗୁଞ୍ଜନ 'ମାଇଣ୍ଡମ୍ୟାନିପୁଲେସନ' ର କାର୍ଯ୍ୟ କଲା ।···ପୁରୁଷ ମୁଁ, ଏହା ଚେତନା ଆକର୍ଷଣରଜ୍ଜୁର କାମ କଲା । ··· ମୁଁ 'ପୁରୁଷୋତ୍ତମ'ଙ୍କ ରଥ ପରି ଟାଣି ହୋଇ ଆସି, ଗୁଣ୍ଡିଚା ମନ୍ଦିର (ଠିକଣା ସ୍ଥାନ) ର ଅଦୂରବର୍ତ୍ତୀ ହେଲି । ତେଣିକି କ'ଣ ହେଲା କେଜାଣି, ପାଦମେକଂ ନଗଚ୍ଛାମି'-ଭାବ ମୋତେ କଲା ଦାରୁଭୂତ··· ମୁଁ ଠିଆ ହୋଇଗଲି ···ପାର୍କର ରେଲିଂ ବାଡ଼ର ଫାଁକ ବାଟେ ଉଁକି ମାରିଲି— ଠିକ୍ ଯୂପର ଅର୍ଗଳ ଭିତରେ ,ମୁଣ୍ଡ ଗଳାଇଲାଭଳି । କିନ୍ତୁ, ଏ' କ'ଣ ଦେଖୁଛି ? ···ଅଧ୍ୟାତ୍ମି ମାନବ ପକ୍ଷେ ଅଭିବୋଧକ ନୁହେଁ—ଅଭାବିମ ଦୃଶ୍ୟ ! ଆଖିକୁ ବିଶ୍ୱାସ କରି ପାରିଲି ନାହିଁ···ଫାଟକର ନିକଟବର୍ତ୍ତୀ ହେଲି, ନିରୀକ୍ଷି ଦେଖେଁ ତ—ଚଣା-ବାଲାର ଗାଡ଼ୀ ଆସନ ଯଥା ସ୍ଥାନରେ ଯଥା ଭାବରେ ସଜା ହୋଇଛି... ଚଣାବାଲାର ଲାଇଟ୍ ସଞ୍ଜ ନ ହେଉଣୁ ସଞ୍ଜ-ବତୀ ହୋଇ ଜଳୁଛି ...ଆଧାର ଗୁଡ଼ାକ ଚଣାର ବିବିଧ ସମ୍ଭାରରେ ଭର୍ତ୍ତିପୁର୍ ନ ଥିଲେ

ମଧ୍ୟ, ଦୋକାନର ଆଠ ଯଥାସ୍ଥିତ ବଜାୟ ରଖା ହୋଇଛି ।···ଆଉ ମୋଟିଆ ଚଣାବାଲାର ଭୂମିକା ଗ୍ରହଣ କଲେସୁଦ୍ଧା 'ଚଣାବାଲା' ପ୍ରତିଭୂ ସ୍ୱରୂପ ସେହି ଆସନ ପାଖରେ ଉପବିଷ୍ଟ ।...ବିନା-ପାଦୁକାରେ ଯେମିତି ପଟ୍ଟାଭିଷେକ ଅନୁଷ୍ଠାନ ।...ଉତ୍ସବ କାହିଁରେ କ'ଣ ।···ଚଣାର ବାଲ୍ୟ-ଲୀଳା ଲାଗି ଯାଇଛି କହିଲେ ଚଳେ । ···ହୃତ-ସର୍ବସ୍ୱ ମୁନାବର ସର୍ବସ୍ୱ ଉଦ୍ଧାର ହୋଇଛି, ମଉଛବ କରିବନାହିଁ ଏକାନ୍ତ ସେବକ ?···ସେହି ମଉଛବ ଯେ ଏକମାତ୍ର ଶିଶୁଙ୍କୁ ନେଇ ହେବ, ଏଥିରେ ବି ଆଶ୍ଚର୍ଯ୍ୟ କ'ଣ ?···ମୋଟିଆତ ମୁନାବର ନାଡୀର ଖବର ଜାଣେ ।...'ନାଡ଼ୀର ଖବର'—ଏହି କଥା ମନକୁ ମନ କହିଲି ମ ନେ, ନାଡୀର ଖବରାନ୍ୱେଷୀ ମୁଁ ନିଜକୁ ଆଉ ସମ୍ଭାଳି ରଖି ପାରିଲି ନାହିଁ । ଏକାବେଳେ ଦୋକାନ ସାମନାରେ ହାଜର ହୋଇଗଲି ।···ମୋ' ଉପରେ ଦୃଷ୍ଟି ପଡ଼ନ୍ତେ, ମୋଟିଆ ଚିତ୍କାର କରି ଉଠିଲା—'ବାବୁଜୀ !' ଦୀର୍ଘ ହଜା (ଗାଣିତିକ) ର ଭାଗଶେଷ ପରି କେତେକ ପିଲା ସେବେଇଯାଏ ଲୁଣ୍ଠ ହୋଇଥିଲେ ବି, ସେମାନଙ୍କୁ ଘଉଡେଇଦେଇ,(ଅବଶ୍ୟ ଗଣ୍ଡେ ଗଣ୍ଡେ ଦେଇ—ସାତ୍ତ୍ୱିକ ଭାବରେ ନୁହେଁ, ତାମସିକ ଭାବରେ) ଆଉ ଆପଣାର ହାତର ମୋଟା ଗୁଦରଟା ଓଟାରି, ଦୋକାନଟାକୁ ସେଥିରେ ଘୋଡେଇ ପକେଇ, ମୋତେ ଏକ ପ୍ରକାର ପାଞ୍ଚୋଟି ଘେନିଗଲା ଭଳି ହାତଧରି ଘେନିଯାଇ, ନିଜର ଇଟା-ଆସନରେ ବସାଇ ଆଗେ ଥୋଡ଼ା ଚଣା-ଚିନା ବାଦାମ ମୋ ହାତରେ ଧରାଇ ଦେଲା (ଯେମିତି ଜଗନ୍ନାଥଙ୍କ କୈବଲ୍ୟ), ତା'ପର କଥା ଆରମ୍ଭ କଲା ।···ନିଘୋଲା-କଥାବାର୍ତ୍ତା ହେବ ସେ ମୋ' ସାଥିରେ, ତା'ର କାର୍ଯ୍ୟକଳାପରୁ ବେଶ୍ ବୁଝିପାରିଲି ।··· ମୁଁ ବି ସେଇୟା ଖୋଜୁଥିଲି ।···ଜାନଷର ଉଦ୍ଧାର ବିଷୟରେ ଯାହା ସେ ବଖାଣିଲା, ତାହା,—ଇନ୍‌କମ୍ ଟିକସ ବା ସେଲ୍‌ଟିକସ୍

ବ୍ୟ ପାରରେ ଏକ ଦୋକାନୀ ଈର୍ଷାପରାୟଣ ହୋଇ ଯେମିତ ଅନ୍ୟ ଦୋକାନୀକୁ ଧରାଇ ଦିଏ ବେନାମୀ ପକାଇ, ଅନେକଟା ଠିକ୍ ସେହିପରି ! ଏ' ସବୁ ଶୁଣିବାକୁ ମୋ'ର ଆଗ୍ରହ ନ ଥିଲେ ବି, ଆଗ୍ରହ ସହକାରେ ଶୁଣୁଥିଲି ଆଉ ତା'ର ପ୍ରତି କଥାକୁ ସମର୍ଥନ କରୁଥିଲି । ଘନିଷ୍ଠତା ବଢ଼ିବ, ଚଣାବାଲାର ଦେଶ ଓ ଦଶର ଖବର ବି ନା ଓଜର ଆପତ୍ତିରେ ଆଦାୟ କରି ପାରିବି ଏହି ଭରସାରେ । ଭାଗ୍ୟକୁ ଏ' ବାସନା ମୋ'ର ଚରିତାର୍ଥ ହେବାକୁ ବେଳକାଳ ଲାଗିଲା ନାହିଁ, ଯେତେବେଳେ ସେ ଆପେ ଆପେ ମୋତେ ଆପଣାର କରିନେଇ, ଅବାଧେ ମନର ଦ୍ୱାର ଖୋଲିଦେଲା ଏହିପରି—

ବାବୁଜୀ ! ଚଣାବାଲାର ପିଉସୀ ବରଷ ୩।୪ ତଳେ କଲିକତା ଆସିଥିଲା । ଗଙ୍ଗାସାଗର ମେଳାକୁ ଯିବ ବୋଲି । ସେଥର ଭାରି ଭିଡ଼ ! ··· ମୁଁ ସାଥିରେ ଯାଇ, ଭଲରେ ଭଲରେ ବୁଢ଼ୀକୁ ତୀର୍ଥ କରାଇ ଫେରାଇ ଆଣିଥିଲି । ସେହି କଥାକୁ ଏଠା ରହଣି ଭିତରେ ବୁଢ଼ୀ ହଠାତ୍ ଗଙ୍ଗାସ୍ନାହାନକୁ ଡାକି, ମୋ' ହାତରେ ଗଙ୍ଗା-ପାଣି ଟେକିଦେଇ, ଧରମପୁଅ କଲା । ଚଣାବାଲା ଝିଅଟିଏଁ ତା'ର ଜନମକଲା ମା'କୁ ବଳି ସେନେହ । ···ଚଣାବାଲାର ହାଲ୍ ଠିକଣାଣି କରି ମୋତେ କହି, ଚଣାବାଲାକୁ ଯେମିତ ବଡ଼ଭାଇ ଭୁଲେ ଦେଖିବ, ତା'ର ଭଲ ମନ୍ଦକୁ ଲକ୍ଷଣ ପରି ଜଗି ରହିବ,—ଏଇ କଥା କାନ୍ଦ କାନ୍ଦ ହୋଇ, ମୋର ହାତ ଓଠ ଧରି କହି ଯାଇଥିଲା । ମୁଁ କରିବ ନାହିଁ ? ···ଧରମ ମୋର ସାହା ହୋଇଛି—ମୁଁ ଧରମ କାମ ଭୁଲିଇଛି, ବାବୁଜୀ' ତା'ର ଏହି ଆତ୍ମ-ସନ୍ତୋଷର ସୁଯୋଗ ଓ କଥାର ସୂତ୍ର ଧରି ସାମ୍ବାଦିକ ପରି ମୋଟିଆ ଠାରୁ ଯେଉଁ ତଥ୍ୟମାନ ଆଦାୟ କଲି, ସେ ଗୁଡ଼ିକୁ ଆଗ ପଛ ସଜାଡ଼ି ଯୋଡ଼ିବା ଗରମୁହାଁ ହୋଇବାକୁ ଧରିଲି ।

ଘରରୁ ଘରଣୀ କଥା ମନେ ପଡ଼ିଲା । ସହଳ ସହଳ ଫେରିବାକୁ ତାଙ୍କତ୍ ଜଣାଇଥିଲେ । ସଞ୍ଜ ଗଡ଼ି ପହରେ ରାତି ହେଲାଣି । ନିଶା ରାତିର ଭୈରବୀ ଦର୍ଶନ ଅବଶ୍ୟମ୍ଭାବୀ । ଭୟ କ'ଣ ? ଭୈରବ ମୁଁ...ଲମ୍ବ ହୋଇ ଗୋଡ଼ତଳେ ପଡ଼ିଟିବି । ଅଲଜୁକୀ ଲମ୍ବା ରସନା-ଦଂଶନକୁ ସାର କରିବି ।

ଏହିପରି ବେପରୁଆ-ଭାବ ନେଇ ଘରେ ପାଦ ଦେଇ ଦେଖେଁତ—ଭୈରବୀ ପରିବର୍ତ୍ତେ ଆନନ୍ଦମୟୀ ମୂର୍ତ୍ତି ! ··ଘରଣୀ ନାତୁଣୀଟିକୁ କାନ୍ଧରେ ପକାଇ, ଶୁଆଉ, ଶୁଆଉ ଫୁସୁ ଫୁସୁ କଣ୍ଠରେ ମୋତେ କହିଲେ—'ଝୁଙ୍କୀ ଆଉ କୁଆଁଇଁ, ଆସିଛନ୍ତି···'ବୀଣା'କୁ ବାଇସ୍କୋପ୍ ଦେଖି ଗଲେ···'ଜନମ-ତିଥି' ଛବି···ପିଲାଙ୍କ ଛବି ···ଭଲ ଛବି...ମୋ' ସଙ୍ଗେ ଲଗେଇଥିଲେ ଦେଖିଯିବାକୁ । ମୁଁ ମନା କଲି, କହିଲି—'ସେତ ଘରେ ନାହାନ୍ତି, ଆସୁ ଆସୁ କେତେବେଳ ହବ ···ତା'ଠୁଁ ବରଂ ତୁମେ 'ବୀଣା'କୁ ଯାଅ; 'ବୀନି'କୁ ମୋତେ ଦେଇ ଯାଅ···।' ···ମୁଁ ସଙ୍ଗେ ସଙ୍ଗେ ସାୟ ଦେଇ କହିଲି—'ଭଲ କରିଛ'···କିନ୍ତୁ ସେ ତାଙ୍କର ପ୍ରକୃତି ଗୁଣରୁ ଯ୍ୟାକୁ ବେଳି ମନେ କରି ହେଉ, କି ତାଙ୍କର (ମାତୃସୁଲଭ) ଶାସନ ଅମାନ୍ୟ କରିଛନ୍ତି, ସେହି କଥାକୁ ବାଁରେଇ ହେଉ, କହିଲେ—'ହଉ ଭଲପଣିଆ ରଖ, ମୁଁ ଝିଅଟିକୁ ତୁମ ପଢ଼ାଘର ଖଟରେ ଶୁଆଇ ଦଉଚି । ଝିଅ ଟୋକିଁ ତ ଆଉ ନଖାଇ ନ ପିଇ ଯିବେନି···ତୁମେ ନଜର ରଖିଥିବ ।' ମୁଁ କୌଣସି ବାକ୍ୟ ବିନିମୟ ନ କରି, ତୁରନ୍ତ ପଢ଼ାଘରର ତାଲା ବନ୍ଦ ଦ୍ୱାର ଖୋଲିଦେଲି, ଆଉ ଲାଇଟ୍ ବୋତାମ ଟିପିଦେଲି । ଗୃହିଣୀ ଝିଅଟିକୁ ଶୁଆଇଦେଇ ଗଲାବେଳେ କହିଗଲେ—'ଦେଖ, ବେଖିଆଲ

ହେବନ ।' ମୁଁ କଥାରେ ନୁହେଁ, କାର୍ଯ୍ୟରେ ତାହା ପ୍ରମାଣ କରିବାକୁ ବିମାର କନ୍ଥା ପାଖକୁ ମୋର ତକିଆ ଲଗେଇ ଦେଇ ଟେବୁଲ ଉପରୁ ବହିଟିଏ ଟାଣି ଆଣି ଅର୍ଦ୍ଧଶାୟିତ ଅବସ୍ଥାରେ ଥାଇ, ଟୁଅ ଉପରେ ଗୋଟିଏ ଆଖି, ଆଉ ବହି ଉପରେ ଗୋଟିଏ ଆଖି ନ୍ୟସ୍ତ କଲି । ଏ କଥା ଗୃହିଣୀର ମନକୁ ପାଇଲା ବୋଧହୁଏ— କାରଣ, ଅତି ମୋଟା ପର୍ଦ୍ଦାରେ ଅତି ମିହି ସ୍ୱର ଖେଳାଇ ସେ କହିଲେ—'ମୁଁ ବୋଷଘରକୁ ଗଲି···ହଁ, ତୁମର ଝିଅ ଡେରିହେବ ଆଜି ।' ଉତ୍ତର ପାଇଁ ସେ ଯେଉଁଭଳି ମୋ ମୁହଁକୁ ଅନାଇ ରହିଲେ, ସେଥିରେ ଏହା ଆଦେଶ କି ଉପଦେଶ ବୁଝି ନ ପାରି, ପାଟି ଫିଟାଇଲାନି, ପାଟି ନ ଫିଟାଇଲେବି ବିପଦର ଆଶଙ୍କା...ସୁତରାଂ ଦୁଇର ମଧ୍ୟପନ୍ଥା ଅବଲମ୍ବନ କରି କେବଳ ମଥା ହୁଙ୍କାରିଲି ।

ଗୃହିଣୀ ଗୃହିଗଲେ, ମୁଁ କବାଟ ଆଉଜାଇ କିଳିଦେବାକୁ ଯାଉଚି ଭିତରୁ, ଗୃହିଣୀ ବାହାରୁ ଠେଲି ଦେଲେ, ମୁଁ ଠେଲି ହୋଇ, ଚେତ ସେଥିରୁ ନିରସ୍ତ ହେଲି । ଯାହାହେଉ ଘରେ ମୁଁ ଆଉ 'ବନି' । ଦୁଇଟି ପ୍ରାଣୀ । ସ୍ୱେହ୍ୱଅବସ୍ଥାରେ ସେ ଦିନର ଚଣାବାଲା ଆଉ 'ବେବି'ର ଏକାନ୍ତ ଭେଟାଭେଟି ଦୃଶ୍ୟ ଅବିକଳ ମନେ ପଡ଼ିଗଲା ।

ମନର ସେହି ପରିବେଶର ଆବେଶରେ ଥାଇ ମୋଟିଆ ଠାରୁ ଅଦ୍ଭୁତ ତଥ୍ୟଗୁଡ଼ିକ ଖିନ୍‌ଭିନ୍ କରି ପିଞ୍ଚିବାକୁ ଲାଗିଲି, କଥ୍ୟ ବଳାଳି, ଇତିହାସ ବୁଣିଲି ଏହିପରି—

ବିହାର ପ୍ରଦେଶ... ଅବି ଜିଲା··· ଗଣ୍ଡ-ଗ୍ରାମ··· କିଷାନ୍‌ଟିଏ... ଥୋଡ଼ା ଜମିର ମାଲିକ...ମାଟି ସଙ୍ଗେ ମାଟି ହୋଇ ଫଳ ଫଳାଉ-

ଥିଲା ବହୁତ...ଏକମାତ୍ର ବେଟା···ମା ଛେଉଣ୍ଡ···କଣ୍ଠା ଉପରରେ ଦେଲା ସାଥି...ଓଲଉଠାର ପ୍ରକୋପ···କଷାନ୍ ସନ୍କଲ୍···କଷାନ୍ ପୁଅ ବଢେ କାନ୍ଦଲ...ଫଲୁ-ଫାଙ୍କାରେ ବଢିଥିଲା...ତଥାପି ଅନାଢ଼ ମୁଠାରେ ଲଙ୍ଗଳ ମୁଣ୍ଡା ଧରିଲା···ସ୍ତ୍ରୀ ଥିଲା ଗର୍ଭବତୀ...କଅଁଳ-ବୟସୀ...ପ୍ରସବ ବେଦନା ସହି ପାରିଲାନି...ସୁତିକାଗାରରେ ସୁତଟିଏ ରଖି ବିଦାୟ ନେଲା···କଷାନ୍ପୁଅ ଏଥର ଅନ୍ଧାର ଦେଖିଲା ···ପୁଅ ସମ୍ଭାଳିବ, କି ବିଲ-ଧନ୍ଦାକୁ ଯିବ···ଏତିକିବେଳେ ତା’ର ବାଲ୍ୟ-ବିଧବା ପିଉସୀ ଅନ୍ଧାର ଘରର ଆଶା-ଦୀପ ହୋଇ ହାଜର ହେଲା···ଭାଇ ସଙ୍ଗେ ଥିଲା ଅପଡ଼, ସେଥିପାଇଁ ଦ୍ୱାର ମାଡ଼ୁ ନ ଥିଲା···ସେ କଣ୍ଢା ଯେତେବେଳେ କାଳ ଓପାଡ଼ ନେଇଛି, ଆଉ ତଣ୍ଡା କ’ଣ ?···ନାରୀ-କାମ୍ୟ ଲୋଡ଼ା ଥିଲା—ପୁଅ, ନାତି ଏକାସଙ୍ଗେ ପାଇଗଲା···ପୁଅର ଆନନ୍ଦ, ପିଉସୀର ଆନନ୍ଦ, ଛୁଆଟି ପିଇଲା ମକରନ୍ଦ ··· ହେଲେ ବିଧାତା ହେଲା ଭଗାରି·· ଅକାଳ ପଡ଼ିଲା ବର୍ଷ ବର୍ଷ ଧରି···ଗ୍ରାମବାସୀ ହେଲେ ଘରଛଡ଼ା···ଗ୍ରାମ ଉଜାଡ଼···କଷାନ୍ପୁଅ ବି ସେହି ବାଟ ଧରିଲା···କଲିକତାରେ ଆସି ପହଞ୍ଚିଲା···କ୍ରମଶଃ ହେଲା ଚଣାବାଲ୍···ଯେତେବେଳେ ସେ ଘର ଯାଦ ଆସେ, ପୁଅଟି ହୋଇଥିଲା କୌତୁକଆ। ତା’ କଥା ମନେ ପଡ଼େ, ତା ମାଆ କଥା ବି ମନେ ପଡ଼େ (ପୁଅଟି ଏକାବେଳେ ମା’ର ନକଲ୍ ବୋଲି ସେ କହିବାର ଶୁଣା ଯାଇଛି) ଗାଁକୁ, ଆଉ ଗାଁଁର ଅଡ଼ଣା ପଡ଼ଶାଙ୍କ କଥା ବି। ପିଉସୀକୁ ମା’ ବୋଲି ଉଲ୍ଲେଖ କରି ଭୁଷା ଓ ଟଙ୍କା ପଠାଇବାରେ ମଧ୍ୟ ହେଲା କଲିକି ···କଲିକତା ସହର, ନାନା ପ୍ରଲୋଭନର ଆକର, ବିଶେଷତଃ ନିଶା ବେଶ୍ୟାର। ଏକେ ସେ ଯୁବା, ତହିଁରେ ମୁକ୍ତଦ୍ୱାର, ସୁତରାଂ ସହଜେ ମନମୋହିନୀଟିଏ ତାକୁ ବାବୁ କରିନେଲା। ଘରକୁ ପଇସା

ପନ୍ ପଠାଇବା ବୁଟରେ ଆଉ ଭ୍ରଷ୍ଟା ଖଣ୍ଡେ ପଠାଇବ ସେ ଅବସର ମଧ୍ୟ ରହିଲା ନାହିଁ । ···ତେଣେ ପିଉସୀ ଆଉ କଣ କରିବ, କମି ଅଧିକ ସମ୍ଭାଳି କରି, ଘର-ସଂସାର ଚଳାଇ ନେବାକୁ ଲଗିଲା । ହେଲେ ପିଲାଟା ମୁହଁ ପାଇ ହୋଇ ଉଠିଥାଏ ଉଦ୍‌ବାଜିଆ । ପିଉସୀ ହେଲା ଅସମ୍ଭାଳ । ପୁଅର ଏପରି ଢଙ୍ଗ—ବାପର ସେପରି ରଙ୍ଗ, ଏ ସବୁକୁ ଦେଖି ପିଉସୀ ଅକଲ୍ ଖଟେଇ ଦିନେ ଭ୍ରଷ୍ଟା ଭେଜିଲା ଯେ— ତା'ର ଦେହ ଅତିଶଯ୍ୟ, ପୁଅକୁ ଅତିଶୀଘ୍ର ଘେନିଯିବ । . ଏହି ଖବର ପାଇ ଚଣାବାଲା ଭାରି କିଛି ବ୍ୟସ୍ତ ହେଲା, ମନ ତା'ର ଘର ଧରିଲା । ...ପୁଅର ପିଲ୍-ବଳକଟେଜ ମୁହଁ ମନେ ପଡ଼ିବାରୁ, ସେହି ସଙ୍ଗେ ଯା'ର ହାତ ଧରିଥିଲା, ତା'ର ମୁହଁବି ଆଖି ଆଗରେ ନାଚିଗଲା । ···ଥରେ ଘରପାଖକୁ ଯିବ, ପିଉସୀମାକୁ ଦେଖିବ, ପୁଅକୁ ଘିତ ଆସିବ ମନେ ମନେ ଏହି ମତଲବ ଆଣ୍ଟିଲା ।—ମତ୍‌ଲବୀ ମାଇକିନିଆଟା ଏକଥା ଠିକ୍ ଆଁଚ କରିନେଲା । ଅଣ୍ଟ ମନରେ ଏମିତିକା ସୁଆଗିଆପଣ ଦେଖେଇଦେଲା ଯେ, ସୁଆଗ-ରଙ୍ଗୀର ଘରଯିବା ମତ୍‌ଲବ୍ କୁଆଡେ ଫସ୍‌କି ଗଲା । ତେବେ ପୁଅ ଆସିଲା । ···ମୋହିନୀକୁ ମା ବୋଲି ଡାକିଲା । ସେତେବେଳକୁ ଚଣାବାଲା ଆଉ ଫେରିବାଲା ନୁହେଁ···ବୈଠକୀ ଚଣାବାଲା··· ଓସ୍ତାଦ ସବେ ସୁରୁ···ସାଗୀରଥଙ୍କ ଆଗରେ ମାନ ଥାନ ରହିବ, ପଥିପାଇଁ ମୋଟିଆ ମୋତାଏନ କରିଥାଏ ।... ପୁଣି ଚଣାବାଲା ଭଦ୍ର-ପଡାରେ ଫେରି କରୁଛି, ଭଦ୍ର-ସ୍ଥାନରେ ଦୋକାନ ଜମେଇଛି, ଭଦ୍ର-ଗହକୀ ଭିତରେ ଫେର ଫାର କରୁଛି ।···ତେଣୁ ପୁଅଟି ଭଦ୍ର ହେବ, ଏଇ କଥାକୁ ତା'ର ଭାରି ମନ । ହେଲେ, ଅଭ୍ୟାସରୁ ପିଲାଟା ବିଗିଡ଼ିଛି, ଜଘନ୍ୟ ବସ୍ତିରେ ବସ-ବାସ, ସ୍ୱଭାବକୁ ପ୍ରଭାବ, ଚଣାବାଲା ଏ'କଥା ନ ସମ୍ଭାଳି ତୁଚ୍ଛାକୁ ଚଣା ଗ୍ଟେବେଇ ହେଲା···ପୁଣି ପିଲାର ଦୋଷ ନ ଧରି,

ଦୋଷ ଧରିଲା ମୋହିନୀର । ଫଳରେ ମୋହିନୀର ମୋହ କଟି କଟି ଗଲା । ଧନ ଗୁଡ଼ ଖିନ୍ ଖିନ୍ ହେଲା···କଳି କଜିଆ ସଦାବେଳେ ଲାଗି ରହିଲା...ଅବଶେଷରେ ଯେଉଁ ଧନ ନିତ୍ତୁକ ବଧା ଗୃହୁଡ଼ା ଥୋଇଲା ମୋହିନୀର ପିଠିରେ ଗାଲରେ, ସେହି ଧନ ପୁଅ ବାପର ବାକ୍ସ ଭାଙ୍ଗିଲା, ମୋହିନୀ ଓ ପୁନୀ (ଯାହାକୁ ମୋହିନୀ ଜୁଟାଇ ଦେଇଥାଏ ପୁଅକୁ, ପୁଅ ସଙ୍ଗେ ବାପକୁ ଖାପଚରେ ରଖିବ ବୋଲି) ଦୁହିଙ୍କୁ ସାଥିରେ ବାନ୍ଧି ବଡ଼ ଅନ୍ଧାରରେ କାହିଁ ମିଶିଗଲା ।···ବାପ ବହେ ଖୋଜାଖୋଜି କଲା, ପତ୍ତା ପାଇଲାନି, ଶେଷକୁ ପୁଅର ମମତା କଟାଇ, ନିରସ ଚଣା ପଣି ହେଲା ନିର୍ମମ···ଏତେ ଦୂର ଯେ—ଗ୍ରେର ପକେଟ୍‌ମାର, ଜୁଆଡ଼ିଆ ବୋଲି କେତେଥର ହାତକଡ଼ି ପଡ଼ି ଚଣା-ବାଲାର ଆଖି ଉପର ଦେଇ ପୁଅଟା ଯାଇଚି, ତଥାପି ଭୃକ୍ଷେପ କରିନାହିଁ । ଏହି ଗୃର ପାଞ୍ଚ ବର୍ଷ ତଳେ, ଗୋଟାଏ ବଡ଼ ଡକେଇତି—ମାମଲାରେ ଧରାହୋଇ ଯେତେବେଳେ ସେ ଜେଲ୍ ଯାଏ, ସେତେବେଳେ ସେ ବାପକୁ ଦାଇମୀ ହୋଇ ଏତକି ଖବର ପଠାଇଥାଏ ଯେ, ପୁନୀର ପିଲାଟିଏ ହେବ, ତାକୁ ଯେମିତି ଠିକଏ ପଗ୍ଭରେ ।···ଯିଏ ଏଇ ଖବର ଆଣିଥିଲା, ବାପ ତା'କୁ ଖାଲି ଖବରଦାର କରି ଦେଇ ନଥିଲା, ଏ' କଥା ଆଉ ଥରେ କହରେ ଲେଉଟାଇଲେ, ଜିଭ ଓପାଡି ଦେବ ବୋଲି ଚହିଥିଲା ।···'ମୁଁ ମୂର୍ଖ ହେଲି ବୋଲି, ମୋର ମାନ ଥାନ ଧରମ, ସମ କି କୁଆଡ଼େ ଗଲା !'···ଏ' କଥା ତାକୁ ଏକା ନୁହେଁ, ବାବୁ ଭାଇଙ୍କୁ ବି ଡାକି ହାକି ଶୁଣାଇଥିଲା । ଏହି ସମୟରେ ପିଉସୀ ଗଙ୍ଗା-ସାଗର ମେଳାକୁ ଯିବ ବୋଲି କଲିକତା ଆସେ, ନାତିର ଖବର ଶୁଣେ । ମୁକ୍ତି ତୀର୍ଥ ସ୍ନାନ ପରେ ସଂସ୍କାରମୁକ୍ତ ମନ ଘେନି ଫେରେ କି କ'ଣ, ସେ ନିଃସଙ୍କୋଚରେ ପୁନୀ'କୁ ସାଙ୍ଗରେ ଘେନି ଗାଁଉକୁ ଗ୍ଭଲି ଯାଏ । ଚଣାବାଲା ବାଧା ଦିଏନାହିଁ,

କେବଳ ଅବାଧ କଣ୍ଠରେ କହେ 'ଦେଖ ପିଉସୀ-ମା, ତୁମ ସଙ୍ଗେଢ଼ ଆଜଠୁଁ ମୋ'ର ଇଲାକା ଛୁଟିଗଲା ।'···ଚଣାବାଲାର ଏଇ କଥାରେ ପିଉସୀ ନ ରାଗି, ବରଂ ହସି ହସି ଜବାବ ଦେଇଥିଲା— ତୋର ନାତି ନାତୁଣୀ ଯା' ହେବ ଗଙ୍ଗା ମାଇଙ୍କ ପର୍ସାଦରୁ, ତୁ ଜଲ୍ଦିର୍ ଖବର ପାଇବୁ ।' ···ନାତୁଣୀଟିଏ ହୋଇଚି; ଆଉ ତା' ନାମ ଗଙ୍ଗା ରଖିଚି, ଏ ଖବର ପିଉସୀ ଯଥା ସମୟରେ ପଠାଇ ଥିଲା । ମାତ୍ର ଯେଉଁ ରାତି ଏ' ଶୁଭ ଖବରଟି ବହନ କରି ଆଣିଥିଲା, ଚଣାବାଲା ତା'କୁ ଅଶୁଭ ବୋଲି ସ୍ଥାନ ଦେଇଥିଲା ଜଳନ୍ତା ଚୁଲ୍ଲିରେ—ଚଣା ଚଡ ଚଡ଼ ଭାଜୁ ଭାଜୁ, ଦାନ୍ତ ରଡମଡ କରି ରୋଷରେ କହୁଥିଲା (ମୋଟିଆ ସେ କଥା ଅଖିରେ ଦେଖି ବୋଲି କହୁଥିଲା ।) !

୬

ତା'ପର ସମୟ ବିତଗଲା । ଚଣାବାଲାର ଅସ୍ଥି ଚନ୍ଦ୍ରା ଜଳିଛି । ଏ' ଚନ୍ଦ୍ରାକୁ ଇନ୍ଧନ ଯୋଗାନ୍ତି ପିଲାଏ । 'ଗଙ୍ଗାକୁ' କେନ୍ଦ୍ରକରି ସେ ନିଜକୁ ନିଜେ ଅବଶ୍ୟ ପ୍ରଶ୍ନ କରିଥିବ ଏହି ପରିପ୍ରେକ୍ଷିତ ବାଡି(ଅବଶ୍ୟ ସହଜ ଜ୍ଞାନରେ) ଯେ ଏହି ନବଜାତକଟି ମଧ୍ୟ ଶିଶୁ···ଶିଶୁର ପରିଚୟ ଶିଶୁ··· ଦୁନିଆର ଶିଶୁଙ୍କୁ ଆପଣାର କରିବା ସ୍ଥଳେ, ଏ' ଶିଶୁଟିକୁ ଦୁନିଆର ବାହାର କରି ଫିଙ୍ଗିଦେଉଛନ୍ତି ? ଆଜିର ଶିଶୁଙ୍କୁ ଚନାବାଦାମ ଧରାଇ ଦେଲାବେଳେ, ଏହି ଶିଶୁଟି ମଧ୍ୟ ସେମାନଙ୍କ ଗହଳି ଭିତରେ କେତେବେଳେ ଗଳି ପଶି, ତା'ର କଅଁଳ ହାତଟି ଅଦୃଶ୍ୟ ଭାବରେ କେଜାଣେ ବଢ଼ାଇଥିବ, ଅଭି ଚନା-ବାଦାମ ପାଇଁ ଝଲି ଝଲି କରିଥିବ—ଏ' ଅନୁମାନ ବି ଆଦୌ ଅଯୌକ୍ତିକ ନୁହେଁ ।··· ସୁତରାଂ ଏହି କାରଣରୁ ନିଶ୍ଚୟ ସେ ଅନ୍ୟମନସ୍କ ହୋଇଯାଏ··· ସମାଜର କଟକଣା, ଧର୍ମର ଅନୁଶାସନ ତା'ର ଆଦିମ ମାନବସତ୍ତ୍ୱକୁ

ଉଦ୍‌ବେଳିତ କରି ପକାଏ, ଆଉ ସେହି ବୁଢାବେଳର ଲୋହ ଢଳ ଢଳ ହୋଇ ଫୁଟି ଉଠେ ଲହ ଆକାରରେ ଆଖିର କୋଣେ, କୋଣେ, ଏହା ଯେ କେହି ଦେଖଣାହାରି କହିବ ।···

ଆହା ! ସେଦିନ—ସେ ସଂସାର କରି ନାହିଁ, କି ତା'ର କେହି ନାହିଁ, ଏହିକଥା 'ଘୁଙ୍ଗୁରଦାନା' ତା'ର ଖୋକା'କୁ କହିବାକୁ ଯାଉ ନ ଥିଲା—କହୁଥା'ନ୍ତା ମନର କଥା ମନର ଦ୍ୱାର ଫେଇ ଯେ, ତା'ର ଘର ଥାଇ ଘର ନାହିଁ···ପୁଅ ଥାଇ, ପୁଅ ନାହିଁ···ବେଶ୍ୟା-ବୟସୀ ନାତୁଣୀଟିଏ ଥାଇ, ନାତୁଣୀ ନାହିଁ ।···

ତେବେ, 'ଖୋକା' ବାଧା ଦେଲା ନାହିଁ ଯେ, ତା'ର ମନର ବାଧାକୁ ଅପସାରିତ କରି ଦେଲା । ଫଳତଃ ସଂସ୍କାର ବୋଲି, ସଂସ୍କୃତି ବୋଲି, ସମସ୍ତ କିଛି ବିଧି ନିଷେଧକୁ ତୁଚ୍ଛ କରି, 'ଘୁଙ୍ଗୁରଦାନା' ଅବାଧ ଆବେଗରେ ଛୁଟିଥିଲା ଏକମୁହାଁ ଆଉ ଗୋଟିଏ ଖୋକା ପାଖକୁ—ଯେକି ବିଶ୍ୱ-ଶିଶୁ ଦରବାରରେ ଏକମାତ୍ର ଘୃଣିତା, ଉପେକ୍ଷିତା ଅଥଚ ବିଶ୍ୱ-ସଂସାରରେ ନିଜର ଏକମାତ୍ର ରକ୍ତର ସତ୍ତ୍ୱ —ବଂଶର ସଳିତା !···ଚଣାବାଲି ଏତୁଣି ଘରେ ପହଁଚିଥିବ, 'ଖୋକା', 'ଖୋକା' ବୋଲି ଡାକିଥିବ, ପିଉସୀ ଗଙ୍ଗାକୁ ଯାକି ଆଣି ବଢାଇ ନ ଦେଉଣୁ ସେ କୋଳକୁ ଝାଣି ନେଇ ଥିବ, ଆଉ ଚଣା ଦେଉ କି ନ ଦେଉ, 'ଘୁଙ୍ଗୁର ଦାନା, କେହି ଖାଇବ କେହି କରିବ ମନା' ଗୀତଟି ବୋଲି ବହେ ନାଚିଥିବ ମନର ଆନନ୍ଦରେ !···

ଏହିପରି ଅନ୍ତ-ତୃଷ୍ଣିଭରି ଚିନ୍ତା-ସ୍ରୋତରେ ଭାସିଯାଇ,

କେତେବେଳେ ଯେ ମୁଁ ଶେଷୋକ୍ତ ଖିଆଲର ଉନ୍ମାଦନାରେ ଆତ୍ମ-ବିସ୍ମୃତ ହୋଇ ବନ୍ଧନକୁ ଉଠାଇ ନେଇଚି କୋଳକୁ, ଅନୁ ଘୁଙ୍ଗୁରଦାନାର ଅଭିନୟ କରିଚି, ମୋ'ର ହୋଶ୍ ନାହିଁ ।... ହୋଶ୍ ହେଲା ସେତିକବେଳେ, ଯେତେବେଳେ ଖୁକା (ମୋ'ର ଝିଅ) ପଶି ଆସି ଡାକୁ ଡାକୁ କହିଲା—'ବାବା, ବାବା··· ବନ୍ଧନକୁ ନେଇ ଗେଲ୍‌ବସର ହେଉଚ ଯେ···ବନ୍ଧନ କରନ୍ତି କ'ଣ ଦେଖନ୍ତ ?'

'କ'ଣ ?'

'ଅପ-କର୍ମ···'

'ଏ ହେ-ହେ···' !

ଝିଅ ଜୋଇଁ ସିନେମାରୁ ଫେରୁ ଫେରୁ ରାତ ନଅଟାରୁ କମ୍ ହୋଇ ନଥିଲା ।...ମୁଁ ନିତ ଯେଉଁ ସମୟରେ ଆହାର କରେ, ତାହା ବେଶ୍ ଗଡ଼ି ଯାଇଥିଲା । ଭୋକବେଳ ଗଡ଼ି ଗଲେ, ଭୋକ ମରିଯାଏ ।···କିନ୍ତୁ ମୁଁ ନିଜକୁ ଅଧୈର୍ଯ୍ୟ ଅଭୁକ୍ତ ବୋଲି ମନେ କରୁ ନ ଥିଲି । ···ଏତେ ବଡ଼ ଗୋଟାଏ ସମସ୍ୟା (ଚଣାବାଲିର ଅବ୍ୟକ୍ତ ମର୍ମବେଦନା ସଂପର୍କିତ) ସମାଧାନ କରିପାରିଛି, କମ୍ ଆନନ୍ଦର କଥା ! ···କୁରୁଳା ଆନନ୍ଦରେ ମୋର ପେଟ ସଫା ଭରି ଯାଇଥାଏ । ସେହି ଭାବୋତ୍ତେଜନାରେ ମୁଁ ଭୋଜନ ସଭାକୁ ପରିଣତ କରିଦେଲି ନିଖୁଣ ଆଲୋଚନା ସଭାରେ । ମୋ'ର କୃତି ସମ୍ବନ୍ଧେ ଅମୂଲଚୂଲ ଭାଷଣ ଦେଇ ଉପସ୍ଥିତ ଶ୍ରୋତୃମଣ୍ଡଳୀ, ଅର୍ଥାତ୍ ଝିଅ, ଜୋଇଁ ଓ ଗୃହିଣୀ

(ଗୃହିଣୀ ଅବଶ୍ୟ ଖନ୍ଦା ପ୍ରସ୍ତୁତରେ ଥା'ନ୍ତି, କିନ୍ତୁ କାନ ଡେରି ଶୁଣୁଥାନ୍ତି) ଏ ସମସ୍ତଙ୍କୁ ମୁଗ୍ଧ କରିବାର ଚେଷ୍ଟା କଲି । ଭୂଷଣ ଅତ୍ୟନ୍ତ ଜୋରରେ ଚମତ୍କାର ବୋଲି ଅଭିନନ୍ଦନ ଜଣାଇଲେ । ହେଲେ, ମୁଁ ଆଶା କରିଥିଲି ସର୍ବସମର୍ଥିତ ଓ ସମସ୍ୱରୋଚ୍ଚାରିତ ଅଭିନନ୍ଦନ !···ଅନ୍ତତଃ ଝିଅଙ୍କୁ ନୀରବ ରହିବାର ଦେଖି, ତା' ଆଡ଼କୁ ଅପ୍ରତିଭ ଦୃଷ୍ଟିରେ ଅନାଇଲି । ଝିଅ ମୋ'ର ଇଙ୍ଗିତ ବୁଝିପାରି ଖନ୍ଦା-ପ୍ରସ୍ତୁ ଆଡ଼କୁ ଅନାଇଲା । ଖନ୍ଦା-ପ୍ରସ୍ତୁର ମାଲିକାଣୀ ସେ ଗୃହିଣୀର ଅର୍ଥ ବୁଝି ନିମ୍ନସ୍ୱରରେ ଅଥଚ ଇଂରାଜୀରେ (ଗାରିମାରି) କହିଲେ—'ନଇଁ ନ ଦେଖି···।' ଆଉ ତେଣିକି କହିବା ଅଶୋଭନ ବୋଧକରି (ବିଶେଷତଃ ଝିଅ ଜୋଇଁ ଆଗରେ) ସେ ଯାହା ଅବ୍ୟକ୍ତ ରଖିଲେ, ମୁଁ ଏତେ ବିଚଳିତ ହୋଇ ପଡ଼ିଥିଲି ଯେ, ତାହା ଶାଳୀନତା-ବୋଧହରାଇ ନଗ୍ନ କଣ୍ଠରେ ବ୍ୟକ୍ତ କରିଦେଲି ଚ୍ୟାଲେଞ୍ଜ ସ୍ୱରୂପ —'ନଙ୍ଗଳା !'

'ସ୍ୱଗିବନ୍ତ ବାବା···ପାନ ଧର, କହୁଚି ।'

'କ'ଣ କହିବୁ ତୁ ଯେ ?' ବୋଲି ମୁଁ ପାନଟାଏ ବେଶ୍ ରଗଡ଼ି ପାଟିରେ ପକେଇ ପାକୁଳେଇ ପାକୁଳେଇ ପାକୁଆ ପାଟିରେ ନକଲି ଦାନ୍ତ ପୁନର୍ଧାରଣ କରି ନ ଥିବା ଯୋଗୁଁ, ଝିଅ ଆଡକୁ ସ୍ନେହ-କଷାୟିତ- ନୟନରେ ଚାହିଁ ଉତ୍ତର ପ୍ରତୀକ୍ଷାରେ ରହିଲି । (ସେତେବେଳକୁ ମୁହଁ ପଖାଳି, ସଜ୍ଜା ଜମେଇ ଥାଉଁ ମୋ' କୋଠରିରେ ଅବଶ୍ୟ ।)

'ମା ଯା କହୁଛନ୍ତି, ଠିକ୍'

ଯେଉଁପରି ସଦମ୍ଭ ସମର୍ଥନ କରି ଝିଅ ଉତ୍ତର ଦେଲା, ସେଥିରେ ମୁଁ ଟିକିଏ ହଲଚଲେଇ ଗଲି,—କିନ୍ତୁ ସଦମ୍ଭେ କୈଫିୟତ୍ ଲୋଡିଲି ଏହିପରି ପଚାରି—

'କେମିତି ଠିକ୍ ଯେ ?'

ଝିଅ ଠିଆହୋଇଥିଲା, ମୋ'ର ପଲଙ୍କରେ ବସି ପଡିଲା... ଜୋଉଁ ଅବଶ୍ୟ ଅଗ-ସାମ୍ନା କୁର୍ଶିରେ ଉପବେଶନ କରିଥା'ନ୍ତି ; ଗୃହିଣୀ ଆସି ଦ୍ୱାରର ଆରପଟେ, ଦରଜାକୁ ଧରି ଅପଣାକୁ ସାମାନ୍ୟ ଉଢ଼ାଳ କରି ଠିଆହୋଇ ଥା'ନ୍ତି।...ଏଥର ଝିଅ ସଭାର ସଦସ୍ୟ ଭଳି ବ୍ୟକ୍ତିଗତ କୌଣସି ସଙ୍କୋଚ ନ ରଖି ସଫା ତା'ର ସଫେଇ ବାଢିଲା ଏହିପରି—

'ଚଣାବାଲାର ମର୍ମ-ବେଦନା ଆପଣଙ୍କର ପ୍ରତ୍ୟକ୍ଷୀଭୂତ। ସେହି ବେଦନାର ଏକମାତ୍ର କାରଣ ତା'ର ଶିଶୁ-ନାତୁଣୀ ଗଙ୍ଗା, ଏହାହିଁ ଆପଣ ପ୍ରତିପାଦନ କରିଛନ୍ତି। କିନ୍ତୁ ଏହିଠାରେ ଗୋଟିଏ ପ୍ରଶ୍ନ ? ଚଣାବାଲାର ଏକମାତ୍ର ପୁତ୍ର କଏଦଖାନାରେ, ଯା'କୁ କହନ୍ତି ଜୀବନ୍ତ ଯମାଳୟ; ସେ'ଠାରୁ ପୁଅ ତା'ର ବାପକୁ ଏକପ୍ରକାର ଗଙ୍ଗାଯାତ୍ରୀର ଶେଷ ଅଭିଳାଷ ଜଣାଇଲା ଭଳି ମିନତି ଜଣାଏ;—କିନ୍ତୁ ବାପ କର୍ଣ୍ଣପାତ ସୁଦ୍ଧା କରେ ନାହିଁ।...ଏ'ବାଦେ

ପିଉସୀ-ମା, ଯେକ ମା'ରୁ ଅଧିକ, ସେ ଶିଶୁଟିକୁ ନେଇଯାଏ ବୋଲି, ଜାମଦଗ୍ନ୍ୟର ମାତୃହତ୍ୟା ପଣକରି ତା'ସଙ୍ଗେ ଇଲ୍‌କା ଛିଣ୍ଡାଇ ଦିଏ... ଅଥଚ ସେହିଦୁର୍ଦ୍ଧର୍ଷ ଅଭିମାନୀ ସୁଦୂର ଅତୀତର କେଉଁ ବିସ୍ମରଣୀୟ ଶିଶୁପ୍ରୀତିକୁ ସ୍ମରଣକରି 'ଖୋକା' (ଯଦିଓ ବର୍ତ୍ତମାନ ଖୁକା ହୋଇ ଆଉ ନାହିଁ) ର ଅନୁଶାସନକୁ ବଡ଼ ମଣିବ, ଆଉ ସମାଜର ଅଲଂଘନୀୟ (ଅବଶ୍ୟ ତା'ପକ୍ଷେ) ବିଧିବଦ୍ଧ ନିୟମ ଲଙ୍ଘନକରି ଅବୈଧ ଶିଶୁଟିକୁ ମମତାର ଡୋରରେ ବାନ୍ଧିବ—ଏହା ତା'ର ଗୁରବିକ ବିଶ୍ଳେଷଣ ସଙ୍ଗେ ଅଦୌ ଖାପ ଖାଉନାହିଁ । ବର୍ଣ୍ଣିତ ବ୍ୟାଖ୍ୟାରୁ ବେଶ୍ ବୁଝାଯାଏ ଯେ, ଚଣାବାଲ ନୀତି ମାନେ, ସଂସ୍କାର ମାନେ, ସମାଜର ଗଣ୍ଡି ମଧ୍ୟରେ ରହିବାକୁ ଦୃଢ଼ସଂକଳ୍ପ । ଯଦି ସେ ଏ' ସଂକଳ୍ପରୁ ବିଚ୍ୟୁତ ହୋଇଥାଏ, ତେବେ ନିଶ୍ଚୟ ଖୋକାର ଏ'ପରି କୌଣସି ପ୍ରଭାବ ତା' ଉପରେ ରହିଛି ଯାହା ଫଳରେ ସେ'ଖୋକାର ସାମାନ୍ୟ ଅନୁରୋଧ ବା ଆଜ୍ଞାକୁ କୌଣସି କାଳେ ଅବଜ୍ଞା କରି ପାରେନା।...ଯାର ଆଭାସ ମଧ୍ୟ ଉଲ୍ଲେଖ କରି ଯାଇଥିବା ଶାମବଜାର, ପୋଲିଶ ମଧ୍ୟରେ ନିହିତ।...ସେହି ତଥ୍ୟ ଏ'ପର୍ଯ୍ୟନ୍ତ ଅବିଷ୍କୃତ ହୋଇ ନାହିଁ।... ଚଣାବାଲର ଫେରିଦନର ଇତିହାସ-ପୃଷ୍ଠା ଉଦ୍‌ଘାଟିତ ନ ହେବା ଯାଏ, ଯେଉଁ ସିଦ୍ଧାନ୍ତରେ ଆପଣ ଉପନୀତ, ତାହା ଭାବାବେଗର ପରିଚୟ ମାତ୍ର,—ଏହି କଥା କହିବାକୁ ଯାଇ ପ୍ରତିପକ୍ଷ (ମା) ତାଙ୍କର ସ୍ୱଭାବସୁଲଭଭଙ୍ଗୀତରେ 'ନଈ ନ ଦେଖି...' ଢଗ ପକାଇଚନ୍ତି— ଏହାହିଁ ଉକ୍ତ ଢଗର ତାତ୍ପର୍ଯ୍ୟ !

ଜୋଉଁ କୌଣସି ପ୍ରତିବାଦ କଲେ ନାହିଁ...ମୁଁ ମଧ୍ୟ ମଥା ତଳକୁ ପୋତି ଚନ୍ଦ୍ରାର ଘୁର୍ଣ୍ଣି ପାଖରେ ପ.କ ଖାଇବାକୁ ଲଗିଲି।...

ତାପର କେତେବେଳେ ଝିଅ, ଜୁଆଁଇ ମୋର ପାଉଁ-ଲାଗି ହୋଇ, ବିଦାୟ ନେଇ ଚାଲି ଯାଇଛନ୍ତି, ଜାଣିନାହିଁ ।…'ଶୁଣୁଛ'…ଘରଣୀର ଏହିପରି ଅଚାନକ ସଂବୋଧନରେ ମୋର ଚେତା ପଶିଲା ।…ମୁଁ ସଶଙ୍କ ଦୃଷ୍ଟି କ୍ଷେପ କଲି ।…ଶଙ୍କାର କାରଣ, ପୁଣି ଯଦି କେଉଁ ମନ୍ତବ୍ୟ ବାଣ ଖଞ୍ଜି ମୋ'ର ମୁମୂର୍ଷୁ ମୀମାଂସାକୁ ଏକାଠବେଳେ ମୃତ୍ୟୁମୁଖକୁ ଠେଲି ଦିଅନ୍ତି ।…ଜନ୍ମହେଲେ, ମୃତ୍ୟୁ ନିଶ୍ଚୟ, ଏହା ଜାଣି ସୁଦ୍ଧା ମାନବ ବ୍ୟକ୍ତିଗତ ମୃତ୍ୟୁକୁ ଭୟ କରିଥାଏ ।…ମୁଁ ମଧ୍ୟ ସେହିପରି ପ୍ରଶ୍ନର ମୀମାଂସା ଯେ ପ୍ରତିପ୍ରଶ୍ନର ଉପଜ, ଏହି ତତ୍ତ୍ୱକୁ ସ୍ୱୀକାର କରିଥିଲେ ସୁଦ୍ଧା ଚଣାବାଲା ସଂକ୍ରାନ୍ତ ବ୍ୟକ୍ତିଗତ ମୀମାଂସାର ଅନ୍ୟଥା ଅର୍ଥାତ୍ ମୃତ୍ୟୁକୁ ଭୟ କରୁଥିଲି । ସେଥିପାଇଁ ଯେଉଁ ଶକ୍ତିଶେଳାଧିକ ପ୍ରଶ୍ନରେ 'ମୀମାଂସା ମୋ'ର ଜର୍ଜରିତ, ସେଥିରୁ ତା'କୁ କେମିତି ମୁକ୍ତ କରିବି, ଏହି ଧ୍ୟାନରେହିଁ ମାତି ରହି ଥିଲି ।… ଏତିକିବେଳେ ଗୃହିଣୀର ସେହିପରି ସଂବୋଧନ ମୋର ସେହିପରି ଆଶଙ୍କାର କାରଣ ହେବ, ଏଥିରେ ଆଶ୍ଚର୍ଯ୍ୟ କ'ଣ ?…କିନ୍ତୁ, ମୋର ବିସ୍ମୟର ଅବଧି ରହିଲା ନାହିଁ, ଯେତେବେଳେ ସେ ଅତି ସହଜ କଣ୍ଠରେ କହିଲେ—'କାଲି ବିଶ୍ୱ-କର୍ମା ପୂଜା…ନାତି ନାତୁଣୀ ସେଦିନ ଅଳି କରି ଯାଇଥିଲେ…ଭୁଲି ଯିବନି…ମୁଁ ଗଲି, ବିନି ଶୋଇ-ପଡିଥିଲା, ସେଥିପାଇଁ ତାକୁ ଯିବାକୁ ଦେଇନି…ସେଁଘରେ ଶୁଆଇ ଆସିଛି, ଏକା ଶୋଇଚି…ହଁ, ସହଲ ସହଲ ଉଠିବ…ନଚେଇ, ଘୁଡ଼ି କିଣିଦେବ…ବିନିକି ଘୁଞ୍ଚ ଅସିବ, ତା'ପର ଯାଇ ରନ୍ଧାବଢ଼ା' …ଆଉ ଦାମ୍ପତ୍ରମାନ ଅପେକ୍ଷା କଲେ ନାହିଁ…ଦ୍ୱାରଟା ଆଉଜେଇ ଦେଇ, 'ଦ୍ୱାର ଦିଅ' କହି ଚାଲିଗଲେ…ବିନି ଯେ କାନ୍ଦି ଉଠିଥିଲା ସେତେବେଳେ, ତା'ବି ନୁହେଁ… ।…ପୂର୍ବର ସେହି ମନ୍ତବ୍ୟ କାରିଣୀ କ'ଣ ଏହି କର୍ତ୍ତବ୍ୟ ଚେତାବତୀ ?…ଏହି ପ୍ରଶ୍ନ ମନକୁ ମନ

କରୁ କରୁ ମୁଁ ଅନିମେଷ ନୟନରେ ଗୃହିଣୀର ଗମନ ପଥକୁ ଅନାଇ ରହିଲି ··· ନାଁ ନୁହେଁ, ବାସ୍ତବତାର ଅପସ୍ମୃୟମାନ ମାନଦଣ୍ଡ !...ଯେତେବେଳେ ଯେଉଁ କାମ, ସେତେବେଳେ ସେହି-କାମ କରଣୀୟ । ଏକ ଚିନ୍ତା ସଙ୍ଗେ ଅନ୍ୟ ଚିନ୍ତାକୁ ସ୍ଥାନ ଦେଇ ଜଡ଼େଇବା ଠିକ୍ ନୁହେଁ ।···ଗୃହିଣୀର ଏହିପରି ନୈତିକ ଧାରାକୁ ଅବଲମ୍ବନ କରି, ଚଣାବାଲ ସଂକ୍ରାନ୍ତ ମୀମାଂସାର ପୁନରାଲୋଚନା କରୁ କରୁ କେତେବେଳେ ମୋତେ ନିଦ ଲାଗି ଯାଇଛି ମୁଁ ଜାଣି ପାରିନାହିଁ ।......

'ଆଜି ବିଶ୍ୱକର୍ମା-ପୂଜା' । ଏହି ପୂଜା ଶିଳ୍ପାୟତନମାନଙ୍କରେ ଅନୁଷ୍ଠିତ ହୋଇଥାଏ ସାଡ଼ମ୍ବରେ । କିନ୍ତୁ ଏହାର ପ୍ରଧାନ ଆନୁସଙ୍ଗିକ ଘୁଡ଼ିଉଡ଼ା ଉତ୍ସବଟି ପ୍ରତିପାଳିତ ହୋଇଥାଏ ଏକପ୍ରକାର ଘରେ, ଘରେ । ... ବିଶେଷତଃ କଲିକତା ମହାନଗରୀରେ । ଜାତି, ବର୍ଣ୍ଣ, ଧର୍ମ—ନିର୍ବି-ଶେଷରେ ସାର୍ବଜନୀନ ଭୂମିକା ଗ୍ରହଣ କରିଥାନ୍ତି ମୁଖ୍ୟତଃ ଶିଶୁଶ୍ରେଣୀ ଏଥିରେ । ଅଭିଭାବକମଣ୍ଡଳୀ, ତଥା ଅଳ୍ପ ଓ ମଧ୍ୟବୟସ୍କଗୋଷ୍ଠି ମଧ୍ୟ ଅକୁଣ୍ଠ ସହଯୋଗିତା ଦ୍ୱାରା ଏ' ଉତ୍ସବକୁ ମୁଖରିତ ଓ ପୂର୍ଣ୍ଣାଙ୍ଗ କରିଥିବାର ଦେଖାଯାଏ । କଲେଜ-ସ୍କ୍ୱାୟାରରେ ଏହିପରି ଗୋଟିଏ ଉତ୍ସବର ସମାରୋହ କେଉଁ ଫୁଲ୍-ସକାଳୁ ଆରମ୍ଭ ହୋଇଯାଇଛି । ମୁଁ ଯେତେବେଳେ ଏହି ବାଟେ ଦେଇ ମିର୍ଜାପୁରର ନାମଜାଦା ଘୁଡ଼ି ଲଟେଇ ଦୋକାନକୁ ସଉଦା କରି ଯାଏଁ, ସେତେବେଳେ ପିଲାଙ୍କ ପାଟି-ତୁଣ୍ଡ ଓ ଦୌଡ଼-ଧାପଡ଼ରେ ସ୍କ୍ୱାୟାରଟି କମ୍ପମାନ—ଆଉ ଗମ୍ବୁଜୋପମ ବିରହିଆ ଆକାଶ ଘୁଡ଼ିରେ ଘୁଡ଼ିରେ ବିଚର୍ଚ୍ଚିତ ହୋଇ ଯାଇଚି । ପିଲାଙ୍କର ଏହି ଖେଳ କୌତୁକ ମୋତେ ଦେଖିଆଲ

କରଦେଲ, ମୁଁ ସକୌତୁକେ ଠାଏ ଠିଆହୋଇ ସେହି ଉତ୍ସବ ଉପଭୋଗ କରିବାକୁ ଲାଗିଲି ।

ନାନା ରଙ୍ଗର ଘୁଡ଼ି ଆକାଶରେ ।···କେହି ଲୋଠେଣି ଖାଉଛି··· କେହି ଗୋଡ଼ା ମାରୁଛି···କେହି ଝାଁମ୍ପି ଅନ୍ୟ ଘୁଡ଼ି ଉପରେ ପଡ଼ୁଛି ···କେଉଁଠି 'ଫସୁକା' ହୋଇ କଟା ଘୁଡ଼ିଟିଏ ଭାସି ଭାସି ଯାଉଛି ଉଡ଼ାଣିଆ ବଉଦ ପରି···କେଉଁଠି ଘୁଡ଼ିଟିଏ ପ୍ରତିଯୋଗୀକୁ ପରାସ୍ତ କରି ବିଜୟୀ ଗର୍ବରେ ଉନ୍ନତଶିର···କେତେ ଘୁଡ଼ି ଉଡ଼ିବାକୁ ଯାଇ ଖସି ପଡ଼ୁଛି···କେତେ ଘୁଡ଼ି ଉଡ଼ୁଛି ଯଦି, ବାଗ ମାନୁନାହିଁ···କେହି ଏଙ୍କାଣାଆଁ···କେହି କାନି ଠିକ୍ ରଖି, ଟାଣ ହୋଇ ରହୁଛି ।

ଏହିତ ଜୀବନର ଖେଳ । କଳ୍ପନା ଓ ବାସ୍ତବକୁ ନେଇ ମାନବ-ଜୀବନ । 'କଳ୍ପନା' ଆକାଶର ଘୁଡ଼ି, 'ବାସ୍ତବ' ଭୂମିର ଲଟେଇ । ଯୋଗସୂତ୍ର ମନର ଅନୁଭୂତି । ଯେତେବେଳେ ଲଟେଇ ସଙ୍ଗେ ଘୁଡ଼ିର ସମନ୍ୱୟ ରହୁଛି, ସେତେବେଳେ ଘୁଡ଼ି ଟାଣ ହୋଇ ଉଡ଼ୁଛି, ଆଉ ଯେତେବେଳେ ଅନ୍ୱୟ ବିଚ୍ଛିନ୍ନ, ସେତେବେଳେ ଯାଯାବର ଗତି ଧରୁଛି । ...ବାସ୍ତବ ସଙ୍ଗେ କଳ୍ପନାର ସଂପର୍କ ଠିକ ଏହିପରି । ଘୁଡ଼ି ଗୋଡ଼ାମାରେ, ଲୋଠେଣି ଖାଏ, କାନି ମାରେ ଇତ୍ୟାଦି ଇତ୍ୟାଦି ।···ଏହାର କାରଣ ଘୁଡ଼ି ଓ ଲଟେଇର ଘାତ ପ୍ରତିଘାତ ନୁହେଁ କି ? କଳ୍ପନା ମଧ୍ୟ ସେହିପରି ଖେଳ ଖେଳେ—ଏହାର ହେତୁଭୂତ ଉଭୟ କଳ୍ପନା ଓ ବାସ୍ତବର ପାରସ୍ପରିକ କ୍ରିୟା-ପ୍ରତିକ୍ରିୟାହିଁ ବୁଝାଯିବ । ତେବେ କେହି କାହାରି ଠାରୁ ବିଚ୍ଛିନ୍ନ ନୁହନ୍ତି । ଘୁଡ଼ି ଓ ଲଟେଇ ମଧ୍ୟରେ ରହୁଛି ସୁନ୍ଦର ସଂଯୋଗ; ଆଉ କଳ୍ପନା ଓ ବାସ୍ତବ

ମଧ୍ୟରେ ଉଦ୍ଧୃତ ଅନୁଭୂତିର ସଂଯୋଗ ।···ଅନମନୀୟତା କାହାର ପକ୍ଷେ ବାଞ୍ଛନୀୟ ନୁହେଁ । ଏଥିରେ ସହଯୋଗିତା ନଷ୍ଟ ହୁଏ, ପ୍ରମାଦ ଘଟେ, ଖେଳ ହୁଏ ମାଟି ।

ଜୀବନର ଏହି ତାତ୍ପର୍ଯ୍ୟ ଉପଲବ୍ଧି କଲାମାତ୍ରେ, ମନକୁ କଲି ଦୃଢ଼; ଦୃଢ଼ ପଦକ୍ଷେପରେ କର୍ମପଥରେ ହେଲି ଅଗ୍ରସର ।

ସନ୍ଧ୍ୟା ସକାଳ । ବେଳାବେଳି ଲେଉଟିବାର କଥା । ଉତ୍ତର ଦେଖି ବସ୍ କମ୍ବା ଟ୍ରାମ ଧରିବା ଉଦ୍ଦେଶ୍ୟରେ ସିନେଟ୍ ପାଦତଳ ଫୁଟ୍‌ପାଥକୁ ଗଲି ।···

ବସ୍ ଧରିବି, ଏହି ସମୟରେ ଗୁହାରି ଦିଏ—ବାରିଷ୍ଟର, ବାରିଷ୍ଟରାଣୀ, ଆଉ 'ବେବୀ' ନିଜସ୍ୱ ମଟର କାର୍‌ରୁ ଓହ୍ଲାଇ, ଇଉନି-ଭର୍‌ସିଟି-ବିଲ୍‌ଡିଂର ଗୋଟିଏ ଆଭରଣୀ ବା ବସନାଳୟକୁ ଗୋଡ଼ ବଢ଼ାଉଛନ୍ତି । ମୁଁ ନିଜକୁ ସମ୍ଭାଳି ନ ପାରି, ସେହିଆଡ଼େ ମୁହାଁଇ ସେମାନଙ୍କ ଅନୁବର୍ତ୍ତୀ ହେଲି ।

ଦୋକାନ ଭିତରକୁ ପଶିଲେ, ଗ୍ରାହକ ହେବାକୁ ପଡ଼େ । 'ବନି' କଥା ମନେ ପଡ଼ିଗଲା । ବାହାନା କରିବାକୁ ପଡ଼ିଲାନି । ବେବି-ଫ୍ରକଟିଏ ବଛିତ କଲି । ଦୋକାନୀ ପୁଳାଏ ଜମାଇ ଦେଇଗଲା । ଏଣେ ବାଛିବାକୁ ଲଗିଲି, ତେଣେ ଅକୁରବର୍ତ୍ତୀ ବାରିଷ୍ଟର-ପରିବାରଙ୍କ କାର୍ଯ୍ୟକଳାପ ଓ କଥାବାର୍ତ୍ତାକୁ ଲକ୍ଷ୍ୟ ରହିଲି ।

'ନନ୍‌ସେନ୍‌ସ । କାହିଁ ହକ୍-ମାର୍କେଟ, କାହିଁ କଲେଜଷ୍ଟ୍ରୀଟ-ମାର୍କେଟ୍ ···ବେଙ୍ଗାର କ ପସନ୍ଦ ?'—ସାହେବ କହିଲେ···ସାହେବର ଅଭିଜାତ୍ୟ ସୁଲଭ ସାହେବୀ ପୋଷାକ ଏ' ଦିନ ।

'ହକର୍ସ-କର୍ନରକୁ ନେଲ, ସେଠା ଜିନିଷ ବି ମନକୁ ପାଇଲାନି ।'—ସାହେବାଣୀ ମୃଦୁହସି କହିଲେ—ସାହେବାଣୀର ଅନାଭିଜାତ୍ୟ ପରିହରଣ ଏ' ଦିନ ।

ବେଙ୍ଗା କିଛି ନ କହି, ତା'ର ଦେହମାପର ଜାମା, ଅଣ୍ଡ୍ରାର୍ଜ ଦେଖୁଥାଏ ଜାମାଗୁଡ଼ୁ ପରୁ ।

ସାହେବ ନିର୍ଲିପ୍ତ ଥାଇ, ଭସ୍ ଭସ୍ ଧୂଆଁ ଛାଡୁଥାନ୍ତି ପାଇପ୍‌ରୁ । ମୋ' ଆଖି ଧୂଆଁ-ବାଣରେ ଅସ୍ଥିର : ତଥାପି ମୁଁ ଥାଏ ସ୍ଥିର-ନୟନ, ସ୍ଥିର-କଣ୍ଠ ।

ବେଙ୍ଗା ଗୋଟାଏ କୌତୁକିଆ ଛୁଟରେ (ଯେମିତି ସର୍କସର କ୍ଲାଉନ୍ ସବୁବେଳେ ପିନ୍ଧିଥାଏ) ଫ୍ରକ୍‌ଟିଏ ବାହାର କରି, ମାମାକୁ ଦେଖାଇଲା ।

ମାମା ଫ୍ରକ୍‌ଟି ହାତକୁ ନେଇ, ପାପାକୁ କହିଲା—

'ଦେଖିଲତ···ସେଦିନ ଶ୍ୟାମବଜାରରୁ ଫେରିବା ବାଟରେ, ଏହି ଦୋକାନରୁ ଏହିରକମ ଫ୍ରକ୍‌ଟିଏ ତା'ର ଜନ୍ମଦିନର ଆମୋଦ ପାଇଁ

ନେଇଥିଲି ବୋଲି, ବେୟାରା ଜାଦ୍ ସେଥିପାଇଁ ଆଉ ଖଣ୍ଡେ ନେବ ସେହି ଦୋକାନରୁ ।'

ସାହେବାଣୀ ସହଜ ଭାଷାରେ କହିଲେ ମଧ୍ୟ, ସାହେବ ସହଜ ଭାବରେ ନେଲେନାହିଁ; ପାଇପ୍ ଓଠାରୁ ଓହ୍ଲାଇଲେ, ଭ୍ରୂ କୁଞ୍ଚନ କଲେ; ହେଲେ ପର ମୁହୂର୍ତ୍ତରେ ଭ୍ରୂ ସଂପ୍ରସାରଣ କରି କହିଲେ ଏତିକି—'ମେକ୍ ହେଷ୍ଟ, ପ୍ଲିଜ୍' । ସେମାନଙ୍କର ସଉଦା ସଙ୍ଗେ ସଙ୍ଗେ ମୋ'ର ବି ସଉଦା ସରିଥିଲା । ସେମାନେ ସେମାନଙ୍କ ବାଟ ଦେଖିଲେ, ମୁଁ ମୋ' ବାଟ ଦେଖିଲି ।

ମନକଥା ମନରେ ମାତ୍ର ଅସ୍ପୃଷ୍ଟ ହୋଇ ବାଟ ଚାଲିଲି ସତ, କିନ୍ତୁ ଆଉ ଗୋଟିଏ କଥା ମନକୁ କଲା ଅଥୟ—'ବେୟା ଅନ୍ୟ ଗୋଟିଏ, ଅପଣା ମାପର, ଏକ-ଗୁଛରେ ଫ୍ରକ୍ ନେବାର କାରଣ ?···ତେବେ କ'ଣ...?'

ନା, ମୁଁ ଅହେତୁକ କଳ୍ପନାପ୍ରବଣ ହେବ ନାହିଁ, ହେବ ସହେତୁକ ବାସ୍ତବବାଦୀ—ଏହି କଥା ନିଜକୁ ନିଜେ କହି, ବସରୁ ବାହାରକୁ ଚାହିଁ ଦେଖେ, ଯେଉଁଠି ଓହ୍ଲାଇବା କଥା, ସେଠୁ ଅନ୍ତତଃ ଦୁଇଟା ଷ୍ଟପେଜ୍ ପାରହୋଇ ଯାଇଛି ।

ଉତ୍ତର ହୋଇଗଲାଣି, ଗୃହିଣୀ ଉଚ୍ଛନ୍ନ ହେଉଥିବେ—ଏହି କଥା ଭାବିଲାମାତ୍ରେ ପଞ୍ଚ ଉଠି ଧାଇଁଲି, ଘରପାଖେ ହାଜର ହୋଇଗଲି,

ଘର ଦାରଜାକୁଗୃହି ଦେଖେତ—ଗୃହିଣୀର ଖାସ୍ ତୋଲପଡା ସେଥିରେ ଲଟକି, ଝୁଲୁଛ ।

ମୋ'ର ମନର ଖୋଲା ଦାରଜା ବ ଯେମିତ ଧଡ଼ାସ କର ଛୁଏଁ ଛାଏଁ ବନ୍ଦ ହୋଇଗଲ ଅଲ୍‌ବାବାର 'ସିସେମ୍ ବନ୍ଦ୍' ଭଳି ଠିକ୍ ଏହିପର ଧଡ଼ସ ଅନୁଭବ କଲ ।...ତଥାପି ଅଣନିଶ୍ୱାସୀ ହୋଇ ଧାଇଁ ଯାଇ ଉଜାଣୀବସ୍ ଧରିଲ ।···ବସ୍‌ରେ ଯାଉଁ ଯାଉଁ ଶୀତଳମାଙ୍କୁ ଯେ ଶୀତଳ ଭୋଗ ଯାଚନଥିଲି, ତାହାନୁହେଁ ।

ବହୁବଜାରରେ ଓହ୍ଲାଇବା ମାତ୍ରେ, ଅଗ୍ନିନଙ୍କ ମୋ' ମଥାରେ ବୁଦ୍ଧି ଖେଳଗଲ ଏହ୍ର ଫ୍ରକ୍‌ଟିକୁ କେନ୍ଦ୍ରକର । ଗୃହିଣୀ ଅନ୍ୟାନ୍ୟ ନାତ ନାତୁଣୀଙ୍କ ପାଇଁ ଉପଢୌକନ ବରାଦ୍ କରଥିଲେ ସତ୍ୟ, କିନ୍ତୁ ଗେଲ୍‌ବସରିଆ 'ବନୀ' ପାଇଁତ କିଛୁ ଫରମାସ୍ କର ନ ଥିଲେ । ଏହି ଫ୍ରକ୍‌ଟି ଦେଖାଇବ, ତାହା ଦେଖିଲା ମାତ୍ରେ, ଉଗ୍ରଚଣ୍ଡୀ ପାଟିତୁଣ୍ଡ କରିବେ କ'ଣ, ଆମୃଧିକ୍‌କାରରେ ଅଧୀରହୋଇ ନିଜର ମୁଣ୍ଡ କାଟି ଛିନ୍ନମସ୍ତା ପାଲଟି ଯିବେ, ଏଥିରେ ସନ୍ଦେହ ନାହିଁ ।

ହେଲେ, ମୋ'ର ମୁଣ୍ଡ କଟିହୋଇଗଲା, ଯେତେବେଳେ ସେ ଫ୍ରକ୍‌ଟି ଉନକି ତାନକି, କହିଲେ—

'ମଲ ମୋ'ର !···ସିଲ୍‌କ ନାଇ, ଫିଲ୍‌କ ନାଇ, ଏ' ପୁଣି ଫରକରେ ଲେଖା ! ଦୋଉଖେଇ ଦେବୁଛି ମୋ' ଫରକ୍, ଝିଅ ।'

କି ଦୃଢ଼ ବାସ୍ତବବୋଧ !··· ଏହାର ରୁଚ ଧାମ୍ଭୁଖ୍ୟରେ କଳ୍ପନା ବଳାସୀ ମୁଁ ଧକ୍‌କା ଖାଇ ଓଲଟି ପଡୁ ପଡୁ ଯେମିତ ରହିଗଲି, ଠିକ୍ ଏଇଯ୍ୟା ଉପଲବ୍ଧି କରିବାକୁ ଲଗିଲି ।

ଝିଅ-ଜୋଇଁ ଗ୍ଲଣ୍ଡଲେ ନାହିଁ ...ସେଇଠି ଖିଆ-ପିଆ ବଢିଲା... ...ଲେହ୍ୟ ପେଯ୍ୟର ଅନ୍ତ ନ ଥିଲ···ମୁଁ ବ ଗୋ-ଗ୍ରାସରେ କଣ୍ଠାଗ୍ରତ ଭୋଜନ ଚଢ଼ାଇଲ, କାରଣ ବନା ତଥ୍ୟରେ, ବନା ପ୍ରତ୍ୟୟରେ, କଳ୍ପନା-ଆକାଶକୁ ଡେଣା ମେଲିବ ନାହିଁ, କି ଆଲୋଚନା-ବାଟକୁ ଖୋଜେ ମୂଳା ପାଦ ବଢ଼ାଇବ ନାହିଁ— ଏହି ଦମ୍ଭ ମୋତେ କରିଥିଲା ସଦମ୍ଭ ।

ମୋ'ର ଏଭଳି 'ଗୋଗ୍ରାସ' ଜନତ ଅଭୂତପୂର୍ବ ଆଚରଣକୁ ଝିଅ, ଜୋଇଁ ନଜର କରିଥିଲେ କି ନା କହି ପାରୁନାହିଁ ; କନ୍ତୁ ଘରଣୀର ଶ୍ୟେନ ଦୃଷ୍ଟିକୁ ଯେ ଏ' କଥା ଏଡ଼ି ନ ଥିଲ, ଏହା ବେଶ ବୁଝିଲ ଯେତେବେଳେ ସେ ଘରେ ଗୋଡ଼ ଦେଉଣୁ ନ ଦେଉଣୁ, ମୋତେ (ମୁଁ ଅବଶ୍ୟ ଅଗ ଗ୍ଳଲ ଆସିଥିଲ କୁଥି ଯେଣ) ଉଦ୍ଦେଶ୍ୟ କର ତୀବ୍ର କଣ୍ଠରେ ପୋଥି ଆରମ୍ଭ କଲେ—'ଜୋଇଁ ଘର···ମଣିଷର ପେଟ ପୋଡି ଯାଉଥିଲେ ବ ପାଟିରେ ନାହିଁ ନାହିଁ କରୁଥିବ, ଆଉ ତୁମେ କି ନା···(ସ୍ୱର ବଦଳାଇ) ଆଚ୍ଛା ମୋ ମୁଣ୍ଡ ଖାଅତ···ପେନ୍‌ସନ ନେଲ ଦନୁ, ଯାକି ଯାକି ହୋଇ ଘରଖର୍ଚ୍ଚ ଚଳାଇଲେ ବ ତୁମର କହିଁ କଥାକୁ ଜଣା କରଚ ଭଲ··· ଖାଇ ଆସିଚ, ସେଥିପାଇଁ ସାତତଅଣ କର ସ୍ୱାଦ ବାଚିଦଏ ; ଆଉ ତୁଚମ···(ଗୁମାନଭରା କଣ୍ଠରେ) ଖାଲ କାଉ-ଖୁମ୍ପା କରିବ, ଛେଡର

ମେତର କରିବ ବଡ଼ା ଭାତ ଆଳକ··· ହୁଁ, କେତେ ବଳେଇଲେ ବି ଭୋକ ନାହିଁ ଭୋକ ନାହିଁ ବୋଲି ବିରକ୍ତ ହୋଇ ଉଠି ଯିବ···(ସବ୍ୟେଷରେ) କାହିଁକି ଯେ ?'

ତା'ପର ନାକ ସୁଁ ସୁଁର ଉପକ୍ରମ···ଆଉ ରକ୍ଷାନାହିଁ··· ବ୍ୟେଷାଗ୍ନିର ଆଗ୍ନେୟ ଉଦ୍‌ଗୀରଣର ସୂତ୍ରପାତ···ସୁତରାଂ ଉପସ୍ଥିତ ବୁଦ୍ଧି ବଳରେ ଉପସ୍ଥିତ ପ୍ରସଙ୍ଗର ମୋଡ଼ ଫେରାଇବାକୁ ବହୁଲି—

'ପାନ ଖଣ୍ଡେ ଦିଅ ତ···ହାଁ, ଗିଲସେ ପାଣି ଆଗ···'

ଅନ୍ତୁର ଭାବ ଅଜୀର୍ଣ୍ଣ, ଏହି ବିଶ୍ୱାସ ଜନ୍ମାଇବା ପାଇଁ କଳି ଘନ ଘନ ଢେକୁର ଛାଡ଼ିବାର ଅଭିନୟ । ଅବଶ୍ୟ ଅଜୀର୍ଣ୍ଣ ଯେ ବୋଧ କରୁ ନ ଥିଲି, ତାହା ନୁହେଁ ।

ଘରଣୀ ମୁହଁ ଛାଟିଦେଇ, ଛାଟେଖିଆ ଘୋଟକୀ ପରି ସ୍ଥାନ ତ୍ୟାଗ କଲେ ।

ମୋ' ପେଟ ଭିତରୁ ଉଙ୍କୁଟି ଆସିଲା କୁରୁଳା ହସ ।...କିନ୍ତୁ, ଅଶ୍ଵଥ !

ସେଦିନ ପାଁଚଟା ନ ବାଜୁଣୁ, ଘରଣୀର ତାଗିଦା— 'ବୁଲି ଯିବନି ?'

ମୁଁ ବୁଝିପାରିଲି—ଏ' ବାୟୁ ସେବନର ତାଗିଦା ନୁହେଁ, ହଜମବଢ଼ି ସେବନର ତାଗିଦା ।...

ମୋ'ର ମନର ବିଶେଷ ତାଗିଦା ନ ଥିଲେ ବି, ଅଭ୍ୟାସ-ବଶତଃ ବାହାରି ପଡ଼ିଲି ।...

ଚଣାବାଲାତ ନାହିଁ...ଚଣାବାଲା-ସଂଶ୍ଳିଷ୍ଟ ଅଧିକା ଖବରାଖବର ଯେ ମିଳିବ, ସେ ଭରସା ମଧ୍ୟ ନାହିଁ...ସୁତରାଂ, ସ୍ୱାସ୍ଥ୍ୟ ଭ୍ରମଣହିଁ ଯେତେବେଳେ ସାର ଉଦ୍ଦେଶ୍ୟ, ସେତେବେଳେ ସୁଦୂର ପରିକ୍ରମାକୁ ଇଛାକଲି — ଗୋଲଦୀଘି ନ ଯାଇ, ଯିବି ଓଲଟା 'ହେଦୋ' (କର୍ଣ୍ଣୱାଲିସ୍ ସ୍କୁଆର)...କିନ୍ତୁ ।...

ପାଦ ମନର ଅନ୍ତଃପୁରର ଖବର ଜାଣେ । ସେ ବାହାରର ନିର୍ଦ୍ଦେଶ ମାନିବ କାହିଁକି ?...ତେଣୁ ନେଇ ଗଲା ସିଧାସିଧି ମୋତେ କଲେଜସ୍କ୍ୱାରକୁ—ପହଁଚିଲି ଠିକଣା ଯେଗାରେ ଯେଉଁଠି ଚଣା-ବାଲାର ଆସ୍ଥାନ ।...ମୁଁ ନିଜକୁ ଅପ୍ରତିଭ ମଣିଲେ ମଧ୍ୟ, ସପ୍ରତିଭ ଦୃଷ୍ଟିରେ ଚାହିଁ ଦେଖେ—ଆସ୍ଥାନଟି ଖାଲି, କେତେ ଗୁଣ୍ଡାଏ ଇଟାର ସମାବେଶ ସେହି ସ୍ଥାନଟିକୁ ଅଧିକାର କରି ବସିଛି ।...କଥା କଣ ? ଏହି ସମୟରେ ଫାଟକ ଆଡ଼କୁ ନଜର ଯାଏ—ଦେଖେଁ, ଜଣେ କେହି ପ୍ରତୀକ୍ଷମାନ ଦୃଷ୍ଟିରେ କଲେଜ୍-ଷ୍ଟ୍ରୀଟ୍ ଆଡ଼କୁ ଅନାଇଁ ଠିଆ ...ତା'କୁ ଚିହ୍ନିଲି, ଚିହ୍ନିଲି ଭଳି ମନେ ହେଲା...ତା'ର ଦୃଷ୍ଟି ଆକର୍ଷଣ ନ କରି, ସାମାନ୍ୟ ଅଗ୍ରସର ହୋଇ ଚିହ୍ନିବାର ଚେଷ୍ଟା-କଲି...ହଁ, ମୋଟିଆତ...ତା'ର ଏ' କି ବେଶର ପରିପାଟି ହଠାତ୍ !...

ନୂଆ ଫତୁଆଟିଏ ମଡ଼ାଇଚି···ଫିକା ଲଗାଣି ତଥାପି ବେଶ୍ ମଇଳା ମୋଲଛୁଆ···ପାଦରେ ନାଗର୍ ଜୁତା···ନିମ୍ନ ଶ୍ରେଣୀର ହିନ୍ଦୁସ୍ଥାନୀ-ମାନେ ସଚରାଚର ଯେଉଁପରି ବ୍ୟବହାର କରିଥା'ନ୍ତି···ମୁଖମଣ୍ଡଳଟି ଟିକ୍‌ଣ୍ଢର ଖିଅର ବାର ହୋଇଚି···ମଥାର କେଶ ସାଉଁଳା, ଫିରେଇବା କାଟିଚି, ହେଲେ ତାହା ଫେର ମାନିନାହିଁ···ବାସନା ତେଲର ଭୁର୍ ଭୁର୍ ଗନ୍ଧ ମୋ' ନାକରେ ବାଜିଲା··· ବୋଧହୁଏ ମାଲିସ୍-ବାଲା ହ'ପଇସା ଖସେଇଛି ଆଜ ଅହାନଆ ଗର୍ଦ୍ଦାକ ଅଣ୍ଟାରୁ, (ସ୍କୁଆର୍ ଓ ମାଠମାନଙ୍କରେ, ବିଶେଷତଃ ଯେଉଁଠି ଶ୍ରମକ୍ଲାନ୍ତ ଶ୍ରମିକମାନେ ରୁଣ୍ଡ ହୋଇଥା'ନ୍ତି ବିଶ୍ରାମ ଉପଭୋଗ ନିମନ୍ତେ, ସେହିଠାରେ 'ମାଲିସ୍, ମାଲିସ୍' ବୋଲି ପାଲିଶ୍ କଣ୍ଠରେ ଡାକି ମାଲିସ୍‌ବାଲାମାନେ ନାନା ତେଲ ଶିଶିର ସାଜି ଘେନି ଗର୍ଦ୍ଦାକ ଭଣ୍ଡି ବୁଲିଥାନ୍ତି)···ଅହୁରି ମୋଟିଆ ଗୋଟିଏ କାନ୍ଧରେ ଓହଳାଇଚି ପରସ୍ତ-କରା ତୋରିଆ ନାଲି ଗାମୁଛାଟିଏ···ହାତ ତାଳୁରେ ଖଇନି ଯଥାରୀତି ଚକଟିବାରେ ଲଗିଚି।···ଝାଞ୍ଜ, ଦୁଇ, ଥରେ ଅଧେ ପାଟିକୁ ନେଇଚି କି ନା କହିପାରିବିନି···କାହିଁକି ନା, ଯେତେ ସମୟ ଗଢ଼ ଗୁଲୁଥାଏ, ତେତେ ତା'ର ହଳଣ୍ଟା ବଢିବାର ଦେଖା ଯାଉଥାଏ...ପାଟି ବୁଲୁ ନ ଥାଏ, ବରଂ ଆଖି ସଙ୍ଗେ ତା' ହାଁମେଲା ହୋଇ ରହିଥାଏ।

ଏହିପରି ଅସ୍ଥିର ଭାବଘେନି ସ୍ଥିର ହୋଇ ରହିଥିଲାବେଳେ ମୁଁ ଅଗ୍ରୁନକ ଯାଇ ତା' ଆଖି ସାମନାରେ ଆଲାଦ୍ଦିନର ଦୈତ୍ୟଭଳି ଆବିର୍ଭୂତ ହୋଇଗଲି।

'ବାବୁଜି···!' ବୋଲି ସେ ଚମକିଲା କଣ୍ଠରେ ଚିତ୍କାର କରି

ଉଠିଲ ଓ ଖର ନିଃଶ୍ୱାସଟାଏ ଘାଡ଼ି, ପୂର୍ବ ସମ୍ବୋଧନର କ୍ରମ ଧରି ଏହିପରି କହି ଯିବାକୁ ଲଗିଲ—

'ମୁଁ ଆପଣଙ୍କୁଇ ଅପେକ୍ଷା କରୁଥିଲି' ବାବୁଜି !

'ମୋତେ ?'

'ହଁ ଆପଣଙ୍କୁ !'

'ଦେଶକୁ ଯିବ ପରା ?'

'ମୋ' ଦେଶକୁ ନୁହେଁ ।'

'ଆଉ ?'

'ଚଣ୍ଡାବାଲର ଦେଶକୁ ।'

'ଚଣ୍ଡାବାଲର !···ହଠାତ୍ ?'

ସେ ବାଚନିକ ଉତ୍ତର ବଦଳରେ ପ୍ରାମାଣିକ ଉତ୍ତର ଦେବାକୁ ସ୍ଥିରକରି ତା'ର ପାଖରେ ଥୁଆ ହୋଇଥିବା ପୁରୁଣା ଚଟର ଗଣ୍ଠିଲି ଖୋଲି ସେଥି ମଧ୍ୟରୁ ଗୋଟିଏ ପ୍ୟାକେଟ୍ ବାହାର କଲା ଓ ମୋତେ ଦେଖାଇଲ ।

'ପ୍ୟାକେଟ୍‌ଟି ଦେଖି ମୁଁ ଅବାକ୍ !··· ଏଥିରେତ ସେହି ଦୋକାନର ମାର୍କା ରହିଛି, ଯେଉଁ ଦୋକାନରେ ସାହେବାଣୀ ଓ ମୁଁ ସଉଦା କରିଥିଲୁ ଭୋର ସକାଳବେଳ !'

ଦେଖାଇବା ସାଥି ସାଥି, ସେ କିନ୍ତୁ ଅନର୍ଗଳ ବକିଚାଲିଥାଏ—ମୁଁ ଯେମିତି ତା'ର ଓ ଚଣାବାଲାର ସ୍ୱତନ୍ତ୍ର ଓ ଏକକ ଭାବରେ ପରମ ଅମ୍ଳୀୟ, ଠିକ୍ ଏହି ଖିଆଲରେ—ସେ କହିଲା —

'ଚଣାବାଲାର ଖୋକା' ସାହେବାଣୀ ଅଇଣ୍ଟିକା ଆସିଥିଲା··· ଚଣାବାଲା-ନାତୁଣୀର ଜନମ ଦିନ ବୋଲି ଏଇ ଭେଟି ଦେଇ, ମୋତେ ଚଣାବାଲାର ଦେଶକୁ ବାହୁଡୁଛି...ଏଇ ନୂଆ ଫତୁଆଟି ମୋତେ କିଣି ଦେଇଛି···ବାଟ-ଖର୍ଚ୍ଚ ସକାଶେ ଦି'କୋଡ଼ି ଦଶ ଟଙ୍କା ଦେଇଛି···ଅଧିକନ୍ତୁ ଵ ଚଣାବାଲା-ନାତୁଣୀର ମିଠେଇ ଖିଆକୁ ପାଁଚ କୋଡ଼ି ଟଙ୍କା ମୋ ହାତରେ ବଳିଛି···ମୁଁ ଠିକ୍ ଠିକ୍ ଗଣି ନେଇଛି, ବାବୁଜୀ···ସବୁ ଦଶଟଙ୍କିଆ ନୋଟ୍···ଏଇ ଦେଖନ୍ତୁନା···'

ଅଣ୍ଟାରେ ଅଣ୍ଟାସୂତା କର ଧାରଣ କରିଥିବା ଗାଞ୍ଜିଆଟି ହୁଗୁଳେଇ ଖସେଇବାକୁ ଯାଉଥିଲା···ମୁଁ 'ଥାଉ, ଥାଉ' ବୋଲି ବାଧା ଦେଇ ଅବାଧ ଆବେଗରେ ପଚ୍ଚାରିଲି—

'ଚଣାବାଲା ନାତୁଣୀର ଜନମ-ଦିନ ??'

'ହଁ, ଏଇ ରଇବାର···ତା' ନ ହେଲେ କେକେ ଏତେ ଉଛନ୍ନ ହେଇ ଘରମୁହାଁ ଧାଇଁବ କାହିଁକି ?···ସେ କଥା ଓସ୍ତାଦ୍ ନ କହୁଲେବ, ମୋତେ ରହୁବ ଅଛପା ? ଚଣ ବାଲ ଗାଡରେ ଚଢିଲ୍‌ଯାକେ, ଅଉ ଗାଡ ଘୁଞ୍ଚଲାବେଲେ ବ, 'ଜନମ ଦନ···ରଇବାର' ଏଇ ଦ୍'ଟି ପଦ ଖାଲ ଘୋଷି ହେଉଥାଏ, ମୁଁ ଶୁଣିଚ।···ହଁ, ବାବୁଜୀ ! କାଲ ତୁମେ ଏ'ଠୁଁ ଚୁଲଗଲା ପରେ ପରେ ଖୋକା-ସାହେବାଣୀ ଏଠି ଆସି ହାଜର···ଚଣାବାଲର ତଲସ··· ମୁଁ ସେଇସବୁ କଥା କହୁଲ···ଶୁଣି କେମିତକା ବେସ୍ତ ହେଲ···ତା' ଦେଖି, ମୁଁ କହୁ ପକାଇଲ, ମୁଁ ତା'ର ସାନ ଭାଇ···ସେଇଠୁ ବେଦମ୍ ଖୁସୀ··· ଝିଅଟିର ବଅସ କଥା ପଚାରୁଉଚନ୍‌···'

ଅଉ ତେଣିକି ଶୁଣିବାକୁ ଆଗ୍ରହ ନ ଥିବାରୁ କଥା ଛଡାଇ ନେଇ କହୁଲ—

'ହଁ, ଅହୁର ବ କେତେ କ'ଣ ପଗ୍ଭରିଥିବେ ? ତା' ପର ଆଜ ଏଇ ସବୁ ଜାମାପାଟ ଦେଇ, ତୋତେ ପଠାଉଚନ୍ତ୍···ନା ?'

'ଜୀ···ହେଲେ, ବାବୁଜୀ···'

'କ'ଣ ?'

'ମୁଁ ଯାଉଚ କେମିତ ? ଏଇ ଦୋକାନ ଯେଗା ତ କାହାର କଣା ଖରଦା ନୁହେଁ···ପାହୁଥାନ ଖାଲ ଦେଖି, କେହୁ ଯଦ୍ ମାଡ଼ ବସେ ?'

'ମୁଁ ଅଛି !'...ଗୋଟାଏ ଠୋସରେ କହିପକାଇଲି !

'ଏତକ ମେହେର୍ବାନ, ବାବୁଜୀ...ସଲାମ । ଗାଡ଼ିର ଟାଇମ୍ ହୋଇଗଲଣି...ସଲାମ୍ ।'

କହିବା ସଙ୍ଗେ ସଙ୍ଗେ ଅଦୃଶ୍ୟ ହୋଇଗଲା । ଆଜି ମୁଁ ଚଣ୍ଡା-ସଂକ୍ରାନ୍ତ ବହୁ ଅପ୍ରତ୍ୟାଶିତ ତଥ୍ୟ ଉଦ୍‌ଘାଟନ କରି ପାରିବି, ଏହି ସମ୍ଭାବନାକୁ ଅଦୃଶ୍ୟ ନିୟତିର ପ୍ରେରଣା ବୋଲି ମନେକଲି ।

କିନ୍ତୁ ପରକ୍ଷଣରେ ମନକୁମନ କହିଲି—

'ନିୟତି ନୁହେଁ ନିଜର କୃତି । ମାନବ ଭୁଲ୍‌କରେ । ମୋଟିଆ ମଧ୍ୟ ଭୁଲ୍ କରିଚି । 'ଜନମଦନ—ରବିନାର' କାହାର ? ବେଗ୍ୱାର ! ...ଗଙ୍ଗାର ନୁହେଁ !! ଏ କଥା ଜାଣି ସୁଦ୍ଧା ମୁଁ ମୋଟିଆର ଭୁଲ ସଂଶୋଧନ କରି ନାହିଁ । ବରଂ ପ୍ରଶସ୍ତି ଦେଇଚି । କାରଣ ? ମୋର ବିଶ୍ୱାସ—ଏ ଭୁଲର ପରିଣାମ ଭଲ ହେଉ କି ମନ୍ଦ ହେଉ, ଏହି ଭୁଲ ମାଧ୍ୟମରେ ହିଁ ମୋ'ର ମୂଳ ଉଦ୍ଦେଶ୍ୟ ସାଧିତ ହେବ । ଚଣ୍ଡାବାଲିର ମର୍ମ-ବ୍ୟଥା ସଂକ୍ରାନ୍ତ ପ୍ରକୃତ ତଥ୍ୟ ମୁଁ ଉଦ୍‌ଘାଟନ କରି ପାରିବି !...ବିଜ୍ଞାନ ଆଜି ରକେଟ୍ ପରେ ରକେଟ୍ ଉଦ୍ଭାବନ କରି ବ୍ରହ୍ମାଣ୍ଡ ଭେଦରେ ତତ୍ପର । ଏହାର ପରିଣତି ଉଦ୍‌ବେଗମୟ । ତଥାପି ବିଜ୍ଞାନ ଅନୁଦ୍‌ବିଗ୍ନ । ପୃଥିବୀ ରହୁ କି ନ ରହୁ, ମାନବ ଜାତି ମୂଳପୋଛ ହେଉ କି ନ ହେଉ, ବିଜ୍ଞାନ

ରକେଟ ମାଧ୍ୟମରେ ବିଶ୍ୱ-ଶକ୍ତିର ମୂଳାଧାରକୁ ପ୍ରତ୍ୟକ୍ଷୀଭୂତ କରି ପାରିବ, ଏହାହିଁ ତା'ର ଧ୍ରୁବ ବିଶ୍ୱାସ ।'

ମୁଁ ମଧ୍ୟ ସେହିପରି ଅବିଚଳ ବିଶ୍ୱାସ ଘେନି ଆଶାଯୁକ୍ତ ଚିତ୍ତରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲି ।

ଆହାର ସମୟ ଉପସ୍ଥିତ ହେଲା । 'ଭାତ ଭୋଜ'—ଏହି କଥା ଜଣାଇ ଗୃହିଣୀଙ୍କୁ ସମ୍ବୋଧନ କଲି । ଗୃହିଣୀ ମୋ'ର ଆହାର ଅନୁଷ୍ଠାନ ଉଦ୍‌ବୋଧନ କରି ଯେଉଁ ଆହାର୍ଯ୍ୟ ପରିବେଷଣ କଲେ, ତାହା ଗ୍ରହଣୀ ରୋଗୀର ପଥ୍ୟ କହିଲେ କହିଁକି ହେବନାହିଁ । ଏହାପରି ଚକିତ ଚକ୍ଷୁରେ ଭକ୍ତି ଭଙ୍ଗୀରେ ଗୃହିଣୀ ମୁଖକୁ ଚାହିଁଲି ।

ଗୃହିଣୀ ମୃଦୁ ମୃଦୁ ହସି କହିଲେ—ରୋଗୀ ତ ଆଉ ନିଜ ରୋଗ ବୁଝେନି···ଖାଲି ଅଖାଦ୍ୟକୁ ମନକରେ । ଏ ଅଜୀର୍ଣ୍ଣ ରୋଗ, ଭଲ ନୁହେଁ ।'···ଏହି 'ଅଜୀର୍ଣ୍ଣ' ପଦକରେ କିପରି ଗୋଟାଏ ଅଜୀର୍ଣ୍ଣ-ଭାବ ଉପୁଜିଲା, ଆଉ ମୋ'ର ଅମ୍ଳ-ସବଳତାରେ ଉପୁଜାଇଲା ସନ୍ଦେହ । କିନ୍ତୁ ଗୃହିଣୀ ନିଃସନ୍ଦେହ ଚିତ୍ତରେ ଆପଣା ପୂର୍ବୋକ୍ତିର କ୍ରମ ଧରିକହି ଯିବାକୁ ଲାଗିଲେ—ଅବଶ୍ୟ ଅନୁନୟ କଣ୍ଠରେ ଏଥର— 'ତୁମେ ତ ଆଉ ବାଳ ନୁହଁ ଯେ ଅବୁଝ ହେବ···ଖାଇ ଦେଲ ।'...'ଛି, ମୋ' ଧନମଣିଟି ପରି'—ଏତିକ ଉଚ୍ଚାରଣ ନ କଲେ ବି, ତାଙ୍କର ଅନୁଚ୍ଚ ଓଷ୍ଠ-ସ୍ପନ୍ଦନରୁ ଅଲିଅରପଣିଟି ବେଶ୍ ସୂଚିତ ହେଉଥିଲା । ମୁଁ ଯଥାକଥା କରି ସେହି ଭୋଜନ

ବଢ଼ାଇଥିଲେ ମଧ୍ୟ, ଗୃହିଣୀ ଯଥାତଥା ନିର୍ବିକାର, ଏହିପରି ଜଣା-ଗଲେ । ···ତାଙ୍କର ଧ୍ରୁବ ଧାରଣା ଯେ ମୋ'ର ରୋଗ ବଢ଼ୁଛି, ସେଥିପାଇଁ ରୋଗୀ-ପଥ୍ୟ ଭୁଞ୍ଜିବାରେ ଏମିତ ବହୋଲିଆ-ପଣ କରୁଛି ।

'ସତେ କ'ଣ ମୁଁ ରୋଗେଇଛି ? ଆଜିର ଦୁନିଆରେ ସତେ କ'ଣ ବିଜ୍ଞାନୀ ବା ବିଜ୍ଞାନର ନିରଙ୍କୁଶ ସମର୍ଥକ ଯେଉଁମାନେ, ସେମାନେ ବିକାରଗ୍ରସ୍ତ ରୋଗୀ-ମନର ଅବିକୃତ ପରିଚୟ ବାଢ଼ୁଛନ୍ତି ?'

ଏହିପରି ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ ନିଦେଇ ପଡ଼ିଥିଲି ସତ, କିନ୍ତୁ ନିଦ୍ରା ଯେ ନିର୍ଦ୍ୱନ୍ଦ ହୋଇ ନ ଥିଲା, ଏହା ବେଶ୍ ବୁଝି ପାରିଥିଲି ପରବର୍ତ୍ତି ଉକ୍ତିରୁ ସକାଳେ ଉଠି ।

ଗୃହିଣୀ ମୋ' ଘର ଓଳାଉ ଓଳାଉ ମୋତେ ଶୁଣାଇ ଶୁଣାଇ କହିବାକୁ ଲାଗିଲେ—'କାଲି କ'ଣ ଗୁଡ଼ାଏ ବିଳବିଳଉଥିଲ ଯେ ? ···'ବୈଦ୍ୟ···ଗଙ୍ଗା···ରୋଗ'···ତା' ପର ସିଧା ସଳଖ ଠିଆହୋଇ-ଯାଇ କହିଲେ—'ତୁମେ ଅଜ ସେବେଳ ବୁଲିଗଲ ବେଳେ, ବନିକ ଥରେ ଦେଖି ଆସିବତ ! ପାହାନ୍ତିଆ ସ୍ୱପ୍ନ—ପରକୁ ଦେଖିଲେ, ଘରକୁ ହୁଏ ପରି !'

ମୁଁ ହସିବ ନା କାନ୍ଦିବି ? ସତକୁସତ ସେଦିନ ମୋ'ର ବାହଳା-ବକା ଚକା ଘେନି ମୁଁ ଯେତେ ଲଜ୍ଜିତ ହୋଇ ନ ଥିଲି, ତେତେ

ଲକ୍ଷିତ ହୋଇଥିଲ ଗୃହୁଣୀର ଏହିଭଳି କୁସଂସ୍କାରଚ୍ଛନ୍ନ ମତ ଗତି ଦେଖି । ମୁଁ ସଂସ୍କାରକାର ଭୂମିକା ଗ୍ରହଣ କରିବ, ଏହି ଉଦ୍ଦୀପନାରେ ମାତିଗଲି···ଲଜ୍ଜା ସଂକୋଚ ତ୍ୟାଗକରି, ଗୁରୁ ଗମ୍ଭୀର କଣ୍ଠରେ ପଚାରିଲି—'ଅଜାର ଖାଇବା ବ୍ୟବସ୍ଥାଟା ରୋଗୀର ପଥ୍ୟ, ନା ଆଉ କିଛି···କୁହତ ?'

'ରୋଗୀର ପଥ୍ୟ କାହିଁକି ବା ?···ରୋଗ ମୁହଁରେ ଝାଡୁ !' ଏତକ କହିବା ସଙ୍ଗେ ସଙ୍ଗେ ଗୃହୁଣୀ ତିନି ଥର ଝାଡ଼ୁଟିକୁ ଘରର ଚଟାଣରେ ଚଟ୍ ଚଟ୍ କରି ପିଟିଦେଲେ ; ତା' ପରେ ଭକ୍ତି-ଗଦ୍‌ଗଦ୍ କଣ୍ଠରେ କହିଲେ—'ଭାଗବତରେ କହିଚି ପରି—ମନ ମୋହର ଅଟେ ଗୁରୁ । ହିଦବ ତୁ କେତେ ପଚାରୁ ।'···ସେଇଛୁଣି ପୁଣି ସ୍ୱର ବଦଳାଇ ସହଜଭାବ ଧାରଣ କରି ସହଜ ଭଙ୍ଗିରେ କହିଲେ— 'ତୁମେ ସହଳ ସହଳ ଗାଧୋଇପଡ଼ତ ।'···

ତେଣିକି ଆଉ ବାକ୍ୟର ଅପଚୟ ନ କରି, ସମ୍ମାର୍ଜନୀହସ୍ତା ଗୃହୁଣୀ ସପୁଚ୍ଛ ଲଞ୍ଜାଡରି ଭଳି ଦୃଷ୍ଟି ପଥରୁ ଅବଲୁପ୍ତ ହୋଇଗଲେ ।

ମୁଁ ସେହି ଅଗୋଚରୀଭୂତ କଷ ପଥକୁ ଅନାଇ ହୃଦୟଙ୍ଗମ କରିବାକୁ ଲାଗିଲି ଅଧୁନାତନ ଜ୍ୟୋତିର୍ବିଜ୍ଞାନୀ କର୍ତ୍ତୃକ ବାସ୍ତବ ଓ କଳ୍ପନାର ଅଭାବନୀୟ ସମନ୍ୱୟୀକରଣ ପ୍ରଚେଷ୍ଟାର ସାର୍ଥକତା ।···ସେହି ପରିପ୍ରେକ୍ଷିରେ ବିଗତ ରଜନୀର ଘଟଣାକୁ ନେଇ, ପାଂଚ ମନକୁମନ କହିଲି—କାଲି ରାତିରେ ଯେଉଁ ଅହାର୍ଯ୍ୟ ଗୃହିଣୀ ପରିବେଷଣ

କରିଥିଲେ, ସେଥିରେ ସାଧାରଣ ନିୟମର ବ୍ୟତିକ୍ରମ ତ ବିଶେଷ କିଛି ନ ଥିଲା ।—ତେବେ ସେପରି ଲକ୍ଷ୍ୟ କରିବାର କାରଣ ? ସ୍ୱାଭାବିକ ବସ୍ତୁକୁ ଅସ୍ୱାଭାବିକ କରି ଟିଆ କରିଥାଏ ପ୍ରତିଫଳନକାରୀ ମାଧ୍ୟମ···ଏ' କ୍ଷେତ୍ରରେ ମନଯେ ସେହି ମାଧ୍ୟମ, ଏଥିରେ ଆଉ ସନ୍ଦେହ କ'ଣ ?'

ସେଦିନର ଖିଆପିଆଟା ବେଶ୍ ଚଉକସ୍ ହୋଇଥିଲା ।··· ଖାଦ୍ୟର ରକମ ଫେର୍ ଯେ ବେଶୀ କିଛି ଥିଲା, ତାହା ନୁହେଁ । ତେବେ ମୁଁ ଯାହା ଯାହା ଖାଇବାକୁ ସୁଖପାଏଁ, ସେଥିର ଅଭାବ ନ ଥିଲା ।

ଗୃହିଣୀ ମୋ'ର ଖିଆ ଦେଖି ଖୁସୀ···ମୁଁ ବି ଖାଇ ଖୁସୀ ।

ସଦାଦିନେ ମୁଁ ଯେଉଁ ସମୟରେ ବୁଲି‌ବାହାରେ, ତା'ର ବହୁ ପୂର୍ବରୁ ସେଦିନ ବାହାରି ପଡ଼ିଲି ।···ଗୃହିଣୀ ଆପତ୍ତି କଲେନାହିଁ କି ଅପ୍ରତିଭତା ପ୍ରକାଶ କଲେ ନାହିଁ ।···ଅନୁମାନ—ମୁଁ ବଜାର ଆଗ ଦେଖି ଯିବି, ତା'ପର ପଥ ଲେଉଟାଣି ଯଥା ସମୟରେ ଗୋଲଦିଘିକୁ ବୁଲି ଆସିବି, ଏହାହିଁ ସେ ଧରି ନେଇଥିଲେ । ଅନୁମାନ ନୁହେଁ, ଅନୁମୋଦିତ ସତ୍ୟ—କାରଣ ସେ ଖୁସୀ ହୋଇ ବରଂ ମୋ' ହାତରେ ପଚାଶ ନୂଆ ପଇସା ଧରାଇ ଦେଇଥିଲେ ଓ ବାର ବାର କହି ତାକିଦ୍ କରି ଦେଇଥିଲେ ଯେ ଚଣା-ଚନାବାଦାମ ଯେମିତି ଭୁଲି ନ ଯାଏ ।···ମୁଁ ହସି ହସି କହିଥିଲି—'ଚଣାବାଲା ଆଜି ଦେଶରେ' ।···'ମ, ସେଇ ଚଣାବାଲା ଠେଇଁ କ'ଣ ଉପର ଲିଖ

ମରିଚ···ବୂନ୍ଦିଆରେ କ’ଣ ଆଉ ଚଣାବାଲା ନାହାନ୍ତି ?’···ଗୃହିଣୀର ଏହି ପ୍ରତି-ଉକ୍ତିଟି, ମୁଁ ଯେ କଳ୍ପନା ଆକାଶରେ ଛିନ୍ନସୂତ୍ର ଘୁଡ଼ି ପରି ଭାସି ବୁଲୁଚି, ବାସ୍ତବ-ଲଟେଇ ସଙ୍ଗେ ମୋ’ର ଯୋଗସୂତ୍ର ନାହିଁ,—ଏହି ଚେତନା ମୋ’ ଭିତରେ ସଂପୂର୍ଣ୍ଣ ସଜାଗ କରିଦେଲା । ମୁଁ ସୂତ୍ରଯୁକ୍ତ ଘୁଡ଼ି ପରି ଚଞ୍ଚଳ ହୋଇ ଉଠିଲି, ଏବଂ ଅସ୍ୱସ୍ଥ ମନରେ ଅଚଞ୍ଚଳ ଘୁଡ଼ି ପରି ଅଭିଯାନ ପଥରେ ଅଗ୍ରସର ହେଲି ।

ମୋ’ର ଉଦ୍ଦେଶ୍ୟ ଥିଲା ଠିକ୍ ବିପରୀତ -ଆଗ ଗୋଲଦୀଘି ପରିଭ୍ରମଣ, ତା’ ପରେ ବନ ପରିଦର୍ଶନ । ଯାହା ହେଉ ଦୁଇଜଣଙ୍କ ଚିନ୍ତାଧାରା ଓ ଦୁଇଟି କାର୍ଯ୍ୟର ସାମଞ୍ଜସ୍ୟ କପରି ବିହିତ ହେବ, ତା’ର ବାଟ ବେଶ୍ ପ୍ରସ୍ତୁତ କରି ନେଲି ଏହିପରି ଯୁକ୍ତିର ଆଶ୍ରୟ ନେଇ—

ଅଜିର ଗୋଲଦୀଘି ଭ୍ରମଣ କେବଳ ନାଛକ ଭ୍ରମଣ ଉଦ୍ଦେଶ୍ୟରେ ନୁହେଁ, ସେଥିସଙ୍ଗେ ଜଡ଼ିତ ରହିଚି ନିର୍ଦ୍ଦିଷ୍ଟ ସମୟ ସାପେକ୍ଷ ଗୋଟିଏ ଦାୟିତ୍ୱପୂର୍ଣ୍ଣ କର୍ତ୍ତବ୍ୟ ପାଳନ । ସୁତରାଂ ଗୋଲଦୀଘିକୁ ଅଗ୍ରାଧିକାର ହେଲି ଓ ସେଠାରେ ମୁଁ ପହଞ୍ଚି ଦେଖେଁ—ଚଣାବାଲର ଅସ୍ଥାନ ନିକଟରେ ଆଉ ଜଣେ ଚଣାବାଲା ଲଙ୍ଗ୍ ପୁଙ୍ଗ୍ ହେଉଚି···ତା’ର ମୁଣ୍ଡର ପଶରା ଓହ୍ଲାଇ, ସେହି ସ୍ଥାନ ନିକଟରେ ବସିବ ବୋଲି । ଏହି ସମୟରେ ତା’ ସମ୍ମୁଖରେ ଉପସ୍ଥିତ ହୋଇଗଲି । କେବଳ ତାକୁ ଧମକାଇ ସେ ସ୍ଥାନରୁ ବିଦାୟ କଲିନାହିଁ, ଗୋଲଦୀଘିର ପହରିବାଲକୁ କିଛି ପାନଖିଆ ଧୂଆଁଖିଆ ଦେଇ, ନିରାପତ୍ତାର ବନ୍ଦୋବସ୍ତ କରି ନିଶ୍ଚିନ୍ତ ହେଲି । ହେଲସୁଁ ଅସି ନ ଥିଲେ ଯେ ଗୋଟାଏ ବିଭ୍ରାଟ ଘଟି ଯାଇଥାନ୍ତା, ଏଥିପାଇଁ ଧନ୍ୟବାଦ

ଜଣାଇଲି ମୋ ଇଣ୍ଷ୍ଟ୍ରିଷ୍ଟନ୍ ଅର୍ଥାତ ସ୍ୱଭାବ-ଧର୍ମକୁ, କି ଗ୍ରହ୍ନସ୍ଥ ବା ଦୈବାକତାକୁ, କି ସ୍ୱୟଂ ଭଗବାନଙ୍କୁ— ମୋ'ର ଖିଅଲ ନାହିଁ ।

ମୋ'ର ଅନ୍ୟ କର୍ତ୍ତବ୍ୟ—ବନ୍ନ-ପରିଦର୍ଶନ । ରତ ରତ ଦିନ ଥାଉଁ ଥାଉଁ ପଦବ୍ରଜରେ ଅଗେଇଲି ବନ୍ଧୁବଙ୍କାର ଅଭିମୁଖେ । ମେଡିକେଲ କଲେଜ, ଯା'କୁ ମାଟିଆ କଲେଜ ବୋଲି ଆଖ୍ୟା ଦେଇ-ଛନ୍ତି ଆମର ଲୋକେ, ତା'ରି ବଡ଼ ଫାଟକ ସାମନାରେ ଉପସ୍ଥିତ ହୋଇ ଗଲି—ସେଠାରେ ଅନ୍ୟାନ୍ୟ ଫଳବାଲାଙ୍କ ଭିତରେ ଜଣେ ବିକୁଛି କଦଳୀ ।···ବେଶ୍ ପୁରୁଷାଳିଆ ମୋଟା ମୋଟା କାଠିଆ ରମ୍ଭା ।···ଫେଣା ଫେଣା କରି ସଜାଇ ରଖିଚ ।···ଭାରି ଲୋଭ ହେଲା,ସେଇଥିରୁ ଫେଣାଏ ବାର-ଅଣାରେ ମୁଲେଇ,ଓହଲେଇଲି ।··· ଆଉ ପଇସା ଥିଲେ, ଅଦ୍ଭୁର ଫେଣାଏ କିଣିଥା'ନ୍ତି ।···ଯା' ହେଉ ଏ'ଭଳି ଚିଜ ପାଇ ବନ୍ନ ଯେ କେତେ ଖୁସୀ ହେବ, ଆଉ ବନ୍ନର ମା (ମୋ'ର ଖୁଡ଼ୀ) ମଧ୍ୟ, ମୁଁ ସେହି ଆନନ୍ଦରେ ବିଭୋର ହୋଇ, କେମିତି ଗନ୍ତବ୍ୟସ୍ଥାନରେ ପହଞ୍ଚିବି ବୋଲି ବାଟ ଦିଶିଲା ନାହିଁ ମୋତେ ।

ବନ୍ନ-ଘରର ସଦର ଦ୍ୱାରଦେହଳୀରେ ଗୋଡ ଦେଉଣୁ ନ ଦେଉଣୁ 'ବନ୍ନ, ବନ୍ନ' ବୋଲି ଡାକି ଭିତରକୁ ପଶିଗଲି, ବନ୍ନ ମା ତୁଳସୀଚଉଁରା ମୂଳେ ସଞ୍ଜବତୀ ଦେଖାଉଥିଲା, ମୋ'ର ଅତ୍ର୍କିତ ଆଗ-ମନକୁ 'ବାବା' ବୋଲି ବିସ୍ମୟ ସୂଚକ ସମ୍ବୋଧନ ଦ୍ୱାରା ଅଭିନନ୍ଦିତ କରି ଅନତିବିଳମ୍ବରେ ବନ୍ନକୁ କାଖେଇ ଆଣି ସାମ୍ନାରେ ହାଜର

ହେଲ ।···ମୁଁ ବି କାଳକ୍ଷେପ ନ କରି କଦଳୀ-ଫେଣାକ ବନ୍ଧାର ବଳଠକ ହାତ ମୁଠାରେ ମୁଠାଇ ଦେବାର ଉଦ୍ୟମ କଲି । ଅନ୍ୟତ୍ର ବନ୍ଧ-ମାର ମନୋରଞ୍ଜନ ନିମନ୍ତେ ତା' ମା'ର ସବୁ କଥା ଫିଟେଇ କହିଲି ଓ ତା' ବାପର କଦଳୀ-କଣା ବାହାବୂସ୍ଥାପଣ ଦେଖେଇ ହେଲି ।...ଏଥିର ଅଭିନନ୍ଦନ ଜଣାଇ ଖୁକ୍କା (ବନ୍ଧ-ମା) ହସି ହସି କହିଲ—'ବାବା !···ତୁମେ କ'ଣ ମ ?... ବନ୍ଧ ପାଇଁ ଅଣିଛ କଦଳୀ ?···ତୁମେ ସିନା କଦଳୀ ଭଲପାଅ...'

'ଏଁ··· !'—ଏହି ଅତଙ୍କ-ସୂଚକ ଶବ୍ଦଟି ଛଡ଼ା ଆଉ କୌଣସି କଥା ମୋ ପାଟିରୁ ବାହାରିଲ ନାହିଁ ।...ଖୁକ୍କାର ଓଠରୁ ହସ ଉଡ଼ିଗଲ, ଅଖିର ପତା ପଡ଼ିଲନି, ଉଦଗ୍ର ଗୃହାଣୀ ମ୍ଳାନ ଦେଖାଗଲ ।

ଖୁକ୍କା ବାପ-ଅନ୍ତପ୍ରାଣ ।···ଅନ୍ତରେ ଅନ୍ତରେ ବାପର ପ୍ରାଣର ବେଦନା ବୁଝିନେଲ । ତା' ମା ପାଖରେ ତା' ବାପ ଯେମିତ ଅପଦସ୍ଥ ନ ହୁଏ, କୁଟୁମ୍ବ ଘରେ କୁଟୁମ୍ବର ମାନ ବଜାଏ ରୁହେ,— ସେହି ସୂତ୍ର ଧରି ସେ କହିଲ 'ମୋ'ର ଭାରି ଶ୍ରଦ୍ଧା ଥିଲ ଏ' କଦଳୀକି ବାବା, ମାକୁ କହିବ···' ଆଉ ତେଣିକି ନ କହି, କହିବା କଥା ଉହ୍ୟ ରଖି, ଗୋଟାଏ କି ଦୁଇଟା କଦଳୀ ନିଜେ ଛଡ଼ାଇ ଅଗ ଖାଇନେଲ, ବନ୍ଧର ମୁହଁରେ ବି ସେଥିରୁ ଟିକିଏ ଗୁଞ୍ଜିଦେଲ, ବାକୀତକ ଅପର ନାତ ନାତୁଣୀଙ୍କ ଭିତରେ ବାଣ୍ଟି ଦେଲ ।···ପିଲଏ କି ଖୁସି !···ମା କି ଖୁସି ! କିନ୍ତୁ ମୁଁ ?... 'ନା, ନା, ବନ୍ଧ ପାଇଁ···' ଏହାପରି ଆକୁତିଅବେଗ-ଚଞ୍ଚଳ ହୋଇ

ଉଠିଲା କ୍ଷଣି, ଖୁକା ତା’ର ମା’କୁ ବଳି ଉଗ୍ର ମୂର୍ତ୍ତି ଧାରଣ କଲା ଓ ନିଗ୍ରହବ୍ୟଞ୍ଜକ କଣ୍ଠରେ କହିଲା ‘ତୁମେ ତୁନି ହୋଇ ବସତ, ବାବା’·· କଥାରେ ଖାଲି କ୍ଷାନ୍ତ ହେଲନାହିଁ.. ଯଥାର୍ଥରେ ମୋତେ ବସାଇ ଦେଲା ଜୋରକରି ନିଜ ପଲଙ୍କ ଉପରେ...ବାକ୍ସ ଫିଟାଇ ପଚାଶ୍‌ଟି ନୁଆ ପଇସା କାଢିଲା ଓ ଲଜେନ୍‌ସ୍‌, ବିସ୍କୁଟ୍ ବଡ଼ ମନୋହର ଦୋକାନରୁ କିଣି ଆଣିଦେବାକୁ ଫରମାସ କରି ବଡ଼ ନାତିଟାକୁ ପଠାଇ ଦେଲା । ଏଥିରେ ମୋ’ର ଯେ କି ମୃତ୍ତ କାଠ ଶାସ୍ତି ହେଲା, ତା’ ଜାଣିଲେ ମଧ୍ୟ, ମାନସିକ ଅସ୍ୱସ୍ତି ଭୋଗିବାର ଅବସର ନ ଦେଇ, ଝିଅ କହିଲା—‘ମୋ’ର ପଚିଶ ନୁଆପଇସା ତୁମଠେଇଁ ପାଉଣା ରହିଲା, ବାବା’··· ମୁଁ ଫାଶୀ-ମୁକ୍ତ ଅସାମୀ ଭଳି ବେ-ଫାଶ କଣ୍ଠରେ କହିପକାଇଲି—‘ଇଁ ହଁ କାଲନ୍ତର ସହିତ ତୋ’ର ପାଉଣା କାଲିସୁଦ୍ଧା ହେଲା ଟଙ୍କାଟିଏ ।’

ଖୁକୀ ଗପ ନ ଶୁଣି ଛାଡ଼ିବ ନାହିଁ । ସେଥିପାଇଁ ଷ୍ଟୋଭ୍ ଜାଳିଲି, ଗପ ତିଆରି କରୁ କରୁ ଚଣାବାଲ-କଥା ପକେଇଲି । ବିନାକୁ ମୁଁ କୋଳରେ ବସାଇଥିଲି, ସେଇଥି ଯୋଗୁଁ ସେଇ କଥା ମନେ ପଡିବାରୁ ହେଉ, କି ମୁଁ ଯେଉଁ ଫେରରେ ପଡ଼ିଥିଲି, ସେଥିରୁ ମନ ଫେରାଇବାକୁ ହେଉ, ତାହା ଏକମାତ୍ର ଖୁକୀକୁ ଜଣା । ମୁଁ କିନ୍ତୁ ଚଣା-ବାଲର ପ୍ରସଙ୍ଗ ପଡିବାରୁ ଭାବାବେଗରେ ହେଲି ଉଲ୍ଲଙ୍ଘ...ଉପସ୍ଥିତ ଅଜା-ନାତୁଣୀ-ଭେଟ ପ୍ରାସଙ୍ଗିକ ସନ୍ଦର୍ଭ ସାନନ୍ଦେ ବଖାଣିବାକୁ ଲାଗିଲି·· ଅଧୁରା ଶିଆଲ ନାହିଁ, କେତେବେଳେ ବିନାର ଦୁଇ କାଖତଳରେ ହାତ ପୂରାଇ, ଟେକି ଧରି, ତାକୁଇ ଗୁହାରି କହିବାକୁ ଲାଗିଛି—‘ଆରେ ଗଙ୍ଗା, ତୋର ଜନମ ଦିନ ରଇବାର ନ ହେଲେ ବି, ରଇବାର’ !···

ଖୁକ୍କା ବ କେମିତ ?···ମୋ'ର ସେହ୍ଭ ଖିଅଲକୁ ନ ଭାଙ୍ଗି ବରଂ ଉଖାରିଥିଲ ଏହିପରି କହି—'ହଁ, କେତେ ଅଧୁରି କହୁଥିବ— ଏ' ଜନମ ଦିନ ମୁଁ ପାଳିବ ଗାଁରେ ନୁହେଁ, ବାଲିଗଞ୍ଜିରେ ।'

'ସେଇୟା ସେ କରିବ, ଝିଅ···ସେଇୟା ସେ କରିବ···'

'ନ କର ଉପାୟ କ'ଣ ?···'ପୋଲିଶ', 'ଶାମବଜାର' ଏ' ଗୁଡ଼ିକ କ'ଣ ଖାଲି ଶବ୍ଦ ? ସାକ୍ଷାତ୍ ଶବ୍ଦ-ବ୍ରହ୍ମ !'

'ଖୁକ୍କା !···ଏଇ ନାତୁଣୀଟି କ'ଣ ଚଣାବାଲର ମର୍ମ-ବ୍ୟଥାର ଅସଲ୍ କାରଣ ନୁହେଁ ବୋଲି ଏ' ଯାଏ ତୋର ବିଶ୍ବାସ ?'

'ବିଶ୍ବାସ କଲେବି, 'ପୋଲିଶ୍', ଶାମବଜାର' ସବଳିତ ପୃଷ୍ଠାଟି ନ ଜାଣିବା ଯାଏ, ସେପରି ବିଶ୍ବାସର ମୂଲ୍ୟ କ'ଣ ?···କୁହତ, ତୁମେ ଚଣାବାଲ ସଂକ୍ରାନ୍ତ ଅଜା-ନାତୁଣୀ ଭେଟ ସଂପର୍କରେ, ଯେଉଁ ଭବିଷ୍ୟର ଅବଧାରଣା କରୁଚ ବର୍ତ୍ତମାନ ତାହା ନିଛକ ଖିଅଲ ଛଡ଼ା ଅଧିକ କ'ଣ ?···ଏହାର ପ୍ରାମାଣିକ ମୂଲ୍ୟ ଅଧଲାଟିର ଅଛି ?... ସତାରକର, ମୋଟିଆ ଫେରି ଅସି କ'ଣ କହୁଚ ଅଗ ଦେଖ ।'

'ଠିକ୍, ଝିଅ ।'

ଏତକ କହୁବାମାତେ, ମୋର ଦେଖିଅଲ ଭାବ ଅପସରିଗଲା··· ମୁଁ ବାସ୍ତବତାର ସ୍ପର୍ଶ ଅନୁଭବ କରିବାକୁ ଲାଗିଲି ଅଙ୍ଗେଅଙ୍ଗେ··· ସେହି ସ୍ପର୍ଶକୁ ଆହୁରି ନିବିଡ଼ତର କରିଦେଲା ବନ୍ଧୁର କନ୍ଦନ ଧ୍ୱନି, ଖୁଙ୍କାର ଗୁ ପରିବେଶନ, ସବୁରି ଉପରେ ଅଜା-ନାତୁଣୀର ଏକତ୍ର ଭୋଜନ—ଜଣକର ଗୁ-ଚୁମିବା, ଅନ୍ୟ ଜଣଙ୍କର ଲଜେନ୍ସ ଚୁଚୁମିବା !

ରାତି ଘଡ଼ିକେ ଘରକୁ ଲେଉଟିଲି । ଘରଣୀ କେବଳ 'ବନ୍ଧୁ କେମିତି ଅଛି ?' ଏତକ ପଚାରି କ୍ଷାନ୍ତ ହେଲେ···ମୁଁ ଅବଶ୍ୟ କୁଶଳ ସମାଚାର ଦେଲି···ବନ୍ଧୁର ଉପଢୌକନ ବିଷୟରେ ପ୍ରଶ୍ନ କଲେ କି ଉତ୍ତର ଦେବି, ସେଥିର ଜଣ୍ଡୁ (ସାର) ଖୁଙ୍କା ମୋତେ କୋଠ୍ ଦେଇଥିଲା, ଆଉ ମୁଁ ତାହା ମୁଖସ୍ଥ କରିଥିଲି, ହେଲେ ବିଲ୍‌କୁଲ୍ ହଜମ୍ କରିପାରି ନ ଥିଲି...ଭାଗ୍ୟକୁ ଗୃହିଣୀ ସେ ପ୍ରଶ୍ନର ନାମଗନ୍ଧ ନ କରିବାରୁ, ମୁଁ ନିଶ୍ଚିନ୍ତ ହେଲି ସତ, କିନ୍ତୁ ନିଶ୍ଚିନ୍ତ ହୋଇ ରହି ପାରିଲି ନାହିଁ ଭାଗ୍ୟାନ୍ୱେଷୀ, କି ଭାଗ୍ୟ ଦ୍ୱେଷୀପରି ।···କାରଣ—

ଗୃହିଣୀର ଏହି ଅଭୂତପୂର୍ବ ମନୋଭାବ, ଅର୍ଥାତ ଖାମଖିଆଲି ଗୃହ-ସ୍ୱାମୀ ପ୍ରତି ଅଖଣ୍ଡ ବିଶ୍ୱାସ ଓ ଏକନିଷ୍ଠତା—ମୁଁ ଯେ ନିଜକୁ ନିଜେ ଫାଙ୍କୁଚି—ନିଷ୍ଠା ଏଇ କଥା ମୋ' ମନରେ ଉପୁଜାଇ ଦେଲା··· ଏଣିକି ମୁଁ ଫାଙ୍କିବାଜ ହେବିନି ଏହି ସତ୍ୟରେ ହେଲି ସଂକଳ୍ପବଦ୍ଧ ।

କେବଳ ସେତକ ନୁହେଁ ; କାୟମନୋବାକ୍ୟରେ ଏହାର ଅନୁଶୀଳନ କରିବି, ଏଥିପାଇଁ ଚଣାବାଲ ସଂକ୍ରାନ୍ତ କପୋଳକଳ୍ପିତ

ଆଲୋଚନାରୁ ଆପଣାକୁ କଲି ପ୍ରତାରିତ । ମୋଟିଏ ଫେର ନ ଆସିବା ଯାଏ, ଚଣାବାଲିର ଅସ୍ଥାନର ତତ୍ତ୍ୱାବଧାରକ ହୋଇ ରହିବି, କେବଳ ଏହି କର୍ତ୍ତବ୍ୟକୁ କଲି ଅନ୍ତର୍ବର୍ତ୍ତୀ କାଳର ଗୃହୀତାଶୁଣ ବ୍ରତ ।

ଦିନ ଗଣି ଚାଲିଲି···ମୋଟିଏ ଚାଲିଯିବାର ଅଙ୍କକ ତିନି ଦିନ ହେଲା...

ଅଙ୍ଗୁଳି ରେଖା ସାହାଯ୍ୟରେ ଗଣି ଏହାହିଁ ଠିକ୍ କରୁଚି, ଏତିକି-ବେଳେ ସଦର ଦ୍ୱାରରେ କଡ଼ା ଚାଳନାର ଠକ୍ ଠକ୍ ଶବ୍ଦ···ସରଚାତ ଶବ୍ଦ···ଡାକବାଲା··· ଉଠିଗଲି ··· ରେଜିଷ୍ଟ୍ରାର୍ଡ ଚିଠି ··· ତାରିଖଟା ଖିଆଲ ନ ଥିଲା···ପତ୍ରର ସହି କରିଦେଲି···ଚିଠି ନୁହେଁ···ବେଙ୍ଗାର-କେନ୍ଦ୍ର ଅଫିସର ଚେକ୍··· ଥୋଇଦେଲି···ତା'ପର କ'ଣ ସନ୍ଦେହ ହେଲା, ତାରିଖ ସଙ୍ଗେ ବାର ମିଳାଇବାକୁ ଗଲି ··· କେଲେଣ୍ଡରକୁ ଭରସା କରି ତରଫି ଦେଖେଁ—ଶନିବାର ! ···ତେବେତ ମୋଟିଏ ଯିବାର ଗୁରୁଦିନ ହେଲା···ବୁଧବାର ସେ ଯାଇଛି, ଏଥିରେ ଅଦୌ ଭୁଲ ନାହିଁ···ଯାହାହେଉ, ରବିବାର ସେ ନିଶ୍ଚୟ ଫେରିବ, ଚଣାବାଲିର ଅଗରୁ ନ ହେଉ, ଚଣାବାଲିର ସାଥିରେ ଅବଶ୍ୟ···

କିନ୍ତୁ ମୋ'ର କି ମତିଭ୍ରମ ! ଓଃ ମନର·ଫାଙ୍କିକୁ ଯେ ଆଖି ଧରାଇ ଦିଏ, ଏହି କ୍ୟାଲେଣ୍ଡରହିଁ ତା'ର ସାକ୍ଷୀ ।

ଆଚ୍ଛା, କାର୍ଯ୍ୟତଃ ଆଖିଦେଖାରେ କ'ଣ ଫାଙ୍କି ନ ଥାଏ ? ଆଖି ସବୁବେଳେ ନିର୍ଭୁଲ ? ମୁଭି, ଅର୍ଥାତ୍ ଚଳଚ୍ଚିତ୍ର

କଣ ? ଛବିଗୁଡ଼ିକ ନିର୍ଦ୍ଦୋଷ ଭାବରେ ଗୁଳିବୁଲି, କଥାବାର୍ତ୍ତା କରିଥା'ନ୍ତି; ଏହାର ପ୍ରକୃତ କାରଣ ଯେ ଆଖିର ଭ୍ରମ, ଏହାତ ବିଶ୍ଳେଷଣୀ ମନ ଧରିଦିଏ···ତେବେ ?···

କେହି ଭ୍ରମମୁକ୍ତ ନୁହନ୍ତି ଏ' ଦୁନିଆରେ, ଏହା ସ୍ୱୀକାର କରିବାକୁହିଁ ହେବ । ଜଡ଼ବାଦୀ ଓ ଆତ୍ମବାଦୀ ଉଭୟେ ପରସ୍ପରକୁ ଚ୍ୟାଲେଞ୍ଜ କରୁଛନ୍ତି । ଜଡ଼ବାଦୀ ଆଖିର ଭୂମିକା ଗ୍ରହଣ କରନ୍ତି, ତଥ୍ୟ ସଂଗ୍ରହକୁ କ୍ୟାଲେଣ୍ଡରର ପଠଭୂମିକା ଅର୍ପଣ କରନ୍ତି, ଆତ୍ମବାଦୀର ପରିବେଷଦର୍ଶନର ଦୋଷ ତ୍ରୁଟି ପ୍ରତ୍ୟକ୍ଷୀଭୂତ କରାଇ ଧରାଇ ଦେଉଛନ୍ତି । ···ପକ୍ଷାନ୍ତରରେ ଆତ୍ମବାଦୀ ଛାୟା-ଚିତ୍ରର ଉପମା ବାଛି, ଜଡ଼ବାଦୀର ଆପାତ ଦୃଷ୍ଟିରେ ଯାହା ସୁସଂଲଗ୍ନ, ସତ୍, ତାହା ଅସତ୍, ଅସଂଲଗ୍ନ ବୋଲି ଦାର୍ଶନିକ ତତ୍ତ୍ୱ ଦ୍ୱାରା ପ୍ରତିପାଦିତ କରିବାକୁ ଛାଡ଼ୁନାହାନ୍ତି । ଜଡ଼ବାଦୀର ବିଜ୍ଞାନ ଓ ଆତ୍ମବାଦୀର ପରା-ଜ୍ଞାନ, କେହି କାହାରିକୁ ଊଣା ନୁହେଁ, ଦେହ ଓ ଆତ୍ମା ପରି ସ୍ୱ ସ୍ୱ ଧର୍ମ ବିଶିଷ୍ଟ । ସୁତରାଂ ଉଭୟର ପାରସ୍ପରିକ ସହଯୋଗ ବିନା ଜୀବନ ଧାରଣ ଓ ଜୀବନର ଧାରା ପୁରୁଷାର୍ଥ ଚତୁର୍ବର୍ଗ (ଧର୍ମ, ଅର୍ଥ, କାମ, ମୋକ୍ଷ) ସାଧନ ଅସମ୍ଭବ, ଏହା ଯେ କୌଣସି ଦେଶର ଓ ଜାତିର ମନନଶୀଳ ବିଦଗ୍ଧ ବ୍ୟକ୍ତି ଅବଶ୍ୟ ସ୍ୱୀକାର କରିବ । ···ତେବେ ଉଭୟ ମଧ୍ୟରେ କନ୍ଦଳ କାହିଁକି ?

ମୁଁ ଏହିପରି ଚିନ୍ତା-ସ୍ରୋତରେ ଭାସମାନ ଥାଇ ଏହି ପ୍ରଶ୍ନ-ଠେଇଁ ଅଟକିଛି, ଏମିତି ସମୟରେ ଗୃହିଣୀ ଡାକିଛନ୍ତି—'ଶୁଣୁଚ ?'

ମୁଁ ସ୍ୱପ୍ନରୁ ଉଠିଲାଭଳି ଅନାଇ କହିଲି—'ତୁମେ ?'

'ପଡ଼ଶାର ସମସ୍ତେ ଦକ୍ଷିଣେଶ୍ବର ଯିବେ ବୋଲି ବାହାରିଛନ୍ତି, ଯିବ ?'

ସ୍ୱଭାବିକ କଣ୍ଠରେ ମୁଁ କହିଲି—'ମୋତେ ପଚାରୁଛ କ'ଣ ?'

'କି ନାଘରିଆ-କଥା କହୁଛ ବା ? ତୁମେ ହେଲ ଘରର ମୁରବୀ । ମୁରବୀକି ନ ପଚାରି, ପଚାରିବ କ'ଣ କାନ୍ଥ ବାଡ଼କୁ ? ବୁଢ଼ୀ ହେଲି ବୋଲି କ'ଣ ମୋ'ର ଅକଲ୍ କୁଆଡ଼େ ବାଏଁ ବାଏଁ ଉଡ଼ିଗଲା ?'

ମୋତେ ଭାରି ହସ ମାଡୁଥାଏ···କିନ୍ତୁ ସନ୍ଦର୍ଭ ଶେଷ ନ ହେବା ଯାଏ ପରିତ୍ରାଣ ନାହିଁ, କାରଣ ଗୃହିଣୀର କଥା ଉପରେ କଥା କହିଲେହିଁ କଥା ଶେଷ । ସନ୍ଦର୍ଭ ଶେଷ ହେଲା···ମୁଁ ହସ ଓକାଳିବି କ'ଣ, ଆହୁରି ବି ଗିଳି ମୁରବି ଢଙ୍ଗରେ କହିଲି—

'ଦରଖାସ୍ତ ମଞ୍ଜୁର !'

ରହସ୍ୟଟା କଲି···ଯାଏଁ କୁଆଡ଼େ ? ରହସ୍ୟମୟୀର ଅଦ୍ଧମତାରେ ଯେ ପାହାର ପଡ଼ୁଛି, ବୁଝିବାକୁ ତଳେମାନ ଡେରି ହେଲାନାହିଁ । ···ମୋ' କଥାର ତାଳ ସଙ୍ଗେ ତାଳ ମିଶାଇ, ନିଜ ଢଙ୍ଗରେ କହିବାକୁ ଲାଗିଲେ—

'ମଞ୍ଜୁର ନା ମଞ୍ଜୁଆଡ଼ ! ···ଗୁଡ଼ାଏ ବକିଲ, ତେବେ ଯାଇ

ମନ ଘର ଧରିଲା, ଅନୁଭବ ତଙ୍ଗ ? କଥାରେ କହୁଚି ପରି—ପାଠ ପଢିଚ ବେଡାଏ, ବୁଦ୍ଧି ନାହିଁ ପାଚଅଏ ।’

ମୁଁ ଅବାକ୍ ! ପ୍ରକୃତରେ ଏହି ମାଇପି-ତଗଟି ମୋତେ ବନାଇ ଦେଲା ବେକୁବ୍···ମୁଁ ଚଲିଉଠିଗଲି ମୋ’ର ପୂର୍ବ ଚିନ୍ତା-ସ୍ରୋତର ସେହି ପ୍ରଶ୍ନ-ସ୍ଥାନକୁ, ଯେଉଁଠି ଅଟକି ଯାଇଥିଲି ;—ଏହି ତଗଟିରେ ଯେମିତ ନିହିତ ରହିଚି ସେହି ପ୍ରଶ୍ନ-ମୀମାଂସାର ରୁଦ୍ଧ-ଦ୍ୱାର ଖୋଲିବାର ଗୁପ୍ତସଙ୍କେତ । ମୁଁ ଅନ୍ୟମନସ୍କ ହୋଇ ଗଲି ।···

‘ଶୁଣୁଚ...’ ଗୃହିଣୀ ଏତକ ପୁଣି କହିବାର ଶୁଣିଚି···ଗୃବ-ନେତ୍ତାରୁ ଗୃବିଟିଏ କାଢି ମୋତେ ଦେବାର ଜାଣିଚି...ତା’ପର କି, କି କରଣୀୟ-କଥା ସେ କହି ଯାଉଥିଲେ ତାହା ଠିକ୍ ଠିକ୍ ନ ଶୁଣିଲେ ମଧ୍ୟ, ଠିକ୍ ଠିକ୍ ମୁଣ୍ଡ ହୁଙ୍କାର ‘ହଁ’ ଭରୁ ଥିଲି କହଣିର ଫାଙ୍କେ ଫାଙ୍କେ, ବେଶ୍ ‘ଖିଆଲ ଅଛି ।··· ଘରଣୀ ଗୃଲିଗଲେ, ଘରର ଖିଆଲ ମୁଣ୍ଡରେ ପଶିଲା, ମୁଁ ଭାବିଲି—

ସେ ଏହି କଥାହିଁ କହିଥିବେ—କାରଣ ମୁଁ ସେଇଥିପା ବୁଝି ମୁଣ୍ଡ ହୁଙ୍କାର ଥିଲି—ସେ କହିଥିବେ—

‘ବୁସିଅର ଥିବ···ମୁଁ ସବୁ ଘରେ ତାଲା ପକେଇ ଦେଇଚି···ତୁମେ ଏ’ ଘରେ ତାଲା ଦେବ···ସଦର-ଦ୍ୱାର ବନ୍ଦ କରି ତାଲା ପକାଇବ, ତା’ପର ଯେତେବେଳେ ଇଚ୍ଛା ସେତେବେଳେ ଯିବ···ଏହି ସଦର-ଦ୍ୱାରର ତାଲା-ଗୃବି ଏଇଠି ରହିଲା···ଗଲି···ହଁ, ସହଳ ସହଳ ଫେରିବ ଆଜି···

(ଯାଉ ଯାଉ ପୁଣି ଫେରି ହୁଏତ କହୁଥିବ) ହଁ, ସଞ୍ଜିବତୀ ସେଠି ଥୁଅ ହୋଇଛି··· ଯଦି ସଞ୍ଜିବତୀ ଜଳିବା ଆଗରୁ ନ ଫେରେ, ତେବେ ସଞ୍ଜିବତୀ ଲଗାଇ ଦେବ, ତା'ପର ତୁମ ଲାଇଟି ଜାଳିବ···ଗଲି···'

ଚହଲାମନ ଏତକରେ କ୍ଷାନ୍ତ ହେଲାନାହିଁ···ଏହାକୁଇ କେନ୍ଦ୍ର କରି ତରଙ୍ଗ ପରେ ତରଙ୍ଗ-ବୃତ୍ତ ଅଙ୍କନ କରି ଚାଲିଲା··· ଐକାନ୍ତିକତାର ପରିବେଶ ଓ ଅନୁସନ୍ଧିତ୍ସାର ଆବେଶ ଅନୁକୂଳ ଯାଗ-ଯୋଗ ଯୋଗାଇଲା···ମୋ'ର ଉଚ୍ଛଳ ଭାବାବେଗ ଏହି ଧାରାରେ ଗତିକଲା—

'ପାଠ ଓ ବୁଦ୍ଧି । ବୁଦ୍ଧି ମାନବର ଜନ୍ମଗତ ସାଥି । ପାଠ ମାନବାସ୍ତୃ କୃତ । ଆକରିକ ଲୌହ-ପିଣ୍ଡ ଅପରିଚ୍ଛନ୍ନ ଥାଏ । ବୁଦ୍ଧିର ପ୍ରାଥମିକ ଅବସ୍ଥା ସେହିପରି ।···ଶୋଧନ-ପ୍ରକ୍ରିୟା ବଳରେ ଆକରିକ ଲୌହ ପରିଶୁଦ୍ଧ ହୁଏ ।···ପାଠ (ଜ୍ଞାନ) ର ପ୍ରତିକ୍ରିୟା ଫଳରେ ବୁଦ୍ଧି ସେହିପରି ପ୍ରଖର ଓ ସମୁଜ୍ଜ୍ୱଳ ହୁଏ ।···ଅବଶ୍ୟ ଗୁଣାନୁକ୍ରମିକ ସ୍ତର-ଭେଦ ରହିଛି । ଯେତେ ମାଜିଲେ ବି ନିକୃଷ୍ଟ ସ୍ତରର ଲୌହ-ପିଣ୍ଡ କଦାପି ଇସ୍ପାତରେ ପରିଣତ ହୁଏ ନାହିଁ ।··· ଏହି ଉକ୍ତିତ୍ୱ ବୁଦ୍ଧି-କ୍ଷେତ୍ରରେ ମଧ୍ୟ ପ୍ରଯୁଜ୍ୟ ।···'ମୋତେ ଯେତେ ମାଠିବୁ ମାଠ···ମୁଁ ସେହି ଏରପୋଡ଼ା କାଠ' ।... ସାଧାରଣ ନିୟମର ବ୍ୟତିକ୍ରମ ଥାଏ, ଏ' ଉକ୍ତିର ମଧ୍ୟ ରହିଛି । ଅନେକ ସ୍ଥଳରେ ଜଣେ ପଣ୍ଡିତ ହୋଇ ସୁଦ୍ଧା ମୂର୍ଖ ପରି ଆଚରଣ କରିବାର, ଆଉ ଅନେକ ସ୍ଥଳରେ ମୂର୍ଖ ହୋଇ ସୁଦ୍ଧା ପଣ୍ଡିତ ପରି

ଆଚରଣ କରିବାର ଦେଖାଯାଏ । ସୁତରାଂ 'ପଣ୍ଡିତ-ମୂର୍ଖ' 'ମୂର୍ଖ-ପଣ୍ଡିତ' ବୋଲି ପ୍ରବାଦୋକ୍ତି ଯାହା ପ୍ରଚଳିତ ଅଛି, ତାହା କେବଳ ବିଧେୟ ବିଶେଷଣାତ୍ମକ ବା ଔପାଧିକ ଶବ୍ଦାଳଙ୍କାର ନୁହେଁ, ବ୍ୟବହାରିକ ସତ୍ୟ । ...ଏହାର ମୂର୍ତ୍ତି ପ୍ରମାଣ ଆମେ ଦୁଇଟି ପ୍ରାଣୀ—**ଗୃହସ୍ୱାମୀ ଓ ଗୃହିଣୀ !!'**

ଏହାପରି ଆତ୍ମ-ମନ୍ତବ୍ୟ କରିବା ମାତ୍ରେ, ମୁରୁକି ମୁରୁକି ହସିଲି ସତ, କିନ୍ତୁ ସଙ୍ଗେ ସଙ୍ଗେ ଗୁରୁ ଗାମ୍ଭୀର୍ଯ୍ୟ ଧାରଣ କଲି ଓ ମନକୁ ମନ କହିବାକୁ ଲାଗିଲି—

'ଗେଲ୍‌-କଥା ନୁହେଁ ।...ଏତେ ଦିନ ଯାଏ ମନେ କରି ଆସିଛି, ଗୃହିଣୀ ଏକନାୟିକତ୍ୱର ଅଭିମାନରେ ଅଭିମାନିନୀ... ଏଥିଯୋଗୁଁ ମୁଁ ଯେ ତାଙ୍କ ପ୍ରତି ଅସୂୟାପରବଶ ନ ହୋଇଚି, ତାହା ନୁହେଁ ।...କିନ୍ତୁ, ଆଜି ଏ'କି ଉଦ୍‌ଘାଟନ !...କର୍ମ କରନ୍ତି ଗୃହିଣୀ କର୍ମ କରିବା ଉଦ୍ଦେଶ୍ୟରେ । କର୍ତ୍ତୃତ୍ୱ-ଅଭିମାନର ସତ୍ତା ଟିକିଏ ହେଲେ ନାହିଁ ।...ପ୍ରତି କାର୍ଯ୍ୟରେ ଗୃହସ୍ୱାମୀର ଅନୁମତି ଲୋଡ଼ା, ପ୍ରତି କ୍ଷେତ୍ରରେ ଗୃହସ୍ୱାମୀହିଁ ସେବ୍ୟ-ସେବକ...ଏହି ଜ୍ଞାନ ଓ ଚେତନାରେ ଗୃହିଣୀ ଯେମିତି ସ୍ୱୟଂ ସିଦ୍ଧା !...ମାନବଦେହୀର ଏହାହିଁ ତ ପରମ ବୁଦ୍ଧିମତ୍ତା, ଗୀତା-ପରିବେଶିତ ନିଗୂଢ଼ ତଥ୍ୟ । ...ପର-ବୁଦ୍ଧି ପ୍ରଣୋଦିତ ଆତ୍ମା (ମନ)ର ଉତ୍କର୍ଷ ଦ୍ୱାରା ଜୀବାତ୍ମା ଆତ୍ମ (ପରମାତ୍ମା) ଦର୍ଶୀ ହୋଇଥାଏ ।...ଅନାମୟତ୍ୱ ଅର୍ଥାତ୍‌ ମୁକ୍ତି, ପ୍ରୀତି, ଶାନ୍ତିଲାଭ ତା'ର ଅପରିହାର୍ଯ୍ୟ' ।

ମନ ଫାଙ୍କା ଧରିଲି···ଗବାକ୍ଷ ରୁଦ୍ଧ ଥିଲା, ଉନ୍ମୁକ୍ତ କଲି··· ସେହି ଫାଙ୍କ ବାଟେ ବାହାରକୁ ଚାହିଁଲି···ବାହାର ଦୁନିଆ ଗୋଚରୀଭୂତ ହେଲା···ଦୁନିଆର ଦ୍ୱନ୍ଦ୍ୱ ମାନସ-ଦ୍ୱନ୍ଦ୍ୱ ଉପୁଜାଇଲା··· ତତ୍‌କ୍ଷଣାତ୍ ଚିନ୍ତାର କ୍ରମ ଧରି ଚିନ୍ତା-ସ୍ରୋତ ପୁଣି ସଂକ୍ରମିଲା ଏହିପରି—

'ଜଡ଼ବାଦୀ ଏହି ସତ୍ୟଦର୍ଶନକୁ ଆତ୍ମ-ବାଦୀର ନିଛକ କଳ୍ପନା-ପ୍ରସୂତ ଅସମ୍ବଦ୍ଧ ପ୍ରଳାପ ବୋଲି ଆଖ୍ୟା ଦେଇ ଥାଏ, କିନ୍ତୁ ଆଜିର ବିଜ୍ଞାନ ମହାଶୂନ୍ୟ ପଥୁକୀ ହୋଇ ଯେତେ ଯେତେ ଅଧିବେଶନ କରୁଛି,ଜଡ଼ବାଦୀ ସେତେ ସେତେ କର୍ତ୍ତୃତ୍ୱାଭିମାନର ତୁଙ୍ଗ ଶିଖର ଦେଶରୁ ଅବରୋହଣ କରୁଛି —ଏହା ସତ୍ୟ ନୁହେଁକି ? ଯଦି ଏହି ସତ୍ୟ ଅନୁଭବ କରୁ ନ ଥାଏ, ତେବେ ସେ ମାନବ ନୁହେଁ.. ଯଦି ସେ ମାନବ ହୁଏ, ତେବେ ସେ ଏହି ସତ୍ୟ ଅନୁଭବ କରିବାକୁ ବାଧ୍ୟ (ଆଜି ହେଉ, କାଲି ହେଉ) ।...ଅରବିନ୍ଦଙ୍କ ଭାଷାରେ ମାନବସତ୍ତାର କେନ୍ଦ୍ର ସ୍ଥଳୀରେ 'ଚୈତ୍ତ୍ୟପୁରୁଷ' ସର୍ବଦା ଜାଜ୍ୱଲ୍ୟମାନ – ଅନ୍ତର୍ଦୃଷ୍ଟି ଦ୍ୱାରା ମାନବ ତାହା ଦର୍ଶନ କରିବାକୁ ସମର୍ଥ ହୋଇଥାଏ । ସୁତରାଂ ସେହି ପ୍ରଶ୍ନ ଅର୍ଥାତ୍ 'ଜଡ଼ବାଦୀ ଓ ଆତ୍ମ-ବାଦୀ' ବିଜ୍ଞାନ ଓ ପରବିଜ୍ଞାନ— ଉଭୟଙ୍କ ମଧ୍ୟରେ ଲାଗି ରହିଚି ଯେଉଁ କନ୍ଦଳ,—ତା'ର ମୀମାଂସାର ଏକମାତ୍ର ସୂତ୍ର ( ଗୃହିଣୀଦୁର୍ଲଭ ) ନିରଭିମାନ ଚିତ୍ତରେ **କର୍ତ୍ତୃତ୍ୱାଭିମାନ ବର୍ଜ୍ଜନ !!**

ଠିକ୍ ଏତିକିବେଳେ ଘଡ଼ି ଠଂ ଠଂ ହୋଇ ପାଞ୍ଚଟା ବାଜିଲା··· ମୁଁ ଧଡ଼ପଡ଼ ହୋଇ ଉଠି, ଠିଆ ହେଲି । ତ୍ୱରିତ ହସ୍ତରେ ଭ୍ରମଣର ପ୍ରସ୍ତୁତି ସାରି, ତ୍ୱରିତ-ପଦରେ ନିର୍ଗତ ହେଲି···'କିନ୍ତୁ ଆଜି ତ ବିଶେଷ କିଛି ଖବର ନ ଥିବ···ଖାଲି ଅସ୍ଥାନଟିର ଖବର ବୁଝିବି'—

ଏହିପରି ଶିଥିଳ ଭାବ ଉପୁଜିବାରୁ ଶ୍ଳଥଗତିରେ ଚଲାପଥ ଚାଲିଲି, ଓ ଅଭ୍ୟସ୍ତ ସମୟର ବହୁ ପରେ ଗୋଲଘାଟିରେ ଉପସ୍ଥିତ ହେଲି । ···ଗୋଲ୍-ଘାଟି ଘେରା ରେଲିଂ ପ୍ରାଚୀରର ଉତ୍ତର-ପଶ୍ଚିମ କୋଣସ୍ଥ ଗ୍ଲେଟ ଫାଟକ ବାଟେ ପ୍ରବେଶ କରେ, ଆସ୍ଥାନ ଆଡ଼କୁ ଦୂର-ଦୃଷ୍ଟିପାତ କରି ଅନାଏ···ମନେ ହୁଏ କିଏ ଯେମିତି ସେ'ଠି ଚଉକଷ୍ ଆସନ ଜମେଇ ପୂର୍ଣ୍ଣାଙ୍ଗ ଦୋକାନଟିଏ ଲଗେଇ ବସିଛି...ନାନା ସନ୍ଦେହ ଖେଳିଗଲା···ନିକଟତର ହୋଇ ତରସି ଦେଖେଁ—ଚଣାବାଲାର ଦୋକାନ, ଚଣାବାଲାର ଆସନ, ଚଣାବାଲାର ଲାଇନ୍, କିନ୍ତୁ ଚଣାବାଲାର ଯେଗାରେ ଚଣାବାଲା ବସିନାହିଁ, ବସିଛି ତା'ର ମୋଟିଆ ! ମଣିଷ ମନକୁ ପଢ଼ିଲେ ପାପ ଛୁଏଁ···ମୋ'ର ବି ସେହି ଦଶା ହେଲା···ଚଣାବାଲା କ'ଣ··· ?···ଗୋଟାଏ ଅନାଗତ ଭୟରେ ଛାତି ଧୁକୁ ଧୁକୁ ହେଲା, ଅନାହୂତ ଶୋକରେ ଆଖି ଛଳ ଛଳ ହୋଇ ଆସିଲା···

ପୁଣି କଳ୍ପନା ?···ତଥ୍ୟ ନ ଜାଣି ?···ବାସ୍ତବବାଦୀର ପିଧାନ ମନକୁ ଭ୍ରଷ୍ଟ କରାନ୍ତେ, ନିର୍ଭୟରେ ଭୟର ସମ୍ମୁଖୀନ ହେଲି, ଅର୍ଥାତ୍ ପରନ୍ତରା ସୁଲଭ ପାଦ ପକେଇଁ ମୋଟିଆ ସାମ୍ନାରେ ହେଲି ହାଜର···ମୋଟିଆ ଦେଖିବା ମାତ୍ରେ 'ବାବୁଜ !' ବୋଲି ଯଥୋଚିତ ଅଭିବାଦନ ଜଣାଇଲା···ଆଉ ମୁଁ ? ପ୍ରତିଅଭିବାଦନ ଅଭିଜ୍ଞାପକ ସୌଜନ୍ୟ ପ୍ରଦର୍ଶନ କରିବା ଦୂରେ ଥାଉ, ବରଂ କୌତୁହଳପୂର୍ଣ୍ଣ ଅକୁହା ଅପୋଛା ଆକ୍ରମଣ ଚଳାଇ ତାକୁ ଜର୍ଜରିତ କରିବାକୁ ଲାଗିଲି ମୁହୂର୍ମୁହୁ ପ୍ରଶ୍ନ-ବାଣରେ—'ଚଣାବାଲର ଖବର କ'ଣ ?'··· ଚଣା-ବାଲା କେଉଁଠି ?···ଚଣାବାଲା ଅସିଛି ତ ? ···ଚଣାବାଲା···

'ଅଥଚ ହେବେ ନା, ବାବୁଜି...କହୁଚ, 'ଆସନ୍ତୁ ଏ'ଠିକି, ବସନ୍ତୁ...'

ଏଥିରେ ମୋ'ର ଅଧୀରତା ଅନ୍ତର ବଢ଼ିଗଲା—ଉତ୍ତୋଳିତ ଅଧୀର କଣ୍ଠରେ ପଚାରିଲି ଅନ୍ତର—ଚଣାବାଲା ଏଲି ଅଚ୍ଛୁତ ?

'ଖୁବ୍ ଭଲ !...ଖୁବ୍ ଭଲ, ବାବୁଜୀ !!'

ମୋ'ର ନିଃଶ୍ୱାସ ଘର ଧରିଲା...ମୁଁ ଭଲକରି ପ୍ରଃଶ୍ୱାସଟାଏ ଛାଡ଼ି ତା'ପାଖରେ ଭଲଆସନ ଜମେଇ ବସିଲି—ଅବଶ୍ୟ ତା'ଆସନରେ ନୁହେଁ, ଇଟାଟାଏ ଟାଣି ଆଣି, ତାରି ପାଖରେ।...ମୋଟିଆ କଥା ଆରମ୍ଭ କଲା ପକ୍କା ଔପନ୍ୟାସିକର ଛାଞ୍ଚରେ— 'ଚଣାବାଲା ଏଣିକି ବିଲ୍‌କୁଲ୍ ଗାଁ-ବାଲା',...କିନ୍ତୁ ଉପନ୍ୟାସର ବିକାଶ ଧାରା ବଜାୟ ରଖି ପାରିଲା ନାହିଁ...ରଖିବ କେମିତି ?...ସେ ଯେ ମୋଟିଆ...ତେବେ ମୋଟାମୋଟି ଯେଉଁ ତଥ୍ୟ ଗୁଡ଼ିକ ବାଢ଼ିଦେଲା ଓଲମ ବିଲୋମ କରି, ତାହା ମୁଁ ସଜାଡ଼ି ନେଇ ଅଗାପିଚ୍ଛା କମେ ଏହିପରି—(ଏଥିରେ ଯଦି କୌଣସି ରୋମାନ୍‌ସ ଫୁଟି ଉଠିଥାଏ, ତାହା ନିଜ ଗୁଣରେ, ମୋ'ର କହିବା ପଣରେ ନୁହେଁ ।)—

ଚଣାବାଲା କଲିକତାରୁ ଯାଇ ଯେଉଁ ଷ୍ଟେଶନରେ ଓହ୍ଲାଇଲା, ସେ'ଠୁ ତା'ର ଗ୍ରାମର ଦୂରତ୍ୱ ଅନ୍ତତଃ ଦଶ କୋଶ ବାଟ;—ଗୋଟାଏ ଯୁଗର ଉର୍ଦ୍ଧ୍ୱ ହେଲା ସେ ଦେଶ ଛାଡ଼ିଚି, ସେହି ବ୍ରିଟିଶ-

ସରକାର ଅମଳରେ; ବର୍ତ୍ତମାନ ଭାରତ ସ୍ୱାଧୀନତା ହାସଲ କରିବା ପରେ; ଦୁଇଟା ପଞ୍ଚବାର୍ଷିକ ଯୋଜନା ବିତି ଯିବା ଉପରେ, ତୃତୀୟର କଳ୍ପନା କଳ୍ପନା ଚାଲିଛି; ସୁତରାଂ ରାସ୍ତାଘାଟ, ଜାନବାହାନ, ଜୀବନ ଧାରଣ ଓ ଧରଣ ଆଦି ନିଦର୍ଶନ ଦେଶର (ବିଶେଷତଃ ଗ୍ରାମର) ଘଟ ପରିବର୍ତ୍ତନ ଘଟିବା ସ୍ୱାଭାବିକ ; ଚଣାବାଲା ସହରରେ ଥାଇ ଏଁ ପରିବର୍ତ୍ତନ ଲକ୍ଷ୍ୟ କରି ପାରିନାହିଁ ; କାରଣ ସେ ଏକେ ଗ୍ରାମଛଡ଼ା, ଦ୍ୱିତୀୟରେ ତା'ର ଦୈନନ୍ଦିନ ଜୀବନଧାରା ଅବଦ୍ଧ ରହିଛି କେବଳ ପଣ୍ୟ-ସଂଭାରର ପ୍ରାକାର ମଧ୍ୟରେ; ଅସମ୍ଭବ ଦରଦାମ ଦେଖି, 'ବ୍ରିଟିଶ ଅମଳ ଥିଲା ଭଲ' ଏହିପରି ଆତ୍ମୋକ୍ତି ଦ୍ୱାରା ସେ-ଅମଳ ଏ'-ଅମଳ ମଧ୍ୟରେ ଯେତକ ଅବାଞ୍ଛିତ ପାର୍ଥକ୍ୟ ସେ ଅନୁଭବ କରିଥିବ ; ବର୍ତ୍ତମାନ ଷ୍ଟେଶନରେ ଓହ୍ଲାଇ ଯେଉଁ ବିବର୍ତ୍ତିତ ରୂପଶ୍ରୀ ସେ ନିରୀକ୍ଷଣ କଲା, ସେଥି ସଙ୍ଗେ ତା'ର ବାଲ୍ୟ ସ୍ମୃତି ଆଦୌ ଖାପ ଖାଇଲା ନାହିଁ— ବାଲ୍ୟ ସ୍ମୃତିର ଛବି ଦେଖି ଯେ ସେ ଦେଶାତ୍ମମୁଖୀ ହୋଇଥିଲା ଏହା କହିବା ବାହୁଲ୍ୟ ମାତ୍ର।···ସୁତରାଂ ହୋଇଗଲା ଅବାକ୍ !... ତେବେବି ତା'ର ପ୍ରତି ଶିରା ପ୍ରଶିରାରେ ନବ-ଭାରତୀୟ ନବଜୀବନ ସ୍ପନ୍ଦନ ସେ ସ୍ପଷ୍ଟ ଅନୁଭବ କଲା, ଯେତେବେଳେ ଯାତ୍ରୀ ପଥର ଦୁଇପଟକୁ ଅନାଇ ନିରୀକ୍ଷଣ କଲା ଓ ୧୦ ଘଣ୍ଟାର ରାସ୍ତା ଘଣ୍ଟାକେ ଅତିକ୍ରମ କଲା; ପରିବହନ ପଥର କରେ କରେ ବିଜୁଳି ଖୁଣ୍ଟ; ରାସ୍ତା ମଝିରେ ଯେଉଁଠି ବସ୍ ଥକା ମାରି ଠିଆ ହେଲା, ସେଠି ଖଣ୍ଡେ ଦୂରରେ ଗୋଟିଏ ଛୋଟ ଶିଳ୍ପ କାରଖାନା, ତାହା ପୁଣି ବିଜୁଳି ଶକ୍ତି ଚାଳିତ ; ଏହାକୁ କେନ୍ଦ୍ର କରି ଦୂର ଦୂରାନ୍ତରୁ ମଧ୍ୟ ଗ୍ରାମବାସୀଙ୍କ ଆଗମନାଗମ ଅବ୍ୟାହତ ; ଗୁଡ଼ିଆ ଦୋକାନଟିଏ ବି ସହରି ଧରଣର ପଶରା ମେଲିଛି—ମିଠେଇ ରସଗୋଲା ଖାଇବାକୁ ଚାହଁ, ତାହା ବି ମିଳିବ; ଏଇଠା ଥିଲା ଅପନ୍ତରିଆ ଜେଗା, ଚୋର ଡକାଏତଙ୍କ ଆଡ଼ା,

ବାଘ ଭାଲୁଙ୍କର ଉପଦ୍ରବ ଥିଲା କାହିଁରେ କ'ଣ, ଏ କଥା ସବ-ସାନୀଏ କୁହାକୁହି ହେବାର ଶୁଣିଲା, ଅନୁଭବ ଶୁଣିଲା - ଜାତୀୟ ସରକାରଙ୍କ ଦୌଲତରେ, ଆଉ ଗାଁ ଲୋକଙ୍କ ଉତ୍ସାହ ଉଦ୍ୟମ ଓ ପରିଶ୍ରମ ଫଳରେ ଏହି ରୂପାୟନ ସମ୍ଭବପର ହୋଇଚି।...ତା'ର ଧମନୀର ରକ୍ତପ୍ରବାହ ଦ୍ରୁତତର ହେଲା, ସେ ମାତି ଉଠିଲା, ଆଶାୟୀ ବୁକୁରେ ନିଜ ଗ୍ରାମର ରୂପାନ୍ତରିତ ଛବି ସେ କଳ୍ପନା କରିବାକୁ ଲାଗିଲା, କିନ୍ତୁ ଗ୍ରାମକୁ ଯାଇ ଦେଖିଲା ସଂପୂର୍ଣ୍ଣ ବିପରୀତ, ହତଶ୍ରୀ ଛବି, କାରୁଣ୍ୟର ଏକ ବୁକ୍ଫଟା ଦୃଶ୍ୟ— ଶ୍ମଶାନ ... ହାହାକାର ... ଏଠାକା ଭେଣ୍ଡାମାନେ ଦେଶତ୍ୟାଗୀ, ଯେଉଁମାନେ ବୁଢା ହଡ଼ା, ସେହିମାନେହିଁ ଦେଶରେ ରହି ବୋଲଉଛନ୍ତି ଦେଶବାସୀ... କେଉଁଠି ଘରନାହିଁ, ଘର ଡିହ ସେଥିର ସ୍ୱାକ୍ଷର ହୋଇ ରହିଚି; କେଉଁଠି ଘର ଥିଲେବି, ତାହା ଭଙ୍ଗାକାନ୍ଥ ଓ ଉଡ଼ାଛପରକୁ ଆଶ୍ରୟ କରି ଠିଆ...ବିଲସବୁ ଘାସ-ପଡିଆ...ଗାଈ ଗୋରୁ ମଲ-ଦୁର୍ବଳ ...ନିଜର ଘର ମଧ ଭାଙ୍ଗି ରୁଜି ଏକାକାର...ନିଜର ଘର ଥାଇ ମଧ ନିଘରିଆ ସେ—ସୁତରାଂ ଭାଙ୍ଗି ପଡ଼ିଲାନି ବା ଉତ୍ତେଜନାରେ ଉନ୍ମତ୍ତ ହେଲାନି, ବରଂ ମନେ ମନେ ସଂକଳ୍ପ କଲା ଯେ ସେ ଆଉ ବିଦେଶୀ, ଚଣାବାଲ ହୋଇ ରହିବ ନାହିଁ; ନିଜର ଗାଁ-ଘର ସୁଧାରିବ, ଗାଁ-ବାଲା ହେବ, ତା'ର ଗାଁ ମାଟିକୁ ବାଟରେ ଦେଖି ଆସିଥିବା ସମୃଦ୍ଧ ଗାଁ-ମାଟି ସଙ୍ଗେ ସମତୁଲ୍ କରି ଠିଆ କରିବ।...

ଏହି ଅର୍ଦ୍ଧ-ଚେତନାର ସାମାନ୍ୟ ଅବକାଶ ଭିତରେ ସେ ପୁରୁଣା ଘର ମରାମତ୍ କରି ସାରିଚି, ନୂଆ ଘର ବଖୁରିଏ ତୋଳିବ ବୋଲି ଶୁଭ ପକାଇଚି.. ସେହି ବଖରିରେ ସେ ଆଉ ଗଙ୍ଗା ରହିବ,

ଅନ୍ୟ କେହି ନୁହେଁ ବୋଲି ଠିକ୍ କରେ; ଏହି କଥାକୁ ପିଲସୀ ବିଶ୍ୱାସ ମନରେ ଶୁଣେଇ ଶୁଣେଇ କୁହେ—ପୁଅ ମୋ'ର ନୂଆ ବୋହୂଟିଏ ପାଇଲା, ନୂଆ ଘରକରଣା, ନୂଆ ଘରଟିଏ ନ ତୋଳି, ଗୃହ କ'ଣ ?...ଚଣାକୁ କେନ୍ଦ୍ରକରି ଚଣାବାଲା କଲିକତାର ଝିଅଙ୍କୁ ଲୁଣ୍ଠେଇ ଥିଲା, ଏବେ ଗଙ୍ଗାକୁ କେନ୍ଦ୍ରକରି, ଗାଁ-ବାଲା (ଚଣାବାଲା) ଗାଁର ପିଲା-ଝିଅ, ଯୁବା-ବୁଢ଼ା ସମସ୍ତଙ୍କୁ ଲୁଣ୍ଠେଇଛି।...ଏହି ଦିନା ଗୃହ ଭିତରେ ସେ ଯେମିତି କେତେ ପୁରୁଣା, କେତେ ଅପଣାର, ଏହିପରି ଗୋଟାଏ ଭାବତରଙ୍ଗ ଅପଣା ଗାଁ-ସରହଦ ଡେଇଁ ଆଖପାଖର ଗାଁ ମାନଙ୍କରେ ପଶି ଖେଳି ଯାଇଛି; ଏ' କଥା ନ ଦେଖିଲା ଲୋକ ସମ୍ଭବ ପାରିବନି ବୋଲି ମୋଟିଏ କହିଥିଲା ; ...ସେ ଆହୁରି କହିଥିଲା ଯେ ଚଣାବାଲା ଜାମିକା ଲୋକ, କାମର ଗପ ଛଡ଼ା ସେ ଅନ୍ୟ କିଛି ପକାଏ ନାହିଁ ଗାଁବାଲାଙ୍କ ସାଥିରେ।... ସୁତରାଂ ଏହା ଅନୁମାନ ନୁହେଁ, ନିର୍ଦ୍ଧାରିତ ସତ୍ୟ ଯେ ସେ କଲିକତାରେ ଥିଲାବେଳେ, ଖବର କାଗଜ ନିଜେ ନ ପଢିଲେ ମଧ୍ୟ, ପଢ଼ୁଣା-ଅଡିଶାଙ୍କ ଠାରୁ ଗାନ୍ଧିଜୀ, ନେହେରୁଜୀ, ନେତାଜୀ ପ୍ରଭୃତଙ୍କ ବିଷୟରେ ଶୁଣିଛି...ଦେଶର ଅଭ୍ୟୁତ୍‌ଥାନ ସମ୍ପର୍କରେ ନାନା ଖବର ରଖିଛି...କେତେ ଆନ୍ଦୋଳନ, କେତେବିକ୍ଷୋଭ ପ୍ରଦର୍ଶନ ତା' ଆଖିସାମ୍ନା (କଲେଜ ଷ୍ଟ୍ରୀଟ) ଦେଇ ପନ୍ଥୁଆ'ର କରି ଯାଇଛି, ସେ ଦେଖିଛି...ବ୍ରିଟିଶ୍ ଗୁଣ୍ଡାଗଲାର ଦୃଶ୍ୟ ମଧ୍ୟ ସେ ଗଡ଼ମାଣ୍ଠକୁ ଯାଇ, ରାଜ-ଭବନର ଅଭ୍ୟନ୍ତରରେ ପଶି, ହତା ଚଉପଟେ ବୁଲି, ଉପଭୋଗ କରିଛି, ସ୍ୱାଧୀନତା ସୁଖ ଆସ୍ୱାଦ କରିଛି ... ଇଲେକ୍‌ସନ୍‌ବେଳେ ସରକାରୀ ଓ ବିରୋଧୀ-ଦଳମାନଙ୍କର କେତେ କେତେ ସଭାରେ ଛାଏଁ ଭଲେଣ୍ଟିଅର କରିବାକୁ ବା ଯୋଗଦେବାକୁ ଦଉଡ଼ିଛି, ଆତ୍ମାଧିକାର ଦାବୀ ପ୍ରତିଷ୍ଠା କରିଛି ... ଚଣାବାଲା-ଇଜନିୟନ୍

ଗଢିବା କାରଣରୁ ହେଉ କି ଗଢିବା ମତ୍‌ଲବରୁ ହେଉ, ସେ 'ଓସ୍ତାଦ୍‌' ପଦ ପାଇଛନ୍ତି···ଫଳତଃ ନେତୃତ୍ୱର ଆକାଂକ୍ଷା ପୋଷଣ କରିବା ବିଚିତ୍ର ନୁହେଁ···ସୁତରାଂ ଦେଶ ଓ ଦେଶ-ଶାସନ, ସମାଜ ଓ ସମାଜ-ସଂସ୍କାର, ଧର୍ମ ଓ ଧର୍ମ-ନିରପେକ୍ଷତା, ଅସ୍ପୃଶ୍ୟତା ଓ ଅସ୍ପୃଶ୍ୟତା-ନିବାରଣ, ନିରକ୍ଷରତା ଓ ନିରକ୍ଷରତା-ଦୂରୀକରଣ, ଶିଳ୍ପ ଓ ଶିଳ୍ପ—ପ୍ରସାରଣ, କୃଷି ଓ କୃଷି-ସ୍ୱୟଂ ସଂପୂର୍ଣ୍ଣତା-ସାଧନ, ଗ୍ରାମ ଓ ଗ୍ରାମ-ସଂଗଠନ—ଏ' ସବୁର ବୀଜ ଗୁଡିକ ଯେ ଉପ୍ତ ନ ଥିଲା ତା'ର ଅବଚେତନ ମନ ମଧ୍ୟରେ, ତାହା ନୁହେଁ···ସେଇଗୁଡିକ ବର୍ତ୍ତିମାନ ଅନୁକୂଳ ବାତାବରଣ ପାଇ, ଗଜା ମାରି ଉଠିଛି...ସେଇ ଚେତନାରେ ସେ ଉଦ୍‌ବୁଦ୍ଧ ଓ ପ୍ରବୁଦ୍ଧ···ଗାଁର ପ୍ରତ୍ୟକ୍ଷ ଅଭାବ ଗାଁ ଭାଇଙ୍କୁ ଦର୍ଶାଇ, ସମୁଝାଇ—ବାପା ଗୋସବାପାଙ୍କ ଅମଳର ପରୋକ୍ଷ ବିଭବ ଶୁଣାଇ, ସୁମରାଇ, କେମିତି ତା'ର ଗ୍ରାମକୁ ଆଦର୍ଶ ଗ୍ରାମରେ ପରିଣତ କରିବ, ସେଇ ମସୁଦା ଓ ବକ୍ତୃତା ତା'ର ସର୍ବାବେଳେ···ଗଙ୍ଗା ପାଇଁ ଘରେ ସତ୍ୟନାରାୟଣ ପୂଜା କରେଇ ଥିଲା, ଗାଁ ସାରା ନିମନ୍ତ୍ରଣ କରିଥିଲା, ନିମନ୍ତ୍ରଣ ସଭାରେ ବି ସେଇ ମସୁଦା ଓ ବକ୍ତୃତା ··· କେଇ କେଇ କଲିକତାର କଥା ଶୁଣିବାକୁ ଆଗ୍ରହ ପ୍ରକାଶ କରିଲେ, ସେ ସେ'ଠା କଳ କାରଖାନାରେ ଲୋକେ କିପରି ଶୋଷି ପେଷି ହୁଅନ୍ତି, ବାସଭବନରେ ନରକ ବାସ କରନ୍ତି, ପଚ୍‌ ସଢ଼ା ଖାଅନ୍ତି, ନିଶା ବେଶ୍ୟାରେ ମାତନ୍ତି, ବଦ୍ ସଙ୍ଗରେ ପଡ଼ି ବଦମାସ୍ ହୁଅନ୍ତି, ଜେଲ୍ ଖଟନ୍ତି—ଏହି ସବୁ ନିଜର ଓ ପୁଅର ଦୃଷ୍ଟାନ୍ତ ବାଢି ନିଃସଂକୋଚରେ ପରିବେଷଣ କରି ଥାଏ।···ନଗର-ଜୀବନ ଓ ପଲ୍ଲିଜୀବନ ମଧ୍ୟରେ ବୈଷମ୍ୟ ଦେଖାଇବା ମାନସରେ ମଧ୍ୟ, ଗ୍ରାମର ସ୍ୱାସ୍ଥ୍ୟକର ପାଣି ପବନ, ଗ୍ରାମର ପୁଷ୍ଟିକର ଖାଦ୍ୟପେୟ, ଗ୍ରାମର ଶାନ୍ତିମୟ ଜୀବନ ଯାପନ—ଏ'ସବୁର ପ୍ରଶଂସାରେ ପଞ୍ଚମୁଖ

ହୋଇଥାଏ···ଅନ୍ଧୁରବ କହେ, "ଦାନ୍ତ ଥିଲାବେଳେ ଦାନ୍ତର ମର୍ଯ୍ୟାଦା ଲୋକେ ବୁଝି ପାରନ୍ତି ନାହିଁ, ଦାନ୍ତ ଗଲେ ପସ୍ତାନ୍ତି···ମୁଁ ବି ସେଇ କଥା ପସ୍ତାଉଚି···ଅଜ୍ଞ ଯଦି ମୁଁ ଗାଁରେ ଥା'ନ୍ତି—ପୁଅଟା କଣ... ଛାଡ଼, ଝୁଅଏ କେମିତି ପାଠ ପଢ଼ିବେ, ଝୁଅଏ କେମିତି ମଣିଷ ହେବେ, ଝୁଅଏ କେମିତି ଦେଶ ଓ ଦଶର ମାନ ବଢ଼ାଇବେ, ସେଇ କଥା ଅଗ କରନ୍ତ।"···

ଶୁଣିଲା ଅନ୍ଧୁର, ଅପଣା ଘର ପିଣ୍ଡାରେ ଗୁଡ଼ଶାଳଟିଏ ବସାଇ ସାରିଚି...ଗଙ୍ଗା ପାଇଁ ବି ଗୋଟିଏ 'ଅ, ଆ···କ, ଖ' ବହି ଅଣାଇଚି···ନିଜେ ତା'କୁ ପଢ଼ାଏ···ଗଙ୍ଗା କିନ୍ତୁ ତା'କୁ ବାଡ଼ାଏ... କଲିକତା ଓ କଲିକତାର ସବୁ କଥା ସେ ବିଲକୁଲ ପାଶୋରି ପକାଇଛନ୍ତି, ଏଥିରେ ସନ୍ଦେହ ନାହିଁ ।

ଏହି ପରିସ୍ଥିତିରେ ମୋଟିଆ ଯାଇ ଗାଁରେ ହାଜର ହୁଏ—ଯେମିତି ଅକ୍ରୁର ଦାରୁଣ ମଥୁରା-ସ୍ମୃତିର ନିମନ୍ତ୍ରଣ ନେଇ କୌତୁକମୁଖର ଗୋପଦାଣ୍ଡରେ ଉପସ୍ଥିତ ହୁଏ, ଠିକ୍ ସେମିତି ।

ମୋଟିଆ ତା'ର ଦୌତ୍ୟର ସକଳ ବାର୍ତ୍ତା ଜଣାଏ, ଅଣିଥିବା ଉପଢୌକନ ହାତକୁ ବଢ଼ାଇ ଦିଏ···ଚଣାବାଲା ସାଗ୍ରହେ ଶୁଣେ, ସାଗ୍ରହେ ଗ୍ରହଣ କରେ; ହେଲେ ଗୁମ୍ ମାରି ରହେ—ପରେ ପରେ ଗୁମର ଫାଙ୍କ୍ କରି କହେ—'ଗଙ୍ଗାର ଜନମ ଦିନ ରହିବାର ନ ହେଲେ ବି ରହିବାର···ସେଇ ଜନମଦିନ ମୁଁ ପାଳିବି ଗାଁରେ ନୁହେଁ,

ବାଲଗଞ୍ଜରେ, ···ହଁ, ମୋ'ର 'ଖୋକା'ର ଘରେ !' ···ସେତିକି ନୁହେଁ ··· 'ମୋ'ର ଖୋକା' 'ମୋ'ର ଖୋକା' ବୋଲି ଏଭଳିବେଳେ ଉନ୍ମାଦ···ସେହି ଉନ୍ମାଦନାରେ ଗଙ୍ଗାକୁ ଏମିତି ଜାବୁଡ଼ି ଧରେ ଯେ ବୁକୁ ଉପରକୁ ଟେକିନେଇ, ସେ ବଡ଼ପାଟି କାନ୍ଦିବାକୁ ଯାଇ କାନ୍ଦି ପାରେନା !! ···ତହୁଁ ଆରଦିନ ମୋହିଅକୁ ବିଦାୟ କରେ··· କଲବେଳେ, 'ଖୋକା'କୁ ମୁଁ ଭୁଲିଥିଲି, ଖୋକାକୁ ମୁଁ ଭୁଲିଥିଲି' —ଏହିପରି ଅପଶୋଷ କରୁ କରୁ ଗାଲରେ ଗୁଡ଼ୁଚା ଖାଏ ; ପରେ ଶିଶୁସୁଲଭ କହିଁ କହିଁ କାନ୍ଦ, ଅଶ୍ରୁ ନିଗାଡ଼ି ଦିଏ ; ···ମୋହିଅ ମଧ୍ୟ ଏହି କଥା କହୁ କହୁ ଅଶ୍ରୁ ଗଡ଼ାଇ ପକାଏ···ଆହୁରି ବି ଗଦଗଦ କଣ୍ଠରେ କହେ ଯେ ଚଣାବାଲ ତା'କୁ 'ଭୟା' ବୋଲି ସେହି ପ୍ରଥମ ସମ୍ବୋଧନ କରିଥିଲି, କୁଣ୍ଢାଇ ପକାଇଥିଲି ଓ ତା'ର ଦୈନ୍ୟତାର ଇନାମ ସ୍ୱରୂପ ତା'ର 'ସହଜାତ କବଚ କୁଣ୍ଡଳ'ଠୁ ଅଧିକ ଆସନ, ଲଇନ୍ ସମେତ୍ ଦୋକାନଟି ସମର୍ପି ଦେଇଥିଲି ।···

ମୁଁ ଯେତେବେଳେ ତଥ୍ୟ ଓ କଳ୍ପନାକୁ ସୁସମ କରି ଏହିପରି ଇତିହାସ ରଚନା କରୁଥିଲି, ସେତେବେଳେ ମୁଁ ମୋହିଅ (ବର୍ତ୍ତିମାନ ଚଣାବାଲା) ପାଖରୁ ଉଠି ଆସି, ସଦାନନ୍ଦଙ୍କ ବେଞ୍ଚ-ଆସନରେ ଉପବେଶନ କରିଥାଏ ।··· ନୂଆ ବଙ୍ଗାଳୀ···ଦୋକାନ ପାଇଛି ... ଦୋକାନୀର ହାତ ପାଇ ନାହିଁ···ସେଥିପାଇଁ ତା'କୁ ବିରକ୍ତକରିବା ଠିକ୍ ନୁହେଁ···ଗହକି ପଡ଼ିବା ସାଥି ସାଥି, ମୁଁ ସନ୍ନିଧାନ ତ୍ୟାଗ କରି ଉଠିଯାଏ···ସେ ଅବଶ୍ୟ ମୋତେ ଅନୁରୋଧ କରିଥିଲି ବସିବାକୁ···କିନ୍ତୁ ଗୋଟିଏ କଥା ଲକ୍ଷ୍ୟକଲି, ଏଥର ସେ ମୋତେ ଚଣାହିରେ ଆପ୍ୟାୟିତ କଲନାହିଁ···ହୁଏତ ସେ ଗଳ୍ପ-ଖିଆଲରେ ମତିଥାଇ ଭୁଲିଥିବ, କିମ୍ବା ଲୋକେ ପର ଧନରେ ବର ବାପ

ସାଜଲେ ଯାହା ହୋଇଥା'ନ୍ତି, କିମ୍ବା ମୋ'ଠେଇଁ ତା'ର ଗରଜ ନାହିଁ ବୋଲି 'ମଦଘଡା କାମ ସରିଲେ ଗଡଗଡା!'-ଭାବ ଉପୁଜି - ଥିବ ।···ବ୍ୟଥିତ ମନରେ ଭାବିଲି, ଏହାହିଁ କ'ଣ ମାନବ-ଚରିତ ?

ଏହିପରି ମାନବୀୟ ପ୍ରଶ୍ନ-ଜଟିଳତାରୁ ଆପଣାକୁ ମୁକୁଳାଇ ହଠାତ୍ ଧାଇଁଲି ଅବପାରି ସୁଇମିଂ କ୍ଲବର କାନ୍ଥ-ଘଣ୍ଟିକୁ ଅନାଇ ଦିଏତ, ଛଅ ଓ ସାତ ଅଙ୍କ ମଧ୍ୟରେ ଲେଖିଛି, ବଡକଣ୍ଟା ଦୁଇଟି ସାମ୍ୟ ବାଦ ଭିତରେ କୋଳାକୋଳି ···ଆଉ ମୁଁ, ଘରକୁ ଫେରିବି, କିନ୍ତୁ ସମୟ ଉତ୍ତୀର୍ଣ୍ଣ, ଗୃହିଣୀ ସଙ୍ଗେ ଏହି ବୈଷମ୍ୟ—ବାଦ ଭିତରେ ହେଲି କଲବଲ; କିନ୍ତୁ 'ତାବଦ୍ଭୟସ୍ୟ ଭେତବ୍ୟଂ ଯାବଦ୍ ଭୟମନାଗତଂ' ହିତୋପଦେଶର ଏଇ ହିତ ବାଣୀଟି ପଢିଥିବା ମାନେ ପାଇଲି ବରାଭୟ··· ମୁଁ ତତ୍କ୍ଷଣାତ୍ ପରିବହନର ସାହାଯ୍ୟ ଲୋଡ଼ିଲି, ଘରେ ପବନସୁତର ବେଗରେ ନ ହେଉ, ଆବେଗରେ ଆସି ହେଲି ଉପନୀତ ।···

ସଦର ଦ୍ୱାରେ ତାଲା...ଗୃହିଣୀ ପାଖେ ଥାଏ ଦୋହରି ଚାବି··· ସୁତରାଂ 'ଗୃହିଣୀ ଫେରି ନାହାନ୍ତି, ରକ୍ଷା'···ଏହିକଥା ଅସ୍ଫୁଟ ସ୍ୱରରେ କହି ଆଶ୍ୱସ୍ତ ମନରେ ସଦର-ଦରଜା ଖୋଲିଲି, ଘରେ ପଶିଲି, ନିଜ କୋଠରୀ-ତାଲା ଫିଟାଇବାକୁ ଗଲି ; ସେହିବେଳେ ମନେ ପଡ଼ିଗଲା ସଞ୍ଜବତୀ ଜାଳିବା କଥା । ଗୃହିଣୀଙ୍କ ଅନୁଦେଶ ଥିଲା—ସଞ୍ଜବତୀ ଜାଳିବ, ତାପରେ ସୁଇଚ୍ ଟିପିବ, ହେଲେ ରାତି ଅନ୍ଧାରକୁ ବଳ କ'ଣ ? ତେଣୁ ସେହି ନିର୍ଦ୍ଦେଶ ପାଳିବା ଅସମ୍ଭବ ଥିଲା । ···ଯାହା ହେଉ ବଧୂରକ୍ଷାକୁ ସମ୍ଭବ କରି ସଞ୍ଜବତୀ ଜାଳି

ଦେଲି, ଗୃହିଣୀ ଜାଣିବେ, ତାଙ୍କର ଧର୍ମ ରକ୍ଷା ହୋଇଚି···ମାତ୍ର ମନଟା କେମିତକା ଧୋକେଇଲା···ମନକୁ ମନ ପଚୁରିଲି—ଫାଙ୍କିବାକୁ ଦେଲନାତ ?

ଏହି ଫାଙ୍କରେ ଗୃହିଣୀ ଆସି ହଠାତେବେଳେ ମୋ ପାଖରେ ଠିଆ !···

'ସଞ୍ଜିବତୀ ହାଉ ହାଉ ଜଳୁଚି···ଅଇଛି ନା ହେଲି ପରି ?'

'ହେ ମା ଦକ୍ଷିଣେଶ୍ୱରୀ ହାଷାପୂଣି ! ···ରକ୍ଷା କର, ମା!'··· ସଙ୍କଟରେ ପଡିଲେ, ମଣିଷ ହାଁ-ଦେବତା ମାନୁ କି ନ ମାନୁ, ହାଁ-ଦେବତା ଠାରେ ଯେ ଏହିପରି ଆତ୍ମ ସମର୍ପଣ କରିଥାଏ, ଏହା ମୁଁ ପ୍ରାଣର କେନ୍ଦ୍ରସ୍ଥଳରେ ପ୍ରଥମ ହୋଇ ସେଦିନ ଅନୁଭବ କଲି ।

ପ୍ରକୃତରେ ସଙ୍କଟ-ତାରଣୀ ଜନନୀ ମୋ ହାଇମା ରେନା କଲେ, ପ୍ରସନ୍ନ ହେଲେ···ପ୍ରସନ୍ନ ମୁଖରେ ଗୃହିଣୀ ହସି ହସି କହିଲେ—-

'ମୁଁ ଠିକ୍ ସଞ୍ଜ ମୁହଁରେ ଘିଅ-ଦୀପ ଜାଳି ଠାକୁରାଣୀଙ୍କୁ ଦେଖେଇ, ତା'ଙ୍କ ମୁହଁ ଆଗରେ ଥୋଇ ଦେଇଥିଲି···ଘରେ ନ ଜାଳଥିଲେ ବ ଚଳିଥାନ୍ତା···ହଉ ନାଅତ ମା'ଙ୍କ ପ୍ରସାଦ ।'

ମୁଁ ସେ କି ଭକ୍ତି ଗଦ ଗଦ ପ୍ରାଣରେ ସେଦିନ ପ୍ରସାଦ ପାଇଥିଲି (ଖାଇଥିଲି), ତାହା ଭାଷାରେ ବ୍ୟକ୍ତ କରିବା କଠିନ ।

'ହଁ, ଶୁଣୁଚ...' କେମିତକା ଭାରି ଭାରି ଗଳାରେ ଗୃହିଣୀ ଏତକ କହିଲେ ।

'କଅଣ ?'—ମୁଁ ବି ଭାରି ଭଡ଼କି ଗଲି, ଭେଲକା ହୋଇ ପଚାରିଲି ।

'ବନ କି ଭାରି ଖର୍ଚ୍ଚ, ଭାରି ଜର !'

ମୋ' ମନକୁ ପାପ ଛୁଇଁଲା...ଗ୍ଲାନି ଥର ଉଠିଲା, ଥରେ ଥର କଣ୍ଠରେ କହିଲି—

'ତୁମେ ଯାଇଥିଲ ?'

'ନା, ଖୁଡ଼ୀର ପଡ଼ଶା-ଘରର ନୂଆସାଙ୍ଗିଅ ନାଁଅବୋହୂଟି କହୁଥିଲା...ତାଙ୍କ ଗହଣିରେ ଖୁଡ଼ୀର ଅସିବାର ଥିଲା ଦକ୍ଷିଣେଶ୍ବରକୁ ...ବନ ଯୋଗୁଁ ...'

'ମୁଁ ଯିବ ?...ଦେଖି ଅସିବ ?' ବାଧାଦେଇ କହିଲି ଓ ଯିବାକୁ ତିଆର ହେଲି ।

'ତୁମର ସବୁଥିରେ ଖାଲି ତୁର୍‌ତୁର୍‌ଅପଣ ! ବସନ୍ତ...ମା-ଦୁଧଖିଆ ପିଲାଟା···ମା କଣ୍ଠ ଅନୟୃମ କରିଥିବ...ଏଣୁ ତେଣୁ ଖାଇଥିବ—ତୋଟିଲି କି କହିଲୀ...ଟାଇଫାଉ...ମୁଁ ସେଦିନ ତାକୁ ବାରମ୍ବାର କରି ଡାକ୍ତର୍ କରି ଦେଇଥିଲି—ଆଲୋ ଓଲି ! ଝିଅଟା ନସ୍‌ମେଇଛି, ଏଣୁ ତେଣୁ ଖାଇବୁନି ।...ବାପ ଯେମିତି ଟାହିକା...ଝିଅ ଆଉ··· ଛାଡ, ତୁମର ଭାଲେଣି ନାହିଁ, ମୁଁ କାଲି ଯିବି ।'

ଗୃହିଣୀ ଚାଲି ଯାଉଥିଲେ, ମୁଁ ଦୁକୂଳ ପଣତ ପ୍ରାନ୍ତ ଓଟାରି ଦେଲି, ସେ ଫେରି ଚାହିଁଲେ, ମୁଁ କହିଲି—'ମୁଁ ଗୋଟିଏ କଥା କହିବି—ରାଗିବନି ତ ?'

ଗୃହିଣୀ ଫେରି ଠିକ୍ କରୁ କରୁ କହିଲେ—'ରାଗିବାର କଥା ହେଲେ ରାଗିବି'; ତା'ପର ଦାଣ୍ଡି କରି କହିଲେ—'ପେଟରେ ଗୋଟାଏ, ପାଟିରେ ଗୋଟାଏ, ସେ କଥା ମୋ ଗୁରୁ ଗୋଟେଇଁ ଶିଖେଇ ନାହାନ୍ତି —ତାହା ମୋ' ଦେଇ ହୋଇନି, କି ହେବନି ।'

ମୁଁ ଜାଣେନା, ଗୃହିଣୀର ଏହି ସତ୍‌ସାହସ ବହପ ଯୋଗାଇବାରୁ ହେଉ, କି ଆତ୍ମ-ପ୍ରତାରଣାର ପ୍ରତିକାର କରିବ, ଏହି ଦୃଢପଣରୁ ହେଉ, ମୁଁ ନିଃସଙ୍କୋଚରେ ମୋ'ର ଆଚରଣ ସମେତ ସେଦିନର ବନ-ପରିଦର୍ଶନ ସଂକ୍ରାନ୍ତ ଯାବତୀୟ ଘଟଣା ବଖାଣି ପିଟାଇ କହିଲି ।

ଶୁଣି, ଗୃହିଣୀ କେବଳ ନିଃଶ୍ବାସଟାଏ ପକାଇଲେ ଓ କହିଲେ—

'ସେଇଦିନ କହିଥିଲେ ଭଲ ହୋଇଥାନ୍ତା—କଥାରେ କହନ୍ତି

ପଣ୍ଡି, 'ଟୋଗ ଆଉ ଭୂଣ, ଧାରି ନିଏ ଘୁଣ'...ଯାଙ୍କୁ କେତେବେଳେ ହେଲେ ଠାବ ହେବନି, ଠା' ଉଣ୍ଡିଲା କ୍ଷଣି କରୋଡ଼ିରେ କାଠେ ବସେଇବ...ଛାଡ଼, ତୁମକୁ ଆଜ ସହଳ ସହଳ ଖାଇବାକୁ ହେବ... ଦ୍ୱିପହର ବେଳର ରାନ୍ଧଣା...ଟିକିଏ ଯା' ଗରମ କରି ଦେବ... ଅଳେଇ ଗଲେ, ମୁସ୍କିଲ...'

ଗୃହିଣୀ ଚାଲିଗଲେ...ଚଳିଛନ୍ତି, ଏ ଲକ୍ଷଣ ଅଦ୍ୟୋ ତାଙ୍କଠେଇଁ ଦେଖା ଗଲା ନାହିଁ...ଆଶ୍ଚର୍ଯ୍ୟ! ଏ'ପରି ଭାବ ସମ୍ଭାଳି ଯିବେ, ମୁଁ ଅଦ୍ୟୋ ଧାରଣା କରି ନ ଥିଲି...ବୋଧହୁଏ ଠାକୁର ଦର୍ଶନରୁ ଫେରିଛନ୍ତି... ଠାକୁର-ଦର୍ଶନର ପ୍ରଭାବ ପଡ଼ିଚି...ସେଇଥି ଯୋଗୁଁ ଏହା ଅସମ୍ଭବ ନୁହେଁ—ତା'ନ ହେଉଥିଲେ ଲୋକେ ଏତେ କଷ୍ଟ କରି ତୀର୍ଥ-ଦର୍ଶନ କରୁଥାନ୍ତେ କାହିଁକି ?...ଉପାସନା ପାଇଁ ଅମିତ ବ୍ୟୟରେ ଏତେ ଉପାସନା-ମନ୍ଦିର ପ୍ରତିଷ୍ଠା ହେଉ ଥା'ନ୍ତା କାହିଁକି ? ଏହିପରି ଆନୁଷ୍ଠାନିକତା ପୃଥିବୀବ୍ୟାପୀ...ଯେ କୌଣସି ଧର୍ମ-ସମ୍ପ୍ରଦାୟର କୃତ, ସଂସ୍କୃତ...ସୁତରାଂ ଏହି ପରିପ୍ରେକ୍ଷିରେ—**ଆନୁଷ୍ଠାନିକତା** ଆଡ଼ମ୍ବର-ବିଶେଷ ନୁହେଁ, ବିଶେଷ ଭାବରେ ମାନବର ଶ୍ରେଷ୍ଠ ଧର୍ମ **ମାନବିକତା** ବୋଧର ଉଦ୍‌ବୋଧକ ଓ ପ୍ରତିଫଳକ, ଧାରକ ଓ ବାହକ—ଏହା ଭଳି ବିଚାରିବା ଅଯୌକ୍ତିକ ହେବ କି ?

ପାଗଟା କେମିତିକା ଗୁଳୁ ଗୁଳିଆ ଥିଲା ...ପ୍ରାଣଟା କଲବଲ ହେଉଥିଲା...ବାରଣ୍ଡାରେ ଠା ପିଢ଼ା କରାଯାଇଥିଲା, ଖାଇବାକୁ ବସିଲି।...ଗୃହିଣୀ ପାଖରେ ବସି ବିଚଣା କରି ଦେଉଥା'ନ୍ତି ...

ମୋ'ର କ'ଣ ପ୍ରୟୋଜନ, କେଉଁଠାକୁ ରୁଚ, ତାହା ସେ ମୋ'ଠାରୁ ବେଶୀ ଜାଣନ୍ତି, ସେଇଥିପାଇଁ ବାରୁଥା'ନ୍ତି···ହଠାତ୍ କ'ଣ ଭେବ୍, ବିଚଣାଟା ଥୋଇଦେଲେ...ରନ୍ଧନଶାଳାକୁ ଉଠିଗଲେ ।···

ଆଖି ଯାହା ଦେଖେ, ମନ ତାହା ପରଖେ...ଗୃହିଣୀର ଅନୁପସ୍ଥିତିରେ ଗୃହିଣୀର ଦୁଇଟି ଛବି ଲଗାଲଗି ରଖି, ମୁଁ ତନଖିବାକୁ ମନ କଲି...ଗୋଟିଏ କିଛିକ୍ଷଣ ଆଗର ଭୈରବୀ-ମୂର୍ତ୍ତି, ଅନ୍ୟଟି ତାଙ୍କର ଅଇଛିଙ୍କାର ଘରଣୀ-ବୃତ୍ତି । 'ଭୈରବୀ-ମୂର୍ତ୍ତି' କହିବାର ତାତ୍ପର୍ଯ୍ୟ, ଯେତେବେଳେ ସେ ସୁନ୍ଦା ଓ କପାଳରେ ଧାରଣ କରିଥିଲେ ଯେଉଁ ମେଞ୍ଚା ମେଞ୍ଚା ଦେବୀଙ୍କ ସିନ୍ଦୂର, ତାହା ଦେଇଥିଲା ତାଙ୍କୁ ଅବିକଳ ସେହି ଦେବୀ ରୂପଟି । ମୁଁ ମନେ ମନେ ହସିବାକୁ ଯାଇ ହୋଇଥିଲି ସଙ୍କୁଚିତ ।···ଛିଡ଼, ଚୌଳିବ...ହେଲେ, ମାନଦଣ୍ଡ ?··· ମନେ ପଡ଼ିଗଲା କିଛିଦିନ ଆଗେ କାଗଜରେ ପଢିଥିବା ଜଣେ ବିଶିଷ୍ଟ ଫରାସୀ ସାହିତ୍ୟିକଙ୍କ ବିଦଗ୍ଧ ବାଣୀ—'ମୁଁ ମନୁଷ୍ୟକୁ ଆଶା କରେ ନାହିଁ, କିନ୍ତୁ ମନୁଷ୍ୟତ୍ୱକୁ ଆଶା କରେ ।' ମନୁଷ୍ୟ ଭୋଗର ପ୍ରତୀକ, ମନୁଷ୍ୟତ୍ୱ ତ୍ୟାଗର—ଗୋଟିଏ ସ୍ୱାର୍ଥପରତାର, ଅନ୍ୟଟି ନିଃସ୍ୱାର୍ଥପରତାର ପରିପୂରକ, ସେହିହେତୁ, ପ୍ରଥମ ଠାରୁ ଆଶାର ସମ୍ଭାବନା ନାହିଁ, ରହିଛି ଦ୍ୱିତୀୟଟିରୁ — ଏହାହିଁ ତାଙ୍କର ବକ୍ତବ୍ୟ । ଯଦି ଏହି ଉକ୍ତିକୁ ପ୍ରାମାଣ୍ୟ ବୋଲି ଗ୍ରହଣ କରିଯାଏ, ତେବେ ଗୃହିଣୀ ପକ୍ଷରେ କେଉଁ ସତ୍ତ୍ୱଟି ପ୍ରମାଣ—ଗୃହର ଗୃହିଣୀ ନା ଦେବାଳୟର ବ୍ରହ୍ମଗୃହିଣୀ ? ବିଜ୍ଞାନ କହେ, ଦୁଇଟି ବିପରୀତମୁଖୀ ବସ୍ତୁର ସଂଘର୍ଷରେ ସ୍ଫୁଲିଙ୍ଗର ଉତ୍ପତ୍ତି—ଏହି ସ୍ଫୁଲିଙ୍ଗହିଁ ଶକ୍ତିର ଉତ୍ସ ! —ଜୀବନ କ୍ଷେତ୍ରରେ ମଧ୍ୟ ସେହି

କଥା···ଦୁଇଟି ବିପରୀତଧର୍ମୀ ସ୍ତରର ସଂଘର୍ଷରେ ଜୀବନ ତରଙ୍ଗ ! ଜୀବନୀ ଶକ୍ତିକୁ ଅଧୃତ କରିବାର ଶକ୍ତି ମାନବର ଅଛି । ପ୍ରଶ୍ନ— ଗୃହିଣୀ ଯଦି ତ୍ୟାଗ ଓ ଭୋଗର ଦ୍ୱନ୍ଦ୍ୱର ଊର୍ଦ୍ଧ୍ୱରେ ରହିଥା'ନ୍ତି, ତେବେ କେଉଁଗୁଣରେ ? —ଚିନ୍ତାର ଅନ୍ତର ଗଭୀର ସ୍ତର ଭେଦ କରି, ଉତ୍ତର ଅନୁସନ୍ଧାନ କରିବି···

ଏତିକିବେଳେ ଝଲକାଏ ଶୀତଳ ପବନ ଅଗ୍ନିନକ ଆସି ମୋ' ମୁହଁରେ ଶୀତଳ ଝାପ୍‌ଟା ଦେଲା···ମୁଁ ମୁହଁ ଟେକି ଅନାଇ ଦିଅନ୍ତେ, ହଁ। ସାଁ ବତାସ, ବିଜୁଳି, ଘଡ଼ଘଡ଼ି ଆଉ ପ୍ରବଳ ବର୍ଷାର ଜୀବ୍ରଧାର୍··· ତୀର୍ଯ୍ୟକ୍ ପତନ ହେତୁ ମୁଁ ସ୍ଥାନ ତ୍ୟାଗ କରିବାକୁ ବାଧ୍ୟ ହେଲି··· ଆହାର୍ଯ୍ୟ ପଡ଼ି ରହିଲା···ଗୃହିଣୀ ଓ ମୋ' ଭିତରେ ପ୍ରାୟ ଅଧଘଣ୍ଟା କାଳ ଅନତିକ୍ରମ ବ୍ୟବଧାନ ସୃଷ୍ଟି ହେଲା । ଉଭୟେ ଯେତେବେଳେ ମିଳିତ ହେଉଁ, ସେତେବେଳେ ସମସ୍ୱରରେ କହୁଉଠୁଁ—'ଗୋଟାଏ ଦୁର୍ଯୋଗ !'...ଗୃହିଣୀ ପୁଣି ବଳାଇଲେ ଖାଇବାକୁ, ଯେତେ ମନା କଲେବି ଛାଡ଼ିଲେ ନାହିଁ, ଡାଟିଆଏ ଗରମ ଦୁଧ ପିଇବାକୁ ବାଧ୍ୟ ହେଲି ।

ମୋତେ ପାନ ଦେଲାବେଳେ ଗୃହିଣୀ କହିଲେ—

'ମନଟା କାହିଁକି ଭାରି ଗୋଳେଇ ଘୋଳେଇ ହେଉଚି··· ରାତିତ ବେଶୀ ନୁହେଁ, ଆଠଟା ହେବ···ଥରେ ବାନ୍ତକ ଦେଖି' ଆସନ୍ତୁ···'

ମୋ'ର ବି ସେହି ଇଚ୍ଛା ପ୍ରବଳ ଥିଲା ।   ମୁଁ କହିଲି—

'ବେଶ୍ ତ, ଚାଲ…'

ଗୃହିଣୀ କିଛି ନ କହି ବାହାରିଗଲେ, ଆକାଶଟାକୁ ଅନାଇ ଦେଇ, ଲେଉଟି ଆସି କହିଲେ —

'ନା ଥାଉ…!'

'କାହିଁକି ?'

'ବର୍ଷା ନାହିଁ ସତ, ହେଲେ … କାଉଁଳିଆ ପାଗଟା, ତୁମର ବାହାରିବା ଠିକ୍ ହେବନାହିଁ ।'

ମୁଁ ଅବାକ୍…କିଛିକ୍ଷଣ ପରେ ବିମୂଢ଼ ଭାବ ତ୍ୟାଗକରି କହିଲି—

'ଅଚ୍ଛା, ତୁମ ଆଖିରେ ମୁଁ କ'ଣ କୁହୁଡ ? ବାନକୁ ଭଲ ଛୁଅ ?

ଗୃହିଣୀ ମୃଦୁ ମୃଦୁ ହସି କହିଲେ—

'ବୁଝି ବିଚାରି କାର୍ଯ୍ୟ କଲେ, ପର୍ମାଦ (ପ୍ରମାଦ) ନପଡ଼ଇ ଭଲେ' ଏ' କଥା କ'ଣ ତେବେ ମିଛ ?   ଆମେ ଶାସ୍ତ୍ର (ଶାସ୍ତ୍ର) ମାନୁନା, ବିଧି ମାନୁନା; ସେଇପାଇଁ ଆମର ବାଟ ଅବାଟ ନାହିଁ…ଖିଅଲରେ ମାତି ଛୁଟୁଁ, ଝୁଣ୍ଟୁ, ( ମରୁ ) …'

'ମରୁ' ଉଚ୍ଚାରଣ କଲେନାହିଁ ଗୃହଗଲେ, ମନ ଚଞ୍ଚଳ ଥିଲେ ବି ଚଞ୍ଚଳ ପଦକ୍ଷେପରେ ନୁହେଁ, ଲକ୍ଷ୍ୟ କଲି ।···ହଁ, 'ମରୁ' ଏଇ ଶବ୍ଦଟି ଉହ୍ୟ ରଖିବାର କାରଣ, ମୁଁ ବେଶ୍ କରି ଜାଣେ,ସେହି ଶବ୍ଦୋଚ୍ଚାରଣଟା ତାଙ୍କର ସଂସ୍କାରକୁ ବାଧେ । ସଂସ୍କାର ବ୍ୟାଧିଗ୍ରସ୍ତର ସଂସ୍କୃତବୋଧ ! ଅନ୍ତର ଅବାକ୍ ହୋଇଗଲା ! ମନକୁ ମନ ଏହି ବାକ୍ୟ ସାର କଲି—

'ଜ୍ଞାନୀ-ବ୍ୟକ୍ତି ବିଶ୍ୱାସର ଉପଦେଶ ଦିଅନ୍ତି, ଅଜ୍ଞାନ ବ୍ୟକ୍ତି 'ବିଶ୍ୱାସ' ପାଳନ କରନ୍ତି ।'

ସେଦିନ ରାତରେ ଏହି **ବିଶ୍ୱାସକୁ** କେନ୍ଦ୍ର କରି ଯେଉଁ ପ୍ରତିକ୍ରିୟା ସୃଷ୍ଟି ହେଲା ମୋ'ର ଅବଚେତନ ମନରେ, ତାହା ନିଦ୍ରାର ଅଚେତନ ଅବସ୍ଥାରେ ରୂପାୟିତ ହେଲା ଏହିପରି ସ୍ୱପ୍ନକୁ ଆଶ୍ରୟ କରି—

ଗୃହିଣୀ ଆଉ ଗୃହିଣୀ ହୋଇ ନାହାନ୍ତି, ସ୍ୱୟଂ ସାରଦା-ମଣି··· ମୋତେ କହୁଚନ୍ତି; ତୁମେ ରାମକୃଷ୍ଣ···ମୁଁ ଯାକ ଯାକ ହେଲି··· 'ବିଶ୍ୱାସ କର ! ଆଖି ବୁଜ; ନିଜକୁ ଅନ୍ତରର ଅନ୍ତରତମ ମୂଳରେ ଡୁବାଇ ଦେଖ···' ସତେତ ମୋ'ର ସେହି ପରମହଂସଙ୍କର ମୁଖାକୃତି; ଅଙ୍ଗର ବେଶ, ବାସ୍ ! 'ଆଉ ଭୟ କ'ଣ ? ଆସ··· ବିନାକ ଆମର ସେହି କରାଳବଦନୀ ଠାରେ ସମର୍ପି ଦେବା !··· ଶୁଭଙ୍କରୀ-ମାଆ ଜଗଜ୍ଜନନୀ !— ଜନ୍ମ—ମୃତ୍ୟୁ ଯାହାଙ୍କର ଚରଣ-ଶରଣ ଭିଖାରୀ···ମୁଁ ସେଇ କଥା କାର୍ଯ୍ୟରେ କରିବାକୁ ଯା'ନ୍ତେ, ହଠାତ୍ ଦକ୍ଷିଣେଶ୍ୱରୀ ମୂର୍ତ୍ତି କୁଆଡ଼େ ଅନ୍ତର୍ଦ୍ଧାନ ହୋଇ-

ଗଲେ । ଦକ୍ଷିଣେଶ୍ୱର ମନ୍ଦିର ସ୍ଥଳେ ଦେଖାଗଲା ଦିଗନ୍ତ ବିସ୍ତାରୀ ଶ୍ମଶାନ...ଶ୍ମଶାନର ନିସ୍ତବ୍ଧତା ଭେଦ କରି ଓ ନିସ୍ତବ୍ଧତା ଭଙ୍ଗ କରି ଭାସି ଆସିଲା ସୁଦୂରାଗତ ବୃକୁଫଟା କଣ୍ଠ-ଧ୍ୱନି !—'ଗଙ୍ଗା ଗଙ୍ଗା' ଡାକ !···ପରିଚିତ କଣ୍ଠ-ଧ୍ୱନି—ଚଣାବାଲାର !! ମୁଁ ତତ୍କ୍ଷଣାତ୍ 'ମୁଁ' ପାଲଟି ଗଲି···ସେହି ଧ୍ୱନିକୁ ଅନୁସରଣକରି ଧାଇଁଲି ହୃଦୟର ବ୍ୟଥା-କାତର ଧ୍ୱନିକୁ ଚିହ୍ନିକରି···କିନ୍ତୁ କୁକ୍କୁର ଶୃଗାଳର ବିକଟ ଆରାବ ସେହି ଧ୍ୱନିକୁ କଲା ଗ୍ରାସ···ଯେତେ ପ୍ରୟାସ କଲି, ତାହା ଉଦ୍ଧାର କରି ପାରିଲି ନାହିଁ ··· ହେଲି ବ୍ୟର୍ଥ ପ୍ରୟାସ, ନିସ୍ୱଶ, ଅବଶ··· ଠିକ୍ ଏତିକିବେଳେ···

'ଉଠ ! ବାବୁଙ୍କ ଦେଖିଯିବା ପରି···ଚା' ଥଣ୍ଡା ହୋଇ ଯାଉଛି···'

ସତକୁ ସତ ଆଖି ମେଲାଇ ଦେଖେଁ—ଗୃହିଣୀ ସମ୍ମୁଖରେ ଠିଆ ···ଚା' କପ୍ ଅବଶ୍ୟ ତାଙ୍କ ହାତରେ ନ ଥିଲା । ··· ··· ··· ··· ··· ··· ··· ··· ··· ··· ··· ··· ··· ··· ··· ··· ··· ···

ବାବୁ ଭଲ ଅଛି । ରାତିରେ ଅବଶ୍ୟ ଜରର ମାତ୍ରାଟା ବଢିଥିଲା । ସକାଳେ ନର୍ମାଲ୍ ଅଛି—୯୭ ଡିଗ୍ରୀ (ଫର୍ନହିଟ୍)···ଗୃହିଣୀ ରାମକୃଷ୍ଣ ଓ ଭଗବତୀ ଦେବୀଙ୍କର ଯେଉଁ ପତଳା କାଠ-ପଟା-ଛଅରି-ଛବି ଆଣିଥିଲେ, ତାହା ବାବୁ ହାତରେ ଧରାଇ ଦେଲେ ଓ ଦକ୍ଷିଣେଶ୍ୱରୀଙ୍କ ପ୍ରସାଦ ଖୁଆଇ ଦେଲେ···'ଜର ନା ଜରର ବାପ ଆଉ ଆସିବ',—ଆତ୍ମ-ବିଶ୍ୱାସର ଏହି କଥାଟି କହି ଯେଉଁ ଆଶ୍ୱାସନା ଦେଲେ, ତାହା

ଅଉ କାହାରକୁ ସ୍ପର୍ଶ କରୁ କି ନ କରୁ, ମୋତେ ସ୍ପର୍ଶ କରିଥିଲା ନିବିଡ଼ ଭାବରେ, ଏ'କଥା ମୁଁ ଅବଶ୍ୟ ମାନିବି ।

ଜ୍ୱାଇଁର ଅନୁରୋଧ...ଝିଅ ପିଅ ନ କରି ଯିବୁନି...ବିଶେଷତଃ ରବିବାର...ଅଫିସ୍ ଛୁଟି...ପଙ୍‌କ୍ତି ଭୋଜନର ଅବକାଶ ସହଜରେ ତ ଘଟେ ନାହିଁ, ଏହି ଯୁକ୍ତି ସେ ବାଢିଥିଲେ.. ଖୁକୀର ଅବ୍‌ଦାର... ତା'ର ମା ମାଗିବାରୁ, ମୁଁ ବି ମୁଣ୍ଡ ଟୁଙ୍ଗାରିଲି ।

ରବିବାରିଆ ଖବର କାଗଜଟା ଜ୍ୱାଇଁ ଆଣି ଧରାଇ ଦେଲେ... ଝିଅ ପ୍ରାଥମିକ ଖାଦ୍ୟର ଥାଳିଆଏ ଆଣି ଥୋଇଦେଲେ ।... ନାତି, ନାତୁଣୀ ମାନଙ୍କର କି ଆନନ୍ଦ ! —ଏମିତିକା କୁଣିଆଖିଆ ସୁଖଡ଼ କଦବା କେମିତି ! 'ରାକ୍ଷସ' ଗୁଡାକ କହୁ ମା ଯେତେ ଆକଟ କଲେବି, ଅଜାର ବଳରେ ବଳୀୟାନ, ସେମାନେ ମାନିବେ କାହିଁକି ?

ରବିବାର !...ଏହି ବାର ସଙ୍ଗେ ବେବୀର ଜନ୍ମ-ଦିନ, ତଥା ଗଙ୍ଗା ସହ ଚଣାବାଲିର ପ୍ରତ୍ୟାଗମନ ପ୍ରସଙ୍ଗ ଜଡ଼ିତ ଥିବାରୁ ସ୍ମୃତି ଯେ ଅବଚେତନର ତଳ ମହଲରୁ ଚେତନର ଉପର ମହଲକୁ ଉଠି ଆସି ନ ଥାଏ, ତାହା ନୁହେଁ...ଏତିକିବେଳେ ମା'ର ଆଖି ପଡ଼ିଯାଏ ଖବର କାଗଜର ପ୍ରଥମ ପୃଷ୍ଠାର ଶୀର୍ଷ ଲେଖାରେ ...ବଡ଼ ବଡ଼ ଅକ୍ଷରରେ ଛପା —

'ବିହାର ପ୍ରଦେଶରେ ପ୍ରାକୃତିକ ବିପର୍ଯ୍ୟୟ !'

'ଭୀଷଣ ଝଡ଼ ତୋଫାନ !'

'ପ୍ରବଳ ଭୂମି କମ୍ପ !...ରେଲ୍, ଲାଇନ ବିଚ୍ୟୁତ !...ବସ୍-ଦୁର୍ଘଟଣା ! ...ବହୁ ଜନପ୍ରାଣୀ ଜୀବନାନ୍ତ !'

'ଆରା ଜଳରେ ପ୍ରଳୟ ତାଣ୍ଡବ ! —କ୍ଷତିର ପରିମାଣ ଅପରିମେୟ !!'

ମୁଁ ଆଉ ଖବର ପଢ଼ିବି କ'ଣ ? କାଲିର ସ୍ୱପ୍ନ-କଥା ମନେ ପଡ଼ିଗଲା...ମୁଁ ମନକୁ ମନ ପ୍ରଶ୍ନ କଲି, ସ୍ୱପ୍ନ କ'ଣ ନିଛକ୍ ସ୍ୱପ୍ନ ନୁହେଁ, ଭବିଷ୍ୟତର ପୂର୍ବାଭାସ ନିହିତ ସତ୍ୟ ?—ଯାହାକୁ କହନ୍ତି ସତର୍କୀକରଣ (ପ୍ରିମୋନିସନ) ?

ମୋ' ଝିଅ ପାଖରେ ଠିଆହୋଇ ଏଇଟା ଖାଅ, ସେଇଟା ଖାଅ ବୋଲି ବଡ଼ଉ ଥିଲି, କେତେବେଳେ ନିଜେ ଧରାଇ ଦେଉଥିଲି ...ମୁଁ ପଢ଼ୁ ପଢ଼ୁ ହଠାତ୍ ଆତଙ୍କିତ ହୋଇ ଉଠିବାର ଦେଖି, ଏହାର କାରଣ ନିଶ୍ଚୟ କୌଣସି ଆତଙ୍କଜନକ ଖବର — ଏଇୟା ଠଉରେଇ, ମୋ' ହାତରୁ କାଗଜଟା ଉଠାଇ ନେଲା, ଶୀର୍ଷ ଲେଖା ଗୁଡିକ ପଢ଼ିଲା ଓ ମୋ'ର ଅବ୍ୟକ୍ତ ଆଶଙ୍କାକୁ ଯେମିତି ବ୍ୟକ୍ତ କରି ପଚାରିଲା—

'ବାବା ! ଚଣାବାଲା ଫେରିଚତ ?'

'ମୋଟିଆ ଫେରୁଛି...କହୁଥିଲି ଆଜ ସେ ଫେରିବ ।'

ତା'ପର ମୁଁ ମୋଟିଆ ଠାରୁ ଯାହା ଯାହା ଶୁଣିଥିଲି ତାହା ଓ କାଲି ରାତିର ସ୍ୱପ୍ନ-କଥା, ସମସ୍ତ ଠିକ ନାଖି କରି କହିଲି ।

ମୋଟିଆର ବିବୃତ ସମ୍ପର୍କରେ ଝିଅ ଏତିକ ପ୍ରଶ୍ନ କଲା—

'ଶାମବଜାର, ପୁଲିସ୍ ସମ୍ପର୍କରେ ସେ କିଛି କହୁଚି, ବାବା ?'

'ନାଁ...ମୁଁ ବି ତ ପଚାରିନି'

ମୋତେ ନିବ ଦେଖି, ପ୍ରସଙ୍ଗ ବଦଲାଇ, ସ୍ୱପ୍ନ ସମ୍ପର୍କରେ ସେ ହସି ହସି କହିଲା —

'ସ୍ୱପ୍ନ କଥା ଭାବୁଚ ?'...ସାନ୍ତ୍ୱନା ଦେଲାଭଳି ପୁଣି କହିଲାଗିଲା—

'ସ୍ୱପ୍ନ ତ ସତ୍ୟ ନୁହେଁ ... ଖବର କାଗଜ ମଧ୍ୟ ଅନେକ ଘଟଣା ଅତିରଞ୍ଜିତ କରି ଲେଖି ଥା'ନ୍ତି...ସ୍ୱପ୍ନ ଆମ ମନର ଡରାଣ... ନୁହେଁ କି, ବାବା ?'

ମୁଁ ସାଯ୍ୟ ଦେଲି, କିନ୍ତୁ ମୋ'ର ଲକ୍ଷ୍ୟ ଥାଏ ଗୃହିଣୀଙ୍କ ପ୍ରତି ...ସେ ସେ'ଠି ଥାଇଁ କାନେଇ କାନେଇ ସବୁ ଶୁଣୁଥିଲେ, ମୁଁ ଜାଣେ —ଯଦିଓ ବାହାର ହେସ ଭିତରେ ସେ ଥିଲେ ବ୍ୟତିବ୍ୟସ୍ତ...ସେ କିଛି

ନା କିଛି ମନ୍ତବ୍ୟ ପ୍ରକାଶ କରିବେ, ଆଶା କରିଥିଲି ··· ଆଶା ଫଳବତୀ ହେଲା ··· ସେ କହିଲେ—

'ଧନ୍ଦ ହେଲେ ଧନ୍ଦା ହୁଏ ନାହିଁ···ତୁମେ ଧନ୍ଦା କରିଯିବ, ଧନ୍ଦ ହେବାର ଯିଏ, ସେ ଆଉ **ଜଣେ** ···ଗଲି, ଗଲି ମୁଁ ବନ୍ଧକୁ ଶୁଆଇଁ···'

ବାପ-ଝିଅ ଆମେ ଦୁହେଁ, ପରସ୍ପରକୁ ବଲ ବଲ ଆଖିରେ ଡକାଡକି ହେଲୁ କେବଳ ।

ସେ'ଘରୁ ଆର କୋଠରିକି ଉଠି ଗଲେ ଦୁହେଁ ··· ଝିଅ ବସାଇଦେଇ କି କାମରେ ବାହାରିଗଲି···ମୋ' ମନରେ ସଂସ୍କାର ଓ ସଂସ୍କୃତିର ଦ୍ୱନ୍ଦ୍ୱ ପୁଣି ତୀବ୍ର ହୋଇ ଉଠିଲା ।···ମୁଁ ସଂସ୍କାରର ···ସଂସ୍କୃତିର ଉପାସକ···ଅପରିଚ୍ଛନ୍ନ ସଂସ୍କାର ଠାରେ ନତ ସ୍ୱୀକାର କରିବ—ଅସମ୍ଭବ !··· ପର ମୁହୂର୍ତ୍ତରେ ମୋ'ର ଏହି ଅହମିକା (ଇଗୋ)କୁ ଧକ୍କା ଦେଇ କିଏ ଯେମିତି ମୋର ଚିନ୍ତାଧାରାକୁ ଉନ୍ମେଷିତ ଓ ପ୍ରତିଧ୍ୱନିତ କରି କହିଲା—ଏ'ପରି ସଂସ୍କାର ଅଛି, ଯାହା ଅକରିକ ରତ୍ନ ବିଶେଷ—ଏ'ପରି ସଂସ୍କୃତି ଅଛି, ଯାହା ଅନ୍ତଃସାର-ଶୂନ୍ୟ ଔଜ୍ଜ୍ୱଲ୍ୟ ମାତ୍ର । ... ଆମେ ଧନ୍ଦହେଉ, ଚିହ୍ନି ଜାଣୁନା, ଚିହ୍ନିବା ଗ୍ରାହକ ନୋହୁ ବୋଲି । ... ଭଲ, ଭେଲ ଚିହ୍ନିବାକୁ ହେଲେ କେଉଁଳ ଶିକ୍ଷା, କେଉଁଳ ଦୀକ୍ଷାର ପ୍ରୟୋଜନ, ତାହା ଦୁନିଆ ଏଯାଏ ଠିକ୍ କରି ପାରି ନାହିଁ···ସେଥିପାଇଁ ଶିକ୍ଷା-ନୀତିର୍ଣ୍ଣୟ ଆଜି

ଏତେ ପରିବର୍ତ୍ତନଶୀଳ··· ସତ୍ୟ ଯାହା ତାହା ରହୁଚି ଦୁନିଆର କେଉଁ ଅଜ୍ଞଆର ବାହାରେ... ଏ କଥା ସତ୍ୟ ନୁହେଁକି ?

ଏହିପରି ଚିନ୍ତା–ଧାରା ଭିତରେ କେତେବେଳେ ଯେ ମୁଁ ଜଙ୍ଘାଇଁ ଘରୁ ନିଜ ଘରକୁ ଫେରି ଆସିଛି, ତାହା ଜାଣି କରି ହୁଉ୍ନା, ଜାଣି ପାରି ନାହିଁ···ଏପରି କି'ଣ ବୈକାଳ-ଭ୍ରମଣର ବେଳା ଗଡ଼ି ଅବେଳା ହୋଇ ଯାଇଛି, ତାହା ମଧ୍ୟ ହୋବ୍ କରି ପାରିନାହିଁ ।... ଚେତା ପଶିଲା ତେତିକିବେଳେ. ଯେତେବେଳେ ଗୃହିଣୀ ଆସି ମୋତେ କହିଲେ—

'ଆଜି କି'ଣ ବୁଲି ଯିବନି ?...ଚଣାବାଲ ଚ୍ଛୁଆଠାକୁ ଯୋଇନି, ଭଲରେ ଭଲରେ ଆସି ପହଞ୍ଚିଲ କି ନା, ଯାଇଁ ଠିକିଏ ଖବର ନିଅ, ତଲାସ କର ... ଚୁଛାକୁ ଭଲହେଲେ କି'ଣ ହେବ ? ··· କଷ୍ଟ ନ କଲେ, କୃଷ୍ଟ (କୃଷ୍ଣ) ମିଳେନା, ଏ' ପରା ଶାସ୍ତ୍ର (ଶାସ୍ତ୍ର) ବଚନ !'

ମୁଁ ଅପ୍ରତିଭ ହୋଇଗଲି···ଗୃହିଣୀ ଆଡେ ଅପଲକ ଦୃଷ୍ଟିରେ ଚାହିଁ ରହିଲି ...ଗୃହିଣୀ ରାମ କି ବସ୍ତୁ ନ କହି, ସପ୍ରତିଭ ଦୃଷ୍ଟିରେ ଚାହିଁଲେ ।...ନିର୍ବୀକଳ୍ପ ଭାବରେ ମୋ'ର ଲୁଗା ଜାମା ମୋତେ ବଢ଼ାଇ ଦେଲେ ।

ମୁଁ ଅଣବିକ ଶକ୍ତିର ପ୍ରେରଣା ଅନୁଭବ କଲି···ଏକାବେଳକେ ରକେଟ୍ ବେଗରେ ଗତି କରି କଲେଜଗ୍ଣ ଆର୍ ଭେଦକଲି···ସେତିକି

ନୁହେଁ, ଯଥା-କକ୍ଷ ପରିକ୍ରମାରେ ଚଣାବାଲାର ଅସ୍ଥାନକୁ କେନ୍ଦ୍ର କରି ପ୍ରଦକ୍ଷିଣ କରିବାକୁ ଲାଗିଲି ।

ସେତେବେଳେ ଦୋକାନରେ ଭାରି ଭିଡ଼ ... ଗହକବେଳ··· ବାରବାର ଚାଲିଛି ପୁରା ଦମ୍‌ରେ !···ମୋଟିଅ ନୂଆ ଚଣା-ବାଲା ହେଲେ କ'ଣ ହେବ, ହାତ ଚଲାଇ ଥାଏ ବେଶ୍ ଫୁର୍ତ୍ତି ଫୁର୍ତ୍ତି··· ଦିନକ ଭିତରେ ଏତେଟା ଦକ୍ଷତା ହାସଲ କରିଛି, ଦେଖି କାବା ! ··· ନଜର ପଡ଼ିଗଲା ହଠାତ୍ ତା'ର ଆସନ ପ୍ରତି ··· ଗଦୀ କ'ଣ ବଦଳିଚ ?···ନିରିଖି ଦେଖିଲି — ସେହି ଗଦୀ, ଉହାଡ଼ଟି କେବଳ ନୂତନ···'ଲକ୍ଷ୍ମୀ ମନ୍ଦିରରେ ଲକ୍ଷ୍ମୀଙ୍କ ଘଟ ବଦଳେ ନାହିଁ, ଲକ୍ଷ୍ମୀଙ୍କ ପହରଣ ବଦଳେ'···ଲାଇଟ୍ ଆଡ଼କୁ ସ୍ୱତଃ ନଜର ଗଲା···ସେହି କାର୍ବାଇଡ୍ ଷ୍ଟାଣ୍ଡ···ରଙ୍ଗ ଲାଗିହୋଇ, ବିଲକୁଲ ନୂଆ ପାଲଟିଛି··· ତୈଜସପତ୍ର ସେହି ପିତଳ ସାଜସରଞ୍ଜାମ···ମଜାଘସା ହୋଇ ନୂଆ ପରି ଝଟକୁଛି···କାଚ ବାକ୍‌ସଟା ପୁରୁଣା ହୋଇ ଆଉ ନାହିଁ···ତା'ର ଶିଠା ଚଉକା ପ୍ରେମଟା ରଙ୍ଗ-ପାଲିଶ୍ ହୋଇ ଝଟ ଝଟ···ଆଉ ସେଥିରେ ବସିଛି ସ୍ରେଫ୍ ନୂଆ କାଚ···ବେତାଠାବ ନୂଆ ଆମଦାନି ନ ହେଲେ ବି ଗେରୁମାଟି ରଙ୍ଗରେ ଏକଦମ୍ ସଜମାଟିଆ — ନୂଆକୁ ଟକ୍କର ଦେବ ।

ସମଗ୍ର ଦୃଶ୍ୟଟି, ସଭ୍ୟତାର ପୁଚ୍ଛତଳେ ଆଦିମତା ବିଲୁପ୍ତ, ଏହିପରି ଗୋଟାଏ ଅନୁଭୂତି ଉଦ୍ରେକ କରିଦେଲା ମୋ' ଭିତରେ ।

ପଣ୍ୟ-ଦ୍ରବ୍ୟାଦିର ସମ୍ଭାର ··· ସେଥିରେ ନୂତନତ୍ୱର ସନ୍ଧାନ ଅବଶ୍ୟ ମିଳିଲା ନାହିଁ, ତେବେ ସେଥିର ସ୍ୱାଦୁରେ ଯେ ନୂତନତ୍ୱ

ଥିବ, ଏହା ନିଃସନ୍ଦେହ । କାରଣ ନୂତନ କାରିଗର, ନୂତନ ବିକାଳୀ, ବିଶେଷତଃ ନୂତନ ଆଧାର—ଏଥିର ଗୋଟାଏ ସ୍ବର୍ଗ-ମୋହ ଅଛିତ ?

ସତ୍ୟ ଏକ ଓ ଅଭିନ୍ନ ! —ବିଭିନ୍ନ ଯୁଗର ରୁଚି-ଭେଦ ତା'କୁ ରୂପ ରସ ଗନ୍ଧର ପ୍ରଭେଦ (ଅଭିନବତ୍ୱ) ଦାନ କରିଥାଏ, ସେଥିଯୋଗୁଁ ତାହା ଚିର ନୂତନ···ଚିରନ୍ତନ···ଚିର ସୁନ୍ଦର !

ଏହୁ ପଶରା ଦେଖି, ଖାଉଟିଙ୍କ କଥା ଦୂରେ ଥାଉ, ଦର୍ଶକମାନେ ମଧ୍ୟ 'ଅର୍ଦ୍ଧ୍ରାଣଂ ଅର୍ଦ୍ଧ-ଭୋଜନଂ' ପରି ନୂତନତ୍ୱର ପୁଲକ ଯେ ଅନୁଭବ କରୁ ନ ଥିବେ, ତାହା ନୁହେଁ ।

ମୁଁ ଖାଉଟି ଓ ଦର୍ଶକଙ୍କ ମଝାମଝି—କାରଣ ମୁଁ ଚଣା-ଭକ୍ତ ନ ହେଲେ ମଧ୍ୟ ଚଣାବାଲ-ଭକ୍ତ । ସେହିହେତୁ ମୋ'ର ନୂତନତ୍ୱ -ବୋଧ ଥିଲି ଅନନ୍ୟ-ସାଧାରଣ ।

ଦାର୍ଶନିକମାନେ କହନ୍ତି—ଆସକ୍ତି, ଅନାସକ୍ତି···ପ୍ରବୃତ୍ତି, ନିବୃତ୍ତି ମନୋଜଗତରେ ଦୁଇଟି ଭାବରାଜ୍ୟ···ଘନିଷ୍ଠ ପଡୋଶୀ···ସୀମା-ଦ୍ୱନ୍ଦ୍ୱ ଯେଜି ଦୁହିଁଙ୍କ ମଧ୍ୟରେ ରହିଚି ନିରବଧି ଅନ୍ତର୍ଦ୍ୱନ୍ଦ୍ୱ ;··· ଏହି ସୀମାରେଖା ସୂକ୍ଷ୍ମାତିସୂକ୍ଷ୍ମ ··· ଜୀବାତ୍ମା ପକ୍ଷେ ସେଥିର ଉପଲବ୍ଧି ଗଭୀର ଜୀବନ-ଦର୍ଶନ-ସାପେକ୍ଷ···ସେହି ଆତ୍ମ-ଦର୍ଶନରେହିଁ ରହିଚି ନୂତନତ୍ୱର ଆନନ୍ଦ !

ମୁଁ ଏହି ଆନନ୍ଦର ତରଙ୍ଗ ସ୍ପର୍ଶ କଲି...'କୁହ'ଙ୍କ ଚୈତନ୍ୟ ଫେରି ଉଠିଲେ...କିନ୍ତୁ 'ଭୂତ'ଙ୍କ ପାଦ ଭିଡ଼ ଠେଲି, ଭିତରେ ପଶିଲା ... ନୂଆ-ଚଣାବାଲା ସମ୍ମୁଖରେ ଉପସ୍ଥିତ ହେଲି...ସେ ଚାହାଁଇଲା ମୋତେ...ମୁଁ ବି ଚାହାଁଇଲି ତା'କୁ...ଯେଉଁ ଦାବୀ ଗୋଚରକଲି ଅକୁହା ଭାଷାରେ, ତା'ର ଶବ୍ଦରୂପ ଏହିପରି—'ଚଣା-କଣାଳୀଙ୍କ ଠାରୁ ମୋ'ର ଗରଜ କିଛି କମ୍ ନୁହେଁ, ବରଂ ବେଶୀ; ଯେଣୁ ଚଣାବାଲାର ଖବର ପାଇବା ମୋ'ର ଅତ୍ୟନ୍ତ ଜରୁରୀ, ଅପ୍ରକାଶ ହିସାବରେ ତୁମର ମଧ୍ୟ ତାହା ଦେବା ସେହିପରି ଜରୁରୀ ।'

ପ୍ରତ୍ୟୁତ୍ତରରେ, ନୂଆ-ଚଣାବାଲା ଆପଣାର ଦାବୀ ଗୋଚରୀଭୂତ କଲା ଏହିଭଳି ଅକୁଣ୍ଠ ପରଭାଷାରେ—

'ନୟା ନୟା ଚିଜ୍, ବାବୁଜୀ...ଅଚ୍ଛା ବନାୟା... ବୋଲିୟେ, ବୋଲିୟେ...ମଟର, ବାଦାମ, ଛୋଲା...ଖାସ୍ତା ଚଣା, ଝାଲ ଚଣା... ଚିଖ୍ ଲିଜିୟେ, ଖା' ଲିଜିଏ...ଚଣା ଜୁର୍ ର୍ ଗ-ର-ମ୍' ।

ମୁଁ ବିରକ୍ତ ହେଲିନାହିଁ, ତଥାପି ବିରକ୍ତ କରିବାକୁ ଛାଡିଲି ନାହିଁ ... ତା'ର ବିକିବା ଆଗ୍ରହକୁ ମୋ'ର କହିବା ଆଗ୍ରହ ବଳି ପଡିଲା...ମୁଁ ପଚାରିଲି—

'ଚଣାବାଲାର ସମ୍ବାଦ ?'

'ମୁଚେ୍ଚ କ୍ୟା ମାଲୁମ୍'  ...ସର୍କୁ ଯିବାକୁ ନ କହିଲେ ବି, ମୁହଁଟାକୁ ବିର୍କାଟିଆ କରି ଏମିତି ଭାବରେ ମୋ' ଆଡ଼ୁ ସର୍କାଇ ନେଲା, ଯେଉଁଥିରେ ମୁଁ ଆତ୍ମ–ସମ୍ମାନରେ ଅନୁଭବ କଲି ଗୋଟିକର କଷାଘାତ ।

ମୁଁ ସେ'ଠୁଁ ତତ୍କ୍ଷଣାତ୍ ବାହାରିଗଲି ; ମୋ'ର ଅଶ୍ରିତବତ୍ସଳ ସେହି ଅଶ୍ରୟଦାତା ବେଞ୍ଚକୁ; ମୌନ ବେଦନା ଜଣାଇଲି ; ସେ'ବି ମୌନ ସମବେଦନା ଜଣାଇ, ନିର୍ଦ୍ଦିଷ୍ଟ ସିଟ୍‌ରେ ବସିବାକୁ ଇଙ୍ଗିତ କଲା···ମୁଁ ଉପବେଶନ କଲି···ତା' ପର ନୋଦ୍-ଦ୍ୱାର ଫିଟାଇଲି ଚୁପୁ ଚୁପୁ ଏହିପରି—

'ଲୋକେ ଏତେଦୂର ବେଇମାନ୍ ହୋଇ ପାରନ୍ତି ?··· ଆଶ୍ଚର୍ଯ୍ୟ ହେବାର କିଛି ନାହିଁ···ଦାନରେ ମୁଗ୍ଧ ହୋଇ ଲୋକେ ଦାତାକୁ ଭୁଲନ୍ତି—ଏ' ଅତି ସାଧାରଣ କଥା···ଉପକାର ପାଇଲା ପରେ, ଲୋକେ ଉପକାରୀଠାରେ ହିଁ ବିଦ୍ୱେଷ ପୋଷଣ କରି ଥା'ନ୍ତି— ଏହା ସଚରାଚର ଦେଖା ଯାଏ···ମୋଟିଆ ଏଇ ମୋଟାମୋଟି ମାନବୀୟ ନୀତିର ବ୍ୟତିକ୍ରମ ହେବ କିପରି ? ହେଲେ, ଶାସ୍ତ୍ରରେ କହୁଛି— ଲୋଭ ମାନବର ପରମ ଶତ୍ରୁ, କାରଣ ଲୋଭରୁ କାମ, କାମରୁ କ୍ରୋଧ, କ୍ରୋଧରୁ ପାପ, ପାପରୁ ମୃତ୍ୟୁ ହୁଏ ।···ମୋଟିଆ ଲୋଭର ବଶବର୍ତ୍ତୀ ହୋଇଛି, ସନ୍ଦେହ ନାହିଁ ; ତେଣୁ ଏହି ଲୋଭ କ'ଣ ତା'କୁ ମୃତ୍ୟୁମୁଖକୁ ଠେଲି ଦେବ ?···ଏପରିବି ହୋଇପାରେ—ଲୋଭ ମନୁଷ୍ୟର ସହଜାତ ; ଏହି ଲୋଭ ଥିବାରୁ ମନୁଷ୍ୟ କାମ (କର୍ମ)

କରେ ; କ୍ରୋଧ ନ ଥିଲେ ମନୁଷ୍ୟ କାମରେ ଆଗେଇ ପାରନ୍ତା ନାହିଁ ; ଗତି-ପଥରେ ବାଧା ପହଁଚିଲେ, ଲୋକେ ତାହା ଅତିକ୍ରମ କରିବାପାଇଁ ପାପ କରିବାକୁ ବାଧ୍ୟ ; ଏଣୁ ପାପର ପରିଣାମ ସୃଷ୍ଟି, ଧ୍ୱଂସ ନୁହେଁ ; ମୋଟିଆ ମଧ୍ୟ ସେହି ଲୋଭକୁ ଆଶ୍ରୟ କରି ଯଦି ମୋଟର ହାଙ୍କିବ, ଏହା ଅଦୋ୍ୟବସ୍ତୁଯୁକର ନୁହେଁ ।...ଏହି ଯୁକ୍ତି ବାସ୍ତବ ଧର୍ମୀ ବୋଲି ଯୁଗ କହୁଛି, ତଥା ବାସ୍ତବ ଜ୍ଞାନର ପରିଚୟ କାର୍ଯ୍ୟାନୁଷ୍ଠାନ (ରକେଟ୍ ପ୍ରେରଣ) ଦ୍ୱାରା ବାଢ଼ି ଦେଉଛନ୍ତି । ଏଥିକୁ ଶାସ୍ତ୍ର-ନୀତିକାରର ଉତ୍ତର କ'ଣ ?... ସେ ଅବଶ୍ୟ କହିବ—ନୈତିକତା ମାନବର ମେରୁ ଦଣ୍ଡ ; ଲୋଭର ପରିଣାମ ମୃତ୍ୟୁ ଏହା ଅନିବାର୍ଯ୍ୟ ; ନୈତିକତାର ଅବସାନ ଫଳରେ ମାନବତ୍ୱର ଅବସାନ ଘଟେ · ମାନବ ମେରୁଦଣ୍ଡବିହୀନ ସରୀସୃପ ପାଲଟିବା ଛଡ଼ା ଅନ୍ୟ କିଛି ହୁଏନାହିଁ...'

ଏତିକିବେଳେ ଭ୍ରମ ହେଲା—ମୋଟିଆ ଯେମିତି ସତକୁ ସତ ସରୀସୃପ ପାଲଟି ମୋ'ଆଡ଼କୁ ଲହ ଲହ ହୋଇ ଧାଇଁ ଆସୁଛି ;.. ମୁଁ ସେହି ଖିଆଲରେ ଗୋଡ଼କୁ ଟେକି ନେଇ, ବେଞ୍ଚ ଉପରେ ଉଭାହୋଇ ବସିବାକୁ ଯାଉଛି, ଏମିତି ସମୟରେ ମୋ'ର ଧ୍ୟାନ ଭଙ୍ଗ କରିଦେଲା ମୋଟିଆର ସେହି ପୂର୍ବ ପରିଚିତ 'ବାବୁଜୀ' ଡାକ ।... ମୁଁ ଆଖି ମଳି ଚାହିଁ ଦେଖେଁ, ମୋ' ସମ୍ମୁଖରେ ମୋଟିଆ ସଶରୀରରେ ଉଭା ... ଅତି ବିନୟ-ନମ୍ର କଣ୍ଠରେ କହିଲା—

'କସୁର୍ ମାଫ୍ କରିବେ, ବାବୁଜୀ—'ନୂଆ'ର ନିଶା ଭାରି ନିଶା ...ସେହି ଝୁଙ୍କରେ ମଣିଷ ଚିହ୍ନି ପାରନି...'

ମୁଁ ଆଉ ବେଶୀ କିଛି କହିବାକୁ ଦେଲି ନାହିଁ, ବେଶ୍ ସରାଗରେ ପଚାରିଲି—

'ଚଣାବାଲା ଫେରିଚାଳ ?'

'ଫେରିଚି, ବାବୁଜି···ସେ ଯେ ପୁଣି ଫେରିବାଲା ସାଜିବ, ତାହା ମୁଁ ଭାବି ନ ଥିଲି···ମୋ'ର ଭୟ ଥିଲା···

'କି'ଣ ?'

'ଦୋକାନଟି ସେ ଦଖଲ କରିବ···ମୁଁ ସେଥିପାଇଁ ଜବର-ଦଖଲ କରି ବସିଥିଲି···ଜଗୁଆଳିକୁ ଘ୍ୟୁସ୍ ଖୁଆଇ ଥିଲି···ଗୁଣ୍ଡାଙ୍କୁ ମଜୁତ୍ କରି ରଖିଥିଲି···'

'ଏମିତି ଭୟର କାରଣ ?'

'ଯେଉଁ ଅନ୍ୟ ଚଣାବାଲାକୁ, ଡାଣ୍ଡେଇ, ସନ୍ତେଇ ମୁଁ ଅସନ ଓ ଲାଇଟି ଛଡାଇ ଆଣିଥିଲି, ସେହି ବଦ୍‌ଲା ନେବ ବୋଲି ଚଣାବାଲା ପାଖରେ ଫେରାଦ୍ ହୋଇ ଥିଲା···ଅଉ ମୋତେ ଏ'ଠୁଁ ଉଖାଡିବ ବୋଲି ସାଙ୍ଗ-ସାଥି ବି ଜୁଟେଇ ଥିଲା··· ।'

'ତା'ପର ?...'

' ମୁଁ ତ ଏ'ଠି ... ଶୁଣିଲି, ଚଣାବାଲା ତାକୁ କାର୍ଡ଼ବୋର୍ଡ଼ ଦେଖାଇଥିଲା, ଆଉ ତା' ଦାଲାମ୍ଭିଙ୍କୁ ଗାଳି ଫଇକତ୍ କରି ଘଉଡ଼େଇ ଦେଇଥିଲା ··· ଦେଲେ···'

'କ'ଣ ?'

'ଫେରିବାକୁ ଫିନା ଘଉଡ଼ାଇ ଦେଲା, ଫେରିବା୍‌କୁ ଉଡ଼ାଇଦେଇ ପାରିଲାନି'

'ସରକମିନ୍‌କୁ ଆସି ହାଲ୍ ବୁଝିବ, ତଦନ୍ତ ଚଳେଇବ ବୋଲି କହୁଥିଲା ନା କ'ଣ ?'

'କହୁଥିଲା ନୁହେଁ, ଅଟିଥିଲା ।'

'କେତେବେଳେ ?'

'ଅଭି ··· ଗୋଇନ୍ଦା ଅଲି ··· ଆପଣ ଦୋକାନରୁ ହଟିଗଲା ପରେ ପରେ'

'ତା'ପର ?'

'ଫେରିବାଲାର ଭେକ ନେଇ, ଚଣା ଝୁଲାକାନ୍ଧରେ ପକାଇ, ବାଲିଗଞ୍ଜ ଯିବ କ'ଣ, ଏ'ଠି ଅସି ହାଜର...କିଛିବେଳ ବେଢ଼ାର ଅରପଟେ ଠିଆହୁଏ...ଫାଁକ ବାଟେ ମୋ'ର ହଅନାଅ, କାଉବାର ପବ ଲୁଚି ଲୁଚି ଦେଖେ ... ସଫା ଯେତେବେଳେ ମୋ' ପାଖକୁ ଦୌଡ଼ିଅସି, 'ସାବାସ୍ ଭୟା' କହି ପିଠିରେ ନିର୍ଘାତ ଗୁଣ୍ଡାଏ ବସାଇଦଏ, ସେତକବେଳେ ସିନା ମୁଁ ପିଠି ବୁଲାଇ ଗୃହୁଁ ଦଏ, ଗୃହୁଁ ଡାବଉ !

କିଛି କ୍ଷଣ ନୀରବ ରହେ...ପୁଣି କହେ —

'ବାବୁଜୀ ! ... ମୁଁ କ ନିମକ୍ ହରାମ !...କା'କୁ କ'ଣ କରି ଭାବିଥିଲ ?...ଏ' ଦୋକାନଟା କ'ଣ ମୋ'ର ଏତେବଡ଼ ହେଲା ... ଓଃ...'

କାନ୍ଦ କାନ୍ଦ ହୋଇ, ଥରିଲା କଣ୍ଠରେ ଅଉ କ'ଣ କହିବାକୁ ଯାଉଥିଲା, ଏତକବେଳେ ଉତ୍ତରା-ପବନର ଗୋଟାଏ ଦମ୍କା ଏଇଠି ଛେଦ ପକାଇ ଦେଲା...ସେ ଦୌଡ଼ିଲା ତା'ର ଦୋକାନ ସମ୍ଭାଳିବାକୁ, ମୁଁ ଦୌଡ଼ିଗଲି ଉଦ୍ୟାନର ବଡ଼ ଛାୟାମଣ୍ଡପରେ ଆଶ୍ରୟ ନେବାକୁ ।

ବର୍ଷା ଝାଣ ଅସ୍ତ୍ରାଏ ବର୍ଷିଗଲା । ମୋତେ ଲାଗିଲା—ଏ'ବର୍ଷା ନୁହେଁ, ମୋଟିଆର ଅଶ୍ରୁ ବର୍ଷଣ ! କିମ୍ବା ଯାହା ସେ କହିବାକୁ ଯାଉଥିଲା

ତାହା ଦରଦୀ ପ୍ରକୃତ ଦ୍ରବ-ବିଗଳିତ ଧାରାରେ ଜଣାଇ ଦେଲା ।

ଏହାକୁଇ ସାକ୍ଷୀକରି, ମୋ'ର ମାନବାତ୍ମା ଯେମିତି ସଙ୍କୁଳି କହି ଉଠିଲା ମୋ' କାନେ କାନେ—

'ଭୂ-କଙ୍କାଳୀ ମଧ ଦିନେ ଭୂମା-ଙ୍କାଳୀ ହେବ, ବିଶ୍ୱାସ କର'

ସେ ଦିନ ଶୁକ୍ଳପକ୍ଷ···ପୂର୍ଣ୍ଣିମା···କିନ୍ତୁ ଆକାଶଟା କଳା ବଉଦରେ ଢାଙ୍କିହୋଇ ଏପରି ନିବିଡ଼ ହୋଇ ରହିଥାଏ ଯେ, ଉଁଷସର ଗାଢ ଅନ୍ଧକାରକୁ ବଳିଗଲା ପଡିଲା ସଞ୍ଜିବେଳଟା ।

ଗୁଡାଏ ଗାଳିଲାପରେ ବର୍ଷାର ଜୋର୍ ଟିକାଏ କମିଲା ···ବର୍ଷା ଆଉରି ନିର୍ଭୋର ହେବ, ଏ' କଥାକୁ ଆଦୌ ଅପେକ୍ଷା ନ କରି ବାଟ୍ ଧରିଲି, ଘରକୁ ଫେରିଲି···ତଥାପି ବି ଚିତ୍ର ଭୂଷ ଓଦା ସର ସର ହୋଇ ଯାଉଥାଏ ।

ଗୃହିଣୀ ମୋ'ର ପ୍ରତୀକ୍ଷାରେ ଥିଲେ ··· ଲୁଗା-ପଟା ବଦଳାଇବାର ଯୋଗାଡ କରିଦେଲେ···ଗରମ ଚା' କପେ ଆଣି ଧରାଇ ଦେଲେ ··· ଔଷଧିକ ପ୍ରୟୋଜନ ଠାରୁ ମୋ'ର ଆତ୍ମା ଯେ ଏହାପରି ସେବାର ଅଧିକ ପିପାସୀ ଥିଲା, ତାହା ମୁଁ ଜାଣି ପାରି,ନଥିଲେ ମଧ, ମୋ'ର ଗୃହିଣୀ ଠିକ୍ ଜାଣିଥିଲେ ଓ ଧରି-ବନ୍ଧା-ନିୟମର ବ୍ୟତିକ୍ରମ କରି ଦେଇପାରିବାକୁ ପ୍ରସ୍ତୁତ ହୋଇ ରହିଥିଲେ ।

'ଅଃ' ବୋଲି ଢୋକେ ପିଇ, ଆରାମ କେଦାରରେ ଆରାମ କରି ବସିଲି ... ବରାମ...ତା'ପର ନିସ୍ତବ୍ଧତା ଭାଙ୍ଗି ଅଗକର ଗୃହିଣୀ କହିଲେ—

'ଚଣ୍ଡାଳିଆ ଫେରିଛି ?'

'ହଁ, ଫେରିଛି ।'

'ଗଙ୍ଗା ?'

'ଗ-ଙ୍ଗା ... ଚଣ୍ଡାଳିଆର ନାତୁଣୀ ?'

'ହଁ'

'ସେ- ଖବରତ ନେଇନି'

'ତା' ନଁବ କାହିଁକି ?...ପର ପୁଅ...'

ବାକୀତକ ଅକୁହା ରଖି, ମୁହଁଟା କେମିତିକା ଅମ୍ଳିଆ ଅମ୍ଳିଆ କରି ଦେଲେ ଓ ଅସ୍ୱଚ୍ଛନ୍ଦ ପାଦ ପକାଇ ଚାଲିଗଲେ ଘେଷେଇ ପରସ୍ତକୁ ।

'ପର ପୁଅ ମଲା ନା ବେଗ ବାହାରେ ବାହାରେ ଗଲା'—ଢଗଟି ସେକାହିଁକି ପୂରା କଲେ ନାହିଁ, ତା'ର କାରଣ ସେଇ 'ମଲା' ଶବ୍ଦଟି,

ବେଶ୍ ବୁଝି ପାରିଲି ; କିନ୍ତୁ ବୁଝି ପାରିଲି ନାହିଁ ଚଣାବାଲାର ଖବର ଜାଣିବାକୁ ଗୃହିଣୀର ଏତେ ଆଗ୍ରହ କାହିଁକି ? କ'ଣ ସେହି ଛୁଆ ବାଳକଟିକ ପାଇଁ ? ···'ଆତ୍ମତୋଷେ ଜଗତ୍‌ତୋଷ'— ଏହାର ଭାବାର୍ଥକୁ ଯେଉଁ ଗୃହିଣୀ ଆପଣାର, କି ଆପଣାର ପ୍ରିୟା-ପ୍ରୀତି ତୋଷଣ ଛଡ଼ା ଆଉ କିଛି ବୁଝିନ୍ତିନାହିଁ—ମୁଁ ଫାନ୍ଦ କହୁନାହିଁ, ଯାହା ଅଙ୍ଗରେ ଲାଗିଥିଲା, ସେଇ କଥା ଦେଖି କହୁଛି— ସେ ଆଜି ହଠାତ୍ ପରସଂକାଶେ ଏତେ ଆତୁରିଆ ହେବେ, ଦରଦରେ ଭାସିଯିବେ, ମୁଁ ତ ଧାରଣା କରି ପାରିଲିନାହିଁ ! ...ସେ ସଦାବେଳେ ମୋତେ କହୁଥାନ୍ତି – 'ନିଜକୁ ଦେଖ, ଘରକୁ ଅନାଅ··· ପରକଥା ପରେ' ··· ସେହି ଗୃହିଣୀ ପୁଣି ମୋତେ ବାହାରକୁ ଠେଲି, ମୋ'ର ଜରିଆରେ ପରର ଖବର ନେବାକୁ ଏତେ ଉଚ୍ଛନ୍ନ ! ···ମୁଁ ସେହି ତ୍ରିଅଷ୍ଟିଗ ଖବର ନେଇନି ବୋଲି କି ଘୋଷା, କି ଅଡ଼ୁଆଷା !... ଏ' ନୂଆ କଥା କିପରି ସମ୍ଭବ ?...ଏ'କି ପ୍ରହେଳିକା ?···ଏହିପରି ପଚ୍ଚୁର ହେଉଛି, ଏମିତି ସମୟରେ ଗୃହିଣୀ ଗ୍ଲାସେ ପାଣି ଓ ପ୍ରସାଦ-ଥାଳୀରେ କିଛି ଫଳ-ମୂଳଆଣି, ଥୋଇଦେଇ କହିଲେ—

'ମାଙ୍କୁ ପୂଜା ମନାସିଥିଲି...ପାଇଛଅନ୍ତ !'

'କ'ଣ ଚଣାବାଲା ଫେରିବାର ମନାସ ?'

'ମୁଁ ଏତେ କଥା ଜାଣେନା···'

'ସୁଗିବନ୍, କାଲି ସକାଳେ ଗଙ୍ଗାର ଖବର ଠିକ୍ ନେବ...
ତୁମେ ନିଶ୍ଚିନ୍ତ ଥାଅ...'

ସେ କିଛି ନ କହି ଅପଣା ଧନ୍ଦାରେ ଚାଲିଗଲେ । ଏଥିରେ ମୋ'
ମନଟା କେମିତି ଧନ୍ଦହୋଇ ଉଠିଲା...ସେଦିନର ସେହି ସତର୍କୀକରଣ
(ପ୍ରିମୋନିସନ) କଥା ମନେ ପଡ଼ିଗଲା ।...

ମୁଁ ହସିଲି, ଯୁକ୍ତି କରି ମନକୁ ମନେଇ କହିଲି — ଚଣାବାଲା
ଯେତେବେଳେ ଅସିଛି, ସେତେବେଳେ ଗଙ୍ଗା ନିଶ୍ଚେ ତା' ସାଥିରେ
ଅସିଥିବ ! ତା'ର 'ଖୋକା'କୁ ବେଶି ଠିକ ବୋଲି, ପୂର୍ବ-ସ୍ମୃତିକୁ
ଉଖାଡ଼ିଲି, ଫେରିବାଲା ସାଜିଲା, ଆଉ 'ବେଗୀ'ର ଅନୁ-
ରୋଧ ରକ୍ଷାକରି, ଗଙ୍ଗାକୁ ଆଣିବନି ସାଥିରେ ? ଯେତି ଅତି
ସାଧାରଣ ଯୁକ୍ତିକୁ ଫାବେ । ତେବେ ଅନ୍ଧବିଶ୍ବାସର ଅନ୍ଧାରକୁ
ଯୁକ୍ତିର ଆଲୁଅ ଯେତେ ତୀବ୍ର ହେଲେବି ଭେଦିବ —ଏହା
କେତେବେଳେ ହେଲେ ସମ୍ଭବ ?

ଠିକ୍ ଏତିକିବେଳେ ଦଦରା ଅକାଶଟା ଗଳଗଳହୋଇ ଗଳି
ପଡ଼ିଲା ଏଥର ... ଗୃହିଣୀ ତରତର ହୋଇ ଆସି କହିଲେ—

'ବାରଣ୍ଡାରେ ସୁହା ନାହିଁ...ଏଇଠି ଠା' କରିଦିଏଁ...ତୁମେ
ଉଠିଡ...'

ମୁଁ ଭାରି ନିଃଶ୍ବାସଟାଏ ଛାଡ଼ି କେବଳ ଏତିକି କହିଲି—

'ବର୍ଷାଠା କ'ଣ ଆଜ ଅଜାଡ଼ିବାକୁ ଥିଲା ?'

ସେ କେଉଁ ଭଗ୍ନ ବିଶ୍ବାସକୁ ଜାବୁଡ଼ି ଧରି ଏତିକି କହି ଚାଲିଗଲେ-

'ମଣିଷ ପାଈଁ, ଦଇବ ପାଈଁ ତ ଏକେଇ ନୁହେଁ ?'

ଖିଅପିଅ ସରିଲା···ମୁଁ ଶୋଇବାକୁ ଗଲି···ନିଦ ଲାଗି ନଥାଏ ପ୍ରକୃତି ବର୍ଷଣମୁଖର ··· ଦେହ ଅଳସ ··· ମନ ନିରଙ୍କୁଶ... 'ରୋମାନ୍‌ସ' ପରିବେଶ...ଖିଆଲ ରଙ୍ଗ ତୁଳି ଧାରଣ କଲା···କଳ୍ପନା-ପଟରେ ଅଙ୍କିବାକୁ ଲଗିଲା—ବାଲିଗଞ୍ଜିର ଉତ୍ସବ-ଛବି !—ଦେଲେ ଏରିଷ୍ଟୋକ୍ରେଟ୍‌ମାନଙ୍କୁ ସଞ୍ଜଦେଲ ··· ଫୁଟାଇଲା ନିରୋଳା ପଛ ପଟର ଦୃଶ୍ୟ—ଚଣାବାଲ ଓ 'ଖୋକା' (ବାରଷ୍ଟରାଣୀ)ର ଭେଟା ଭେଟି··· ବେବୀ ଓ ଗଙ୍ଗାର ହାତ ଧରାଧରି···ଚଣା ଛଡାଛଡ଼ି···ଏମିତି ଅନୁର କେତେ କ'ଣ...

ଏହିପରି ଅବସ୍ଥାରେ ତନ୍ଦ୍ରା ଘାରିଚ, କେତେବେଳେ ନିଦେଇଛି ପଡ଼ିଚ ··· ଝିଁ ଝିଁ ଶବ୍ଦ, ଗମ୍ଭୀର ରାବି ସେଇଥି ଭିତରେ ଯେତେବେଳେ ମୋ'ର ନିଦ ଅଚାନକ ଭାଙ୍ଗିଯାଏ, ସେତେବେଳେ କାନ ଡେରି ଶୁଣେ, ଆର ଘରେ ଭାଗବତ ବୋଲାର ଧୁମ୍ ... ଏକାଦଶସ୍କନ୍ଧରଏକ ଅଧ୍ୟାୟ···ଗୃହିଣୀର କଣ୍ଠସ୍ୱର ଉଚ୍ଚାରଣ ଦୋଷ ଥିଲେ ବି, ଶ୍ରୁତିମଧୁର···ଭାବମୟ···ହୃଦୟସ୍ପର୍ଶୀ !

ଗୃହିଣୀ ବୋଲିଜାଣନ୍ତି ? ପଢି ଶିଖିଚନ୍ତି ? ଘରଣୀର ଅନ୍ତର ପରିଚୟ ? ପାଠପଢ଼ା ? ଜ୍ଞାନସାଧନା ? କେଉଁଠିକି ?···ଏ’ ଖବରତ ଘରର ମାଲିକ ହୋଇ,ଘରଣୀର ପାଖେ ପାଖେ ଥାଇ ସୁଦ୍ଧା ଜାଣେନା !

—

‘ଆଉ ତୁମେ ଭେଦିବ ପରର ଖବର ?···ବୁଝିବ ମୋ’ର ମର୍ମ-ବ୍ୟଥା ??’

ବିଦ୍ରୂପର ଅଟ୍ଟହାସ୍ୟ ସଙ୍ଗେ ବେଦନା ବ୍ୟଥିତ କଣ୍ଠରେ ସେହି ‘ପ୍ରଶ୍ନ’—ଧ୍ୱନିର ଚଣାବାଲା ଯେମିତି ବିବେକ ଉପରେ ସବାର ହୋଇ ଏହିପରି ଟିପ୍‌ପଣି ଝାଡିଲା···ମୁଁ ହଠାତ ଟିପ ଅଗରେ ଠିଆ ହୋଇଗଲି·· ରୋମ ଟାଙ୍କୁରି ଉଠିଲା···କିନ୍ତୁ ପରକ୍ଷଣରେ ଏହି ଭାବ ଉପୁଜିଲା—

ମୁଁ ତତ୍ତ୍ୱ-ବିଶ୍ଳେଷକ, ଅସ୍ତ୍ର-ଚିକିତ୍ସକ ; ତତ୍ତ୍ୱ ଜାଣିବା ମୋର ଧର୍ମ । ମୁଁ ଅବଶ୍ୟ ତଥ୍ୟ ସଂଗ୍ରହ କରିବି—ଏହି ଦମ୍ଭହେଲା ତତ୍‌ପର ହେଲି···ପୁଣି ଥରେ ଭାଗବତ-ବୋଲା ପ୍ରତି ଧ୍ୟାନ ଦେଲି···କିନ୍ତୁ, ଅନ୍ତରୀକ୍ଷ ସୃଷ୍ଟି କଲା ଘନ ଘନ ବିଦ୍ୟୁତ୍ ଝଲକ ସହ ବର୍ଷଣହୀନ ଅଶନି-ପାତ, କି ମୋ’ର ତୁଚ୍ଛ ଅହମିକାର ଫାଙ୍କା ନିର୍ଘୋଷ, କହି ପାରୁନାହିଁ ।

ମୁଁ ଯେତେବେଳେ ଶଯ୍ୟା ତ୍ୟାଗକରେ, ସେତେବେଳେ ସ୍ପଷ୍ଟ ଶୁଣିବାକୁ ପାଏ—ରୋଷଣରେ ବାସନ-ମଜାର ଝଣ୍ ଝଣ୍ ଶବ୍ଦ ।···

'ହ୍ଵି' (ଠିକା ପୋଇଲ୍ଲା) ଅସି ବାସନ ମ.କୁଚ୍ଚି, ଡେବେଢ ସଖାଳ ବେଶ୍ ବଦଳ ହୋଇ ଗଲଣି ।···ମୁଁ ନିର୍ଦ୍ଦିଷ୍ଟ ସମୟରେ ନ ଉଠିଥିଲେ ଗୃହିଣୀ ଉଠାଇଥା'ନ୍ତି, ଏ' ତାଙ୍କର ନିତଦିନର ଅଭ୍ୟାସ । ଆଜ ସେହି ଧରାବନ୍ଧା ନୀତର ବ୍ୟତକ୍ରମ—କଥା କ'ଣ ?···ହୁଏତ ମୁଁ ଶିନ୍ତାର ଜଡ଼ତାରେ ଜଡ଼ପିଣ୍ଡ ପାଲଟିଥିବ... ଗୃହିଣୀ ଡାକ ଡାକ ହଇରାଣ ହୋଇଥିବେ, ଦେହକୁଧର ହଲାଇ-ଥିବେ, ତା'ପର 'ଲ୍ଲୁଆଲୋ' ବୋଲ ମୁହଁ ଲୁଛିଦେଇ ଓଗ ଓଗ ଗମନରେ ଚାଲି ଯାଇଥିବେ ଅପଣା ବାସିପାଇଟି ଧନ୍ଦାରେ ।

ଜଡ଼ବାଦୀ ଆତ୍ମ-ବାଦୀକୁ ଉପହାସ କର ଯେମିତ ଆତ୍ମତୃପ୍ତି ଲାଭ କରିଥାଏ, ମୁଁ ଠିକ୍ ସେମିତ ତୃପ୍ତି ଘେନି, ବାହାରକୁ ଆସି ଦେଖେଁ, ପୃଥିବୀ ପୃଷ୍ଠରେ ବିପର୍ଯ୍ୟୟର ମଳୀନ ସ୍ୱାକ୍ଷର ··· ଆକାଶ ବକ୍ଷ ସ୍ୱଚ୍ଛ ନିର୍ମଳ ।

ହ୍ଵି ତା'ର କାମ କର ଚାଲିଛ···ମୋ'ର ନିତ୍ୟକର୍ମ ସାରିବାର ଯାହା ଯାହା ପ୍ରୟୋଜନ, ତାହା ଯଥାରୀତ ଅଯୋଜିତ···ବଡ଼ାବଡ଼ି ହୋଇ ଯଥାସ୍ଥାନରେ ବିରାଜିତ···ସୁତରାଂ, କାହାରିକୁ ବିରକ୍ତ କରିବାର ପ୍ରୟୋଜନ ବୋଧ କଲନାହିଁ ··· ନିତ୍ୟକର୍ମ ସାରିବାକୁ (ଦନ୍ତଧାପନ) ବସିଗଲ ··· କିନ୍ତୁ ଗୃହିଣୀ କାହିଁ ନ୍ତି ? କନକନ ଗୃହାଣୀରେ ଲୋଭଲ ଆଖି ଏଣେତେଣେ ବୁଲିଉ ବୁଲିଉ ମନେ ପଡ଼ିଗଲା କାଲ ରାତର ଭଗବତ ବୋଲା କଥା ।···ବୋଧହୁଏ ଶ୍ରାନ୍ତ କ୍ଲାନ୍ତ···ସେଥିପାଇଁ ନିଦ୍ରାକବଳିତ ଅବସ୍ଥାରେ ବାଧହୋଇ ଅବଙ୍କ

ରହୁଥିବେ ଆପଣାର ରୁଦ୍ଧ କକ୍ଷରେ । ଉଁହୁଁ, ମୋ'ର ବ୍ୟକ୍ତି ସଂପର୍କିତ ଅପ୍ରୟୋଜନ ଚିଂତ ଛେଡେବେ ଛରିବନି, କି ଗୃହିଣୀ କହିଇ ଦେବନି··· ମନଟା ଛଁକଁକେ ହେଲ··· ଗୃହିଣୀର ଉଲ୍ଲାସରେ ହଠିଗଲି ତାଙ୍କର କକ୍ଷ ଦ୍ୱାରକୁ ··· ଯାଇ ଦେଖେଁ, ବାହାରପଟୁ ଝଞ୍ଜିର ଦିଆ, ତାଲା ଲଟକୁଚି ··· ବେଷ-ପରସ୍ତକୁ ଅନାଇ ଦେଖେଁ, ସେଠାରେ ମଧ ବାହାରପଟୁ ଦରଜାରେ ଶିଖୁଳି ଦିଆ, କିନ୍ତୁ ତାଲା ନାହିଁ ··· ହି ମୋତେ ଲଜ୍ଜ କରେ, ମଥାରେ ଲାଙ୍ଗୁଳି ପଣତଟା ଆହୁରି ଟାଣିଦେଲି ··· ମୁଁ ? ମୋ'ର ଚଙ୍ଗଚଙ୍ଗ ଢଙ୍ଗଠାଙ୍ଗକୁ ଯାହା ବୋଲି ଠଉରଉ, ମୁଁ ପଚାରିବା ଉଦ୍ଦେଶ୍ୟରେ ବେହୁଅପଣ କରି ଗଲି ଖଁକାରିବାକୁ ଗଲି ଏତକବେଳେ ସଦର ଦ୍ୱାର ଠେଲି, ପ୍ରବେଶକଲେ ଗୃହିଣୀ ।

'ମୁଁ ଗଙ୍ଗା ସାହାନ (ସ୍ନାନ) କରି ଯାଇଥିଲି ··· ମ' ତୁମର ଦାନ୍ତଘଷା ଏଯାଏ ସରିନି···ସାରିଲ, ସାରିଲ, ମୁଁ ଚୁହ୍ଲିରେ ଆଁଚ ଦେଇ ରଖିଚି··· ଅଇଣ୍ଟୁକା ଗୁ କରି ଆଣୁଚି ··· (ଯାଉ ଯଉ)··· ହିଁ, ଦୁଲି-ମାଠା ସହଳ ସହଳ ଆସି ପଡ଼ିଥିଲା, ସେଥିପାଇଁ ତୁମକୁ ନ ଡାକି...'

ଏମିତି କେତେ ଦ'ଣ କୈଫିୟତ ତଲବ କଲାପରି ସେ ବତାଇ ଯାଉଥିଲେ, ମୁଁ ଶୁଣି, ଶୁଣୁ ନ ଥିଲି—କାରଣ 'ଗଙ୍ଗା' ଶବ୍ଦରୁ ମୋ'ର ମନ ନିଃଶବ୍ଦରେ ଗଙ୍ଗା ପାଖକୁ ଉଡିଯାଇଥାଏ, ତାକୁ କେନ୍ଦ୍ର କରି ଅବତ୍ତିମାନ ରହୁଥାଏ ।

‘ଗଙ୍ଗ ର ଭାଲ୍ କି ଲଙ୍କା ହୋଇ ନଥିବ ··· ଚଣାବାଲ ବିଚରା କି ଧଇଲ୍ୟଣରେ ପଡ଼ି ନ ଥିବ ... ବର୍ଷାଟା କ’ଣ କାଲି ହେବାକୁ ଥିଲା · ’

ବର୍ଷଣ-ବିହ୍ୱଳ ! ସଶିଶୁ ପଥ-ଭ୍ରାନ୍ତ ! ଟଳଟଳାୟମାନ ଅଥଚ ଅଟଳ ! — ଏହିପରି ଅଗ୍ରସରମାନ ଗୋଟିଏ ପଥିକର ମର୍ମନ୍ତୁଦ ଛବି ମୋ’ର ବିମର୍ଷକ୍ଲିଷ୍ଟ ଚିତ୍ତ ଚିନ୍ତା-ପର୍ଯ୍ୟୁଦସ୍ତ ମାନସ-ପଟରେ ଆଙ୍କୁଥିଲବେଳେ, ଗୃହିଣୀ କେତେବେଳେ ଆସି ଧ୍ୟାନ ଛୁଟାଇ କହିଲେ —

‘ନ’, ଚ୍ଚ ଖାଇନ···ଚ୍ଚ ଥଣ୍ଡା ହୋଇଗଲାଣି ··· ଭାବୁଚ ?··· ଭାବି କରିବ କ’ଣ ? ··· ଗୋବିନ୍ଦ ପଦେ ରଖ ମତି — ସେବିନୁ ନାହିଁ ଅନ୍ୟଗତି ।’

‘ସେ ବିନୁ ନାହିଁ ଅନ୍ୟ ଗତି’—ଏହି ପଙ୍‌କ୍ତିଟି ପ୍ରକୃତରେ ଚେତନାବଳୀର କାର୍ଯ୍ୟ କଲା ସେତେବେଳେ···ମୁଁ ଜାଗ୍ରତ ଚିତ୍‌ସ୍ୱର ଅନୁପ୍ରେରଣାରେ ଯେମିତି ଚଣାବାଲ ଓ ଗଙ୍ଗାକୁ ସତ୍-ଚିତ୍-ଆନନ୍ଦମୟ ଗୋବିନ୍ଦଙ୍କ ଚରଣାରବିନ୍ଦତଳେ ସତେ ସତେ ନିବେଦନ କରି ଦେଲି । ···ମନ ଉଶ୍ୱାସ ଧରିଲା···ମୁଁ ଚ୍ଚ’ ପିଇବାରେ ମନ ଢାଳିଲି ।···

ଗୃହିଣୀ ଚ୍ଚ-କପ୍ ନେଇ ଚାଲିଗଲେ । ହେଲେ, ମୁଁ ଗୋଟାଏ କଥା ଅସ୍ଥିର ହୋଇ ଭାବିବାକୁ ଲାଗିଲି—ପ୍ରକୃତିର ଅପ୍ରସନ୍ନ ଭାବ

ଭୁରେଇ ଯାଇଚ, ସେହିସ୍ଥଳେ ପ୍ରସନ୍ନତା ଦେଖା ଦେଇଛି··· ଗୃହିଣୀଠାରେ ମଧ୍ୟ ଅନୁରୂପ ଭାବ ! କାହିଁକି ?··· ନିଶ୍ଚୟ ସେ ଗଙ୍ଗାର କେଉଁ ଅଶୁଭ ସ୍ୱପ୍ନ ଦେଖି ହୋଇଥିଲେ ବିହ୍ୱଳ ··· ଯାର ଇଙ୍ଗିତ ମଧ୍ୟ ସୁସ୍ପଷ୍ଟ ··· କାଲି ରାତିସାରା ଭାଗବତ ପାଠ, ଆଜିର ବ୍ରାହ୍ମ ମୁହୂର୍ତ୍ତରେ ଗଙ୍ଗା-ସ୍ନାନ···ଈଶ୍ୱର ପ୍ରତିକାରର ଗୋଟାଏ ଶୁଭ ଅନୁଷ୍ଠାନ ··· ବିଶ୍ୱାସ ଗଙ୍ଗା ନିରାପଦ, ସେଥିଯୋଗୁଁ ତାଙ୍କର ପ୍ରସନ୍ନଭାବ !···ମୁଁ ମଧ୍ୟ ସେହି ବିଶ୍ୱାସର ହେଲି ଅଂଶୀଦାର ... ତା'ର ଧକ୍କାରେ ସଂସ୍କାର, ସଂସ୍କୃତ ; ଅସ୍ତି, ନାସ୍ତି ; ଅନ୍ଧାର, ଆଲୋକ—ଏ' ସବୁର ପରସ୍ପର ବିରୋଧୀ ଭେଦ-ପ୍ରାଚୀର ଭାଙ୍ଗିରୁଜି କାହିଁ ଏକାକାର ହୋଇଗଲା ... ଅବଶ୍ୟ ଗଙ୍ଗା ଯେ ଏ'ଭଳି ଚେତନାର ମୌଳିକ ସତ୍ତା, ଏହା କହିବା ବାହୁଲ୍ୟ ମାତ୍ର ।···ଏହି ବିଶ୍ୱାସକୁ ପ୍ରସାରିତ କରି, ଆହୁରି ମନକୁ ମନ କହିଲି—ଜଡ ବିଜ୍ଞାନୀ ବୋଲି, ଆତ୍ମ-ଜ୍ଞାନୀ ବୋଲି ଉଭୟେ ମୂଳ ସତ୍ୟକୁ ଆଭିମୁଖ୍ୟ କରି ସାଧନା-ପଥର ଅଭିଯାତ୍ରୀ···ସୁତରାଂ ଦୈତ-ପୁରୁଷଙ୍କ ଅଭ୍ୟୁଦୟ ପ୍ରାପ୍ତି ଯେ ଅଦୂର ଭବିଷ୍ୟତରେ ଉଭୟଙ୍କ ମଧ୍ୟରେ ବ୍ୟବଧାନଜନିତ ସନ୍ଦେହର ଗ୍ଲାନିକୁ ଅପସାରିତ କରିଦେବ, ଏହା ଅଳୀକ ସ୍ୱପ୍ନ ନୁହେଁ । ଏହାର ଆଭାସ ମଧ୍ୟ ମିଳିଛି ... ବିଜ୍ଞାନ ତା'ର ପରାକାଷ୍ଠା ଦେଖାଇ ଯେଉଁ ରକେଟ୍ ଆଜି ପଠାଇଚି, ତାହା ଚନ୍ଦ୍ରମାର ଶୀତଳ ଅଙ୍ଗ ଭେଦ କରିବାରେ ସମର୍ଥ ହୋଇଚି...ବିଜ୍ଞାନୀ ଆସୁରୀ ଗର୍ବରେ ଉଲ୍ଲସିତ ହେବାର କଥା, କିନ୍ତୁ ସେହି ସ୍ଥଳେ ସେ ଆଜି ଦୈବା-ନ୍ୟୂନତାରେ ବିନମ୍ର ଜ୍ଞାପନ କରୁଛି ··· କାହିଁକି ?...

ଏହିପରି ଏକ ଚିନ୍ତାରୁ ଅନ୍ୟ ଚିନ୍ତାକୁ ମନ ଡେଇଁ ଡେଇଁ ଚାଲିଛି—ଏମିତି ସମୟରେ ଗୃହିଣୀ ପୁଣି ଆସି ହାଜର । ହାତରେ ଖଣ୍ଡେ ଖବରକାଗଜ । ମୋତେ ତାହା ବଢ଼ାଇଦେଇ କହିଲେ—

'ଖୁକ୍କୀ ପଠ ଇ ଦେଇଛନ୍ତି ତା' ଗୃହକର ହାତରେ...'

'ମୁଁ ତ ଇଂରେଜୀ କାଗଜ ପଢେଁ...ଖୁକ୍କୀ ଜାଣେ...ତା'ତ ଏଠି ଥୁଅ...ଏମିତ ଅଦ୍ଭୁତ ବଙ୍ଗଳା କାଗଜଟିଏ ପଠାଇବାର ମାନେ ?'

ମୋ'ର ଏଭଳି 'ମାନେ' କୁ ମନାଇ କର ଗୃହିଣୀ କହିଲେ—

'କେଜାଣି...ଗୃହକର କହୁଥିଲା—କ'ଣ ଜରୁରୀ ଖବରଟାଏ ବାହାରିଚି କାଗଜରେ । ସାନ୍ତ୍ୱାଣୀ ସେଇଟା ଦାଗ ଦେଇ ପଠାଇ-ଚନ୍ତି । ଏ' କଥା ବି ଜଣାଇ ଦେବାକୁ କହିଚନ୍ତି ।'

ଗୃହିଣୀ ଖବର ଓ ଖବରକାଗଜଟି ଦେଇ ଅନ୍ୟ ଜରୁରୀ ଖବର ବୁଝିବାକୁ କି କ'ଣ ତରତର ହୋଇ ବାହାରିଗଲେ । ମୁଁ ସକୌତୁକେ କାଗଜଟା ହାତକୁ ନେଇ ଦାଗଦିଆ ସ୍ଥାନଟିର ଅନ୍ୱେଷଣରେ ପନ ଓଲଟାଇବାକୁ ଲଗିଲି ।

ସଂବାଦଟି ପାଇଲି । ଦୃଷ୍ଟି ପଡ଼ିଲି ତା'ର ଶୀର୍ଷ ଲେଖା ଉପରେ । ପଢିଲି...

( ନିଜସ୍ୱ ପ୍ରତିନିଧିଙ୍କ ଠାରୁ )

**ଶିଶୁଚୋରୀ କୌତୁକ**

ମଜାର ଖବର ତ ! ଆଗ୍ରହ ସହକାରେ ପଢିବାକୁ ଲଗିଲ —

ବାଲିଗଞ୍ଜ । ବାରିଷ୍ଟର ସାହେବଙ୍କ କୋଠି । ( ନାମ ଜାଣିବାକୁ ଆଗ୍ରହ ଥିଲେ, କ୍ଷମା କରିବେ ) । ବାରିଷ୍ଟର ସାହେବଙ୍କର ଶିଶୁ-କନ୍ୟାର ଜନ୍ମଦିନ (ଏକମାତ୍ର ସନ୍ତାନ) । ଅଭିଜାନମଣ୍ଡଳୀର ମହା-ସମାରୋହ । ଅତିଥି ଚର୍ଚ୍ଚାର ଭାର ନ୍ୟସ୍ତ ବାରିଷ୍ଟର ସାହେବଙ୍କ ପତ୍ନୀ ଉପରେ । ସଚଞ୍ଚଳ ଯାହା ଅଭିଜାତ୍ୟ ସମାଜର ଚଳଣି । କିନ୍ତୁ ସାହେବ-ପତ୍ନୀ ସେଥିପ୍ରତି ଥିଲେ ଉଦାସୀନା । ଯେହେତୁ ସେ କେଉଁ ବିଶିଷ୍ଟ ଅତିଥିର ଆଗମନକୁ ପ୍ରତୀକ୍ଷାକରି ଉତ୍କଣ୍ଠିତା ଥିଲେ । ଏହି ବିଶିଷ୍ଟ ଅତିଥି ଆଉ କେହି ନୁହେଁ, ଜଣେ ସାମାନ୍ୟ ଚଣାବାଲା । ଭଦ୍ରମହିଳା ଯେତେବେଳେ ଅତି ଶିଶୁ ଥିଲେ, ଠିକ୍ ନିଜର ବେବିଟି ପରି, ସେତେବେଳେ ଏହି ଚଣାବାଲା ଅକୁଣ୍ଠ ସ୍ନେହ ଶ୍ରଦ୍ଧା ତାଙ୍କ ବକଟଙ୍କ ହୃଦୟରେ ଭରି ଦେଇଥିଲା । ସମୟର ଦୀର୍ଘ ବ୍ୟବଧାନ ପରେ ଏହି ଚଣାବାଲା ସଙ୍ଗେ ହଠାତ୍ ଭେଟାଭେଟି । ଅନାବିଳ ବାଲ୍ୟ-ସ୍ମୃତି କଳ ଉଦ୍‌ବେଳିତ, ସେ ଆମନ୍ତ୍ରଣ ଦେଇଲେ, ବେବୀର ଜନ୍ମଦିନ-ଉତ୍ସବରେ ଯୋଗ ଦେବାକୁ ସନିର୍ବନ୍ଧ ନିମନ୍ତ୍ରଣ ଜଣେଇ । ଆହୁରି ଗୃହର ଠିକଣା ଭୁଲ କରିବନାହିଁ, କି ଗୃହପ୍ରବେଶରେ କୌଣସି କଟକଣା ରହିବ ନାହିଁ, ଏଥିପାଇଁ ତାକୁ ନିଜସ୍ୱ ସାଙ୍କେତିକ କାର୍ଡଟିଏ ଦେବାକୁ ମଧ୍ୟ ଭୁଲି ନ ଥିଲେ । ମାତ୍ର ଦୈବ-ଦୁର୍ବିପାକ । ସେଦିନ ଭୀଷଣ ଝଡ଼ ବର୍ଷା । ସେହି ବିଶିଷ୍ଟ ଅତିଥିଟି ହୁଏତ ଏହି ଦୁର୍ଯୋଗ ଅତିକ୍ରମ କରି ଆସି ପାରି ନ ଥିବ । କିମ୍ବା ସାଙ୍କେତିକ କାର୍ଡଟି ହଜାଇ ଦେଇଥିବା ଫଳରେ (ଏହା ଆଶ୍ଚର୍ଯ୍ୟ ନୁହେଁ) ଠିକଣା ଠିକ୍ କରି ପାରି ନ ଥିବ, କିମ୍ବା ଠିକଣା ସ୍ଥାନକୁ ଆସିଥିଲେ ମଧ୍ୟ

ଟେଗନ୍ ମୁର୍ହରେ ଠୋକ୍‌କର ଖାଇ ( ଅଭିଜ୍ଞାନ କାର୍ଡଟି ନ ଦର୍ଶାଇବା ଫଳରେ ) ହୋଇଥିବ।...

ସେ ଯାହାହେଉ, ସାହେବ ପତ୍ନୀ ଏତେଦୂର ଅମ୍ଭ-ଜ୍ଞାନ-ଶୂନ୍ୟ ହୋଇ ପଡ଼ିଥିଲେ ଯେ, ଏଥିରେ ଅତିଥି-ମହଲରେ ଗୋଟାଏ ଚହଳ ପଡ଼ି ଯାଇଥିଲା । ସାହେବ ନିଜ ପତ୍ନୀଙ୍କର ଏପରି ଅଭିଜାତ୍ୟ-ନିନ୍ଦିତ ଆଚରଣକୁ ଆଗରୁ ଆଦୌ ପସନ୍ଦ କରୁ ନ ଥିଲେ । ଯଦିଓ ଶିଷ୍ଟତା ଖାତିରରୁ ସେ କଥା ବ୍ୟକ୍ତ କରି ପାରୁ ନ ଥିଲେ, ବର୍ତ୍ତମାନ ତାଙ୍କର ପ୍ରେଷ୍ଟିଜ୍ (ଆତ୍ମସମ୍ମାନ) ଉପରେ ଆଁଚ ଲଗିବାର ଉପକ୍ରମ ଦେଖି, ସେ ଆଉ ନିର୍ବିଯ୍ୟ ହୋଇ ରହି ପାରିଲେ ନାହିଁ । ସେ ତାଙ୍କର ଶ୍ୱଶୁର ମହାଶୟ ( ଡେପୁଟି କମିଶନର୍ )ଙ୍କୁ ଏକାନ୍ତକୁ ଡାକିନେଇ ସବୁହାଲ ପିଟାଇ କହିଲେ ।

ଶ୍ୱଶୁର ମହାଶୟ ଜଣେ ରସିକ ବ୍ୟକ୍ତି । ରସିକ ଭୂମିକାରେ ଅଭିନୟ କରିବାର ଖ୍ୟାତି ଏ ଯାଏ ତାଙ୍କର ଅମ୍ଳାନ ରହିଛି । ସେ ପୂର୍ବ କଥା ସୁମରିଲେ, ଅପୂର୍ବ ରସ ଅନୁଭବ କଲେ, ଅମ୍ଳାନ ବଦନରେ ହସି ହସି ଜାମାତାଙ୍କୁ ରହସ୍ୟର ଦ୍ୱାର ଫିଟାଇଲେ ।

ସେତେବେଳେ ମୁଁ ଥାଏ ଶ୍ୟାମପୁକୁରର ଓ,ସି । ଅବାସିକ ଥାନା । ଅବାସରେ ମୁଁ ଆଉ ମୋର ଶିଶୁ କନ୍ୟାଟି; ମାତୃହରା; ସେଥିପାଇଁ ହୋଇଥାଏ ଗେଲବସରିଆ । ସେହି ସମୟରେ ଗୋଟିଏ ଫଣାବାଲା ଥାନାକୁ ନିତି ଫଣା ବିକି ଆସେ । ତା'ର ସାଥିରେ

ସେ ଘୁର-ଦୌଡ଼ି ଜମାଏ । ସେଥି ଚଣାବାଲଟିର ପ୍ରତିଦିନ ତା' ପାଇଁ ଚଣା ଅଣିବ—ସ୍ପେଶାଲ୍ ଚଣା । ଏ' ଚଣା ସେ କେବେହେଲେ ବାହାରେ ବିକିବ ନାହିଁ, କି ଅର୍ଡର କଲେ ବି ସପ୍ଲାଇ କରିବ ନାହିଁ, ବରଂ କହିବ — 'ଏ ମୋ'ର ଖୋକାର ଚଣା' । ଖୋକା ମଧ୍ୟ ଚଣାବାଲଟିର ନାମକରଣ କରିଥାଏ— 'ଘୁଙ୍ଗୁରଦାନା' । ଏହି ଘୁଙ୍ଗୁଦାନା ପଦଟି ଅନ୍ୟ କେହି ତୁଣ୍ଡକୁ ନେଇଛନ୍ତି ତ, ତା'ର କଥା ସରିଛି । ମୁଁ ମଧ୍ୟ ଏ'ଭଳି କୌତୁକରେ କୌତୁକ ଉପଭୋଗ କରୁଥାଏ । ଅନେକେ ଏ'ଭଳି ମିଳାମିଶାକୁ ଆପତ୍ତି କରୁଥିଲେବି, ମୁଁ ବାଧା ଦେବା ଦୂରେ ଥାଉ, ବରଂ ଖୁକୁ ଆଉ ଚଣାବାଲାର ସରଳ ସୌହାର୍ଦ୍ଦ୍ୟକୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଥାଏ ।

ଦିନେ ଗୋଟିଏ ଘଟଣା ଘଟେ । ସେତେବେଳେ ଶ୍ୟାମବଜାର ଇଲାକାରେ 'ଶିଶୁ-ଗ୍ୟାଙ୍ଗ'ର ଉପଦ୍ରବ ଭୀଷଣ ଆକାର ଧାରଣ କରିଥାଏ । ପୁଲିସକୁ କଡ଼ା ନଜର ରଖିବା ଦିଗରେ ଉପରୁ ଯେଉଁପରି କଡ଼ା ହୁକୁମ୍ ଆସୁଥାଏ, ପତ୍ର ପତ୍ରିକାରେ ମଧ୍ୟ ପୁଲିସର ଅପାରଗତା ପ୍ରତି ସେହିପରି କଟୁ-ମନ୍ତବ୍ୟ ପ୍ରକାଶ ପାଉଥାଏ । ପ୍ରକୃତରେ ଆମେ ଅତିଷ୍ଠ ହୋଇ ପଡ଼ିଥାଉଁ । ସନ୍ଧାନର ନାନା ସୂତ୍ର ଖଞ୍ଜି ମଧ୍ୟ ଗ୍ୟାଙ୍ଗର କୌଣସି ସୂତ୍ର ଆବିଷ୍କାର କରି ପାରୁ ନ ଥାଉଁ । ହଠାତ୍ ଦିନେ ଆମର ଥାନାର ଅଦୂରବର୍ତ୍ତୀ ଜଣେ ପ୍ରତିବେଶୀ ଭଦ୍ରଲୋକଙ୍କର ଶିଶୁ ସନ୍ତାନଟିଏ ହରଣଚାଲ ହୋଇଯାଏ । ଫେରିବାଲା ହିସାବରେ ଏହି ଚଣାବାଲା ସେ ଘରକୁ ମଧ୍ୟ ଯା' ଆସ କରେ । ଭଦ୍ରଲୋକ ଏହି ଚଣାବାଲାକୁ ସନ୍ଦେହ କରନ୍ତି, ଥାନାକୁ ଧରି ଆଣନ୍ତି, ଇଜାହାର ଲେଖାନ୍ତି, ଅହୁରି ଆମକୁ ଚେତାଇ କହନ୍ତି ଯେ,

ଶିଶୁ-ଚୋରଙ୍କ ଅସଲ ଦଲାଲ ଏହି ଜାତର ଲୋକେ । ପ୍ରମାଣ — ଫେରିବାଲାଟିର ଅଶେଷ ଶିଶୁ-ପ୍ରୀତି ··· ସେହି ପ୍ରୀତିକୁ ସେ ମୂଳଧନ କରିଛି... ସେଥିରୁ ସେ ଜଘନ୍ୟ ଫାଇଦା ଉଠାଉଚି, ଏହା ନିଃସନ୍ଦେହ । ସୁତରାଂ ଏ' ଚୋରୀ ତା'ର କାରସାଦି, ଆଉ କାହାରି ନୁହେଁ ···ଥାନାର ସମସ୍ତେ ନିର୍ବିବାଦରେ ତାଙ୍କୁ ସମର୍ଥନ କଲେ...ମୁଁ ବି 'ପାଞ୍ଚ କଥାରେ ଭଗବାନ ଭୂତ', ଏଇଯୁକ୍ତି ପାଲଟି ଗଲି···ଏହିପରି ଚୋରୀ ଉପଦ୍ରବ ଯେଣି, ଆମେ ହକଦାର ହୋଇଥାଉଁ, ତେଣୁ କଠୋର ନୀତି ଅବଲମ୍ବନ କରିବାକୁ ପଛେଇଲି ନାହିଁ ··· ତିନିଦିନ ଯାବତ୍ ଅସାମୀଟିକୁ ହାଜତରେ ଅଟକାଇ ରଖି, ସ୍ୱୀକାରୋକ୍ତି ଆଦାୟ କରିବାର ଯେତେ କିଛି ପୁଲିଶି କଳ କୌଶଳ ନିର୍ଯାତନା ଥାଇପାରେ, ତାହା ପ୍ରୟୋଗ କରିବାକୁ ଲାଗିଲି ... କିନ୍ତୁ କିଛିରେ କିଛି ହେଲନାହିଁ···କେବଳ 'ଖୋକା, ଖୋକା' ଛଡ଼ା ତା' ତୁଣ୍ଡରୁ ଅନ୍ୟକଥା ପଦେ ବାହାରୁ ନ ଥାଏ ···ଏଣେ 'ଖୋକା' 'ଘୁଙ୍ଗୁରଦାନା, ଘୁଙ୍ଗୁରଦାନା' ବୋଲି ଏକ ପ୍ରକାର ଉନ୍ମାଦ···ମୋ'ର 'ଏକୋଇବଲା' ସେହି 'ଖୋକା'—ଯାର ମୁହଁକୁ ଚକାଇ ଦାନାନ୍ତର ଗ୍ରହଣ କରି ନଥିଲି···ଓଃ ମୋ'ର ଦରଦୀ ବୁକୁଟା ଫାଟି ଯାଉଥାଏ ···କିନ୍ତୁ ନିରୁପାୟ, ବିଶେଷତଃ ଯେତେବେଳେ ସେହି ଭଦ୍ରଲୋକଙ୍କ ସହାୟତାରେ ମୋ'ର ଅଧିନ ପୁଲିସ କର୍ମଚାରୀମାନେ ବହୁ ସାକ୍ଷ୍ୟ ପ୍ରମାଣ ଠୁଳେଇ ଠୁଳ କରିଥାନ୍ତି ଅସାମୀ ବିରୁଦ୍ଧରେ ··· କୋର୍ଟକୁ ଚଲାଣ ନ ଦେଲେ ନୁହେଁ···ରିପୋର୍ଟ ଲେଖିବାକୁ ଗଲି — ଅବଶ୍ୟ 'ଛାଡ ପିତୃକାର୍ଯ୍ୟ, କର ରାଜକାର୍ଯ୍ୟ' ଏହି ଆଦର୍ଶ ପ୍ରେରଣାରେ ନୁହେଁ, ବରଂ 'ଅର୍ଥ ପୁତ୍ରଶୋକ ଭୁଲାଇ ଦିଏ' ଏହି ଆତ୍ମପ୍ରବୃତ୍ତିର ତାଡନାରେ···

ଏମିତି ସମୟରେ ଫୋନରେ ସେହି ଭଦ୍ରଲୋକ ଜଣାନ୍ତି —ତାଙ୍କର ଶିଶୁଟି ମିଳିଛି । କେମିତି ମିଳିଲା, କେଉଁଠୁ ମିଳିଲା, ନ ପଚାରି, କିମ୍ବା ମିଥ୍ୟା ଅଭିଯୋଗର କୈଫିୟତ ତଲବ୍ ନ କରି, ମୁଁ କେବଳ ଭାଗ୍ୟବିଧାତାଙ୍କୁ ଧନ୍ୟବାଦ ଦେଲି ଓ ସଙ୍ଗେ ସଙ୍ଗେ ଗାରଦର ଲୌହକପାଟ ଖୋଲି, ନିଜେ ଚଣାବାଲାକୁ ଫଟେଖାଲି ଘେନିଗଲି ମୋର ଖୁକୀ ନିକଟକୁ । ସେତେବେଳେ ସେ ଏକପ୍ରକାର ଜଡବତ୍ ଧରିଥାଏ !

'ଏହି ତୋର ଘୁଙ୍ଗୁରଦାନା, ଖୁକୀ'··· ଖୁକୀ ଆଖି ମେଲାଇ ଚାହିଁଲା···ପ୍ରଥମେ ବିଶ୍ୱାସ କରି ପାରିଲା ନାହିଁ ···କ୍ରମେ ଶୁଖିଲା ଓଠ ଦୁଇଟି ଥରି ଉଠିଲା···ତା'ପର ସେ କି ଦୃଶ୍ୟ !···ପରସ୍ପର 'ଖୋକା, ଘୁଙ୍ଗୁରଦାନା' ଏହିପରି ମୁହୁର୍ମୁହୁ ଡକାଡକି କୁଣ୍ଢାକୁଣ୍ଢି ହୋଇ ସ୍ୱର୍ଗର ସୁଧା-ଧାର ଯେମିତି ବୁହାଇ ଦେଲେ ଧରା ବକ୍ଷରେ ! ମୋ'ର ପୁଲିଶ-ଆଖିରୁ ମଧ ଦର ଦର ହୋଇ ଅଶ୍ରୁ ନିଗିଡି ପଡିଲା !...ତା'ପର ହୁଏ କର୍ତ୍ତବ୍ୟ କଠିନ··· ତହିଁଆର ଦିନ ମୁଁ ଖୁକୀକୁ ନାନା କଥାରେ ବାଁରେଇ ତା' ମାମୁଁଘରକୁ ପଠାଇ ଦିଏ, ଓ ତା'ର ଘୁଙ୍ଗୁରଦାନାକୁ ଶାମବଜାର ଇଲାକା ଛାଡି ଅନ୍ୟତ୍ର ଜୀବିକା ନିର୍ବାହ କରିବାକୁ ଉପଦେଶ ଦିଏ ।··· ସେହିଦିନୁ ଖୁକୀ ଓ ଘୁଙ୍ଗୁରଦାନା ମଧ୍ୟରେ ହୁଏ ଛାଡ଼ବାଡ଼··· । ବର୍ତ୍ତମାନ ସୁଦୀର୍ଘ ବିଚ୍ଛେଦ·ପରେ କଲେଜସ୍ଥ ଆଗରେ ହଠାତ୍ ଭେଟା ଭେଟି ··· ତେଣୁ ଶିଶୁ ସ୍ମୃତିର ମୋହ ତାକୁ ଝାଁକିଚି···ସେଥିପାଇଁ ସେ ···

ଏତକ କହି, ସେ ରହିଗଲେ ଓ ଜାମାତାଙ୍କୁ କହିଲେ,— 'ତୁମେ ଗୋଟିଏ କାମ କରି ପାରିବ, ବେବୀକୁ କେଉଁଠି ଲୁଚେଇ ରଖି ପାରିବ ?'

ଜାମାତା ବାରଷ୍ଟର ମଣିଷ, ବୁଦ୍ଧି ଜୀବୀ; ସେ ଶ୍ୱଶୁରଙ୍କ ମତ୍‌ଲବ୍ ବୁଝି ପାରିଲେ; ସେ ସେହିକ୍ଷଣି ତାହା କାର୍ଯ୍ୟରେ ପରିଣତ କରିଦେଲେ । ତା'ପର ବେବୀକୁ ଯେମିତ ଖୋଜ ପାଉ ନାହାନ୍ତି ଏହିପରି ବହୁଳତାର ଭାବ ପତ୍ନୀଙ୍କ ସାକ୍ଷାତରେ ପ୍ରଦର୍ଶନ କରିବାକୁ ଲାଗିଲେ । 'ବେବୀ କାହିଁ ? ବେବୀ କାହିଁ ?' ବୋଲି, ବେବୀର ମାତା ଅଜ୍ଞାନ··· । ହୃତଶାବା ବ୍ୟାଘ୍ରିଣୀ ପରି ଅନ୍ତ୍ରାଳ ଚକିତାଖଣ୍ଡିକ ମନ୍ଥାଳ ପକାଇଲେ । ଏଥିର ସୁଯୋଗ ଗ୍ରହଣ କରି ବାରିଷ୍ଟର ସାହେବ 'ସେହି ଚଣାବାଲା ...ସେହି ଚଣାବାଲା ଛଡ଼ା ଆଉ କେହି ନୁହେଁ'—ଏହିପରି ଶୁଣାଇ ଶୁଣାଇ ଦାନ୍ତ ଓଠ କାମୁଡ଼ି କହିଦେଲେ । ଏଥିରେ ବାରଷ୍ଟର ପତ୍ନୀ ଚମକି ପଡ଼ିଲେ, ଚଣାବାଲାର ପିଲାଧରା ଅପବାଦ ସ୍ମରଣ କଲେ, ଏବଂ ତାହା ଅପରାଧରେ ପରିଣତ କରିଦେଲେ··ପିତା ସେତେବେଳେ ଉପସ୍ଥିତ ହୋଇଥା'ନ୍ତି ··· ପିତାକୁ କୁଣ୍ଢାଇ ପକାଇ କାଣ୍ଡଜ୍ଞାନ ହୀନ ଭାବରେ କହିବାକୁ ଲଗିଲେ—'ବାବା, ବାବା ତୁମେ ବର୍ତ୍ତମାନ ଡି ସି···ପୁଲିଶର ହର୍ତ୍ତା କର୍ତ୍ତା ···ସେହି ଚଣାବାଲାଟା, ସେହି ତସ୍କରଟା ହରଣଚୂଲା କରିଛି ତୁମର ନାତୁଣୀକୁ···ତାକୁ କଣ ବାନ୍ଧି ଆଣି ପାରିବନି ? ·· ତାରହାଡ଼ ଗୋଡ଼ ଛେଚି, ମାଉଁସ ମେଞ୍ଚା ମେଞ୍ଚା କରି ଦେଇ ପାରିବନି, ମୋ'ର ବେବୀକୁ ତା' କବଳରୁ ଉଦ୍ଧାର କରିଆଣି ପାରିବନି ?···' ।···ଡି, ସି (ପିତା) କନ୍ୟାକୁ ବୁକୁ ଦେଶକୁ ଆହୁରି ଭିଡ଼ି ନେଇ, ପିଠି ଉପରେ ସାଦର ସ୍ନେହ ଗଣ୍ଡିର ପରଶ ଦେଇ, ମୃଦୁକା ହସ ହସୁ ହସୁ, ଅଥଚ ଗମ୍ଭୀର ସ୍ୱରରେ କହିଲେ 'ମା, ମୁଁ ଗ୍ୟାରେଣ୍ଟି ଦେଉଛି, ବେବୀକୁ ତୁମର ଉଦ୍ଧାର କରି ଅଣିବ, ଆଉ ସେହି ଚଣାବାଲାକୁ ଯାବଜ୍ଜୀବନ ଜେଲ୍ ଖଟାଇବ, ଯଦି ମୋ'ର ଗୋଟିଏ କଥା ରଖ

ମା···'। 'କ'ଣ, କି କଥା, କୁହ ବାବା, ତୁମେ ଯା' କହିବ, ମୁଁ ତା' କରିବି, ଯଦି ··· ଯଦି ମୁଁ ବେଦୀକୁ ଯାଏ, ଆଉ ସେହି ଚଣାବାଲର ଚରମ ଶାସ୍ତି ହୁଏ !' ··· ସେତେବେଳେ ବାରିଷ୍ଟର ପତ୍ନୀଙ୍କର କି ଦ୍ୱୈତମୂର୍ତ୍ତି—ଏକଆଡେ ମାତୃ ମୂର୍ତ୍ତି, ଅନ୍ୟଆଡେ ପ୍ରତିହିଂସାପରାୟଣା ଦାନବୀ ମୂର୍ତ୍ତି—ତାହା ଭାଷାରେ ଅବର୍ଣ୍ଣ-ନୀୟ ! 'ବେଶ୍, ମା, ଯାଅ', ତୁମର ଏ' ଅନଭିଜ୍ଞାତ୍ୟ-ସୁଲଭ ବେଶ ଭୂଷା ଓ ଭାବ ପରିତ୍ୟାଗ କର···ଅତିଥି ସତ୍କାରରେ ମନ ପ୍ରାଣ ଢାଳି ଦିଅ ··· ମୁଁ ମୋ'ର ଦାୟିତ୍ୱ ତୁଲାଇବାକୁ ବାହାରିଲି···ହଁ, ତୁମେ ଏ'ପରି ଭାବ ଦେଖାଇ ଚଳିବ, ଯେମିତି କେହି ନ ଜାଣିବେ ଯେ କି ଗୋଟାଏ ଅଘଟନ ଘଟି ଯାଇଛି··· ସ୍ୱୀକାର ?' 'ସ୍ୱୀକାର···ହେଲେ···' 'ଅଃ···ମୁଁ ଗ୍ୟାରେଣ୍ଟି ଦେଉଛି··· ଅବିଶ୍ୱାସ ?'···ବାରିଷ୍ଟର ପତ୍ନୀ ବିନା-ଦ୍ୱିଧାରେ ଚାଲିଗଲେ...ବେଶ ବଦଳାଇ, ଅତିଥି-ସେବାରେ ଆତ୍ମ-ନିୟୋଗ କଲେ ··· ଉତ୍ସବ ସରଗରମ ହୋଇ ଉଠିଲା··· ବିଚିତ୍ରାନୁଷ୍ଠାନ ଆରମ୍ଭ ହେଲା ··· ଗୋଟିଏ ନୃତ୍ୟନାଟ୍ୟ ଅନୁଷ୍ଠାନ-ସୂଚୀର ବିଶେଷ ଆକର୍ଷଣ ଥିଲା, ତାହା ପରିବେଷିତ ହୁଏ; ତା'ର ବିଷୟ-ବସ୍ତୁ ଏହିପରି ଥିଲା—

## ଛନ୍ଦ ବାଉଳା

### ( ନୃତ୍ୟନାଟ୍ୟ )

ଫେରିବାଲଟିଏ···ଘରେ ବାପ ମା ସ୍ତ୍ରୀ, ଶିଶୁଟିଏ ୩।୪ ବର୍ଷର··· ଭାରି କୁଲ୍-କୁଲିଆ···ବାପ ମା ବୁଢା ବୁଢୀ···ଏକ ପ୍ରକାର ଅଥର୍ବ ···ଭୁଆସୁଣୀ ବୋହୂ, ଘରକାମ ତୁଲାଏ... ଶାଶୁ ଶ୍ୱଶୁରଙ୍କ ସେବା

ଯନ୍ତ୍ରକରେ···ସେଇଥି ଭିତରେ ଅଫୁଟ ଶିଶୁ ସମାଲେ, ଶ୍ରମକ୍ଲାନ୍ତ ସ୍ୱାମୀର ପୁଷ୍ଟିତତ୍ତ୍ୱ ନିଏ । ଫେରିବାଲା ଯା ଉପାର୍ଜ୍ଜନ କରେ ତା ଅତି ସାମାନ୍ୟ । ସେଇ ସାମାନ୍ୟ ଅର୍ଥକୁ ସମ୍ବଳ କରି ସଂସାର ଚଳେ, ହେଲେ ସ୍ନେହ, ପ୍ରୀତି, ଆଦର ଉପୁରି ପଡ଼େ···ସୁଖ-ଶାନ୍ତିର ଡେଉ ଗ୍ଲେଟ ନିଳସୃଷ୍ଟିକୁ ଦୋହଲାଇ ଦିଏ ।

ଯେତେବେଳେ ଫେରିବାଲା ମନୁଷ୍ୟତ··· ମନୁଷ୍ୟର ପ୍ରକୃତି ଯିବ କୁଆଡେ···ଆଶା, ଆକାଂକ୍ଷା ଘେନିତ ମାନବ··· ପୁଣି ସେ ଫେରିକରେ ଯେତେ ସୌଖୀନ ରକମାରି ··· ଯେତେ ସୌଖୀନ ପଡାରେ ବୁଲି ତା'ର କାରବାର···ମନର ସଉକ ମନରେ ମାରି ରହିଥାଏ ।

ବଡଦିନ···ବଡବଡ଼ ଲୋକେ ଡିଙ୍କାଣ୍ଡି ପଡନ୍ତି ଘୋଡଦୌଡ ପଡିଆରେ ··· ଫେରିବାଲାର ମନ ସକେଇଲା ··· ବିଶେଷତଃ ସେଦିନ କାରବାର ନଥିଲା ··· ସେ ବି ଦୌଡିଲା ସେଠାକୁ ···ଘୋଡା କେମିତି ଦୌଡ଼ନ୍ତି, ସେଇକଥା ଦେଖିବାକୁ ...କେତେକ ଜୁଆଡିଆ ସାଙ୍ଗ ସାଥିଙ୍କ ସଂଗେ ଦେଖା ··· ଯଦ୍ୟପି ସେ କେବେ ଜୁଆ ଖେଳିନାହିଁ ··· ସେମାନଙ୍କ ପାଲରେ ପଡିଲା···ଯଉଁ ସଉକ ଛପି ଛପି ଥିଲା ମନର ସାତସନ୍ଧି ତଳେ, ତାହା ମଥାଟେକି ଉଠିଲା...ସେ ବି ଘୋଡାରେ ବାଜି ଲଗାଇଲା··· ବାଜି ମାତ ହେଲା । ସେ ୫୬୦୯ ଘେନି ସେଦିନ ଘରକୁ ଲେଉଟିଲା । ବାପ ମା'କୁ ସବୁ କଥା ଫିଟାଇ କହିଲା । ବାପ ମା' ଶୁଣି ନା ପସନ୍ଦ କଲେ । ପୁଅ ମଧ୍ୟ ଏମିତିଆ କାମ ଆଉ ଦିନେ କରିବନି

ବୋଲି ଦୁଇ ଗାଲରେ ଠାଏଠାଏ ଚଟକଣି ଖାଇଦେଲା । ହେଲେ, ଖିଅପିଅଟା କେଇଦିନ ବେଶ୍ ଭଲ ରକମର ଚାଲିଲା ।

ଏଥିରେ ସ୍ୱାଚ୍ଛନ୍ଦ୍ୟର ସ୍ୱାଦୁ ସେ ପାଇଲା । ସତଙ୍କ ମନ ରବେଇଃ ଖବେଇ ହେଲା । ରେଞ୍ଜର୍ସ ଟିକଟ କାଟିଲା । ଭାଗ୍ୟ ଖୋଲିଲା, ପ୍ରଥମ ପ୍ରାଇଜ ୪୦ ହଜାର ଟଙ୍କା ତା ନାଁରେ ଉଠିଲା । ଘରେ ଏକଥା ଜଣାଇଲା ନାହିଁ । କିନ୍ତୁ ଘରେ କାହାର ଶୁଣିବାକୁ ବାକି ରହିଲା ନାହିଁ ।

ସ୍ୱଚ୍ଛନ୍ଦ ଜୀବନ ଧାରଣର ଯାବତୀୟ ଉପକରଣ ସେ ଭରି ଦେଲା ଅପଣା ଘରେ । ନୂଆ ନୂଆ ଜୁଆଣିଅ, ନୂଆ ନୂଆ କୁଟୁମ୍ବର ଅଭାବ ରହିଲାନି । ବାହାରେ ଯିମିତି, ଭିତରେ ସେମିତି ଚାଲିଲା ହଟ୍ଟ-ଗୋଳ, ହୈ ହଲ୍ଲା । ଘରଣୀ ପାଲଟି ଗଲେ ହାଡ ଚମର ଗୋଟିଏ ଯନ୍ତ୍ର । ବାପ ମା ହେଲେ ମୂକ, ତାଙ୍କୁ ମୃତ୍ୟୁ ଦେଲା ଡାକ । ଘରଣୀ ଡକାପାରି ହେଲା ଉଚ୍ଛନ୍ନ । ଗେରସ୍ତ ହୁଁ ହୁଁ ହୋଇ କାନ୍ଦିଲା ସତ, କିନ୍ତୁ ମନେ ମନେ ମାରିଲା ସ୍ୱସ୍ତିର ନିଃଶ୍ୱାସ । ଏହି ବୁଢା ବୁଢୀ ଦୁହିଁଟା ଥିଲା ତା'ର ସବ ସଉକିନ ଆଉ ସଚ୍ଛଳ ଜୀବନ ଯାପନ ପଥରେ ଯେତିକି କଣ୍ଟକ—ବୋହୂଟାକୁ ଫୁଙ୍କିଥିଲା ବଶୀକରଣ ମନ୍ତ୍ର ।

ଏଥର ସେ ବେପରୁଆ···ନିଜର ବୋହୂକୁ କରିବ ରାଜରାଣୀ, ପୁଅକୁ କରିବ ରାଜପୁଅ, ଦରିଦ୍ର କୁଟୀର ଛାଡି କରିବ ରାଜ-ଅଟ୍ଟାଳିକା-ବାସ । ଗେରସ୍ତ ତାର ମନକଥା ପିଟାଇ କହିଲା, କିନ୍ତୁ

ଶ୍ୱଶୁରର ଭିଟା, ଶାଶୁର ବଣ ଦେବତା ଛାଡ଼ ଯିବାକୁ ବୋଧ, ଆପତ୍ତି କଲା । କ୍ରମେ ତାହା କଦା ଜଦରେ ପରିଣତ ହେଲା । ଗେରସ୍ତ ଘର ଛାଡ଼ିଲା । ଉପନ ମହଲରେ, ଉପନ "ନଂ"କାରରେ ବୁଡ଼ି ରହିଲା । ଏଣେ ବୋହୁଟି ଝିଅଟିକୁ ସମ୍ଭାଳି, ଘରର ଧାରା ବଜାୟ ରଖିବା ସଙ୍ଗେ ସଙ୍ଗେ ଘରର ମାନ ବଢ଼ାଇବାକୁ ଯତ୍ନକଲା ।

ଉପନ ଗୁଡ଼ବର୍ଷ ବିତ ଯାଇଛି, ପିଲାଟି ବଢ଼ି ଉଠିଛି, ପାଠ ପଢ଼ୁଛି । ଭଲ ଖାଏ, ଭଲ ପିନ୍ଧେ, ଭଦ୍ର ଘର ପିଲାଙ୍କ ସାଙ୍ଗ ସାଥୀ ହୁଏ । ଘରଟିର ଚେହେରା ବି ବଦଳିଛି, ସୁଖ ସ୍ୱାଚ୍ଛନ୍ଦ୍ୟର ନୀଡ଼ ହୋଇଛି । ଏ ସବୁର ମୂଳରେ ଜଣେ ପ୍ରତିବେଶୀ, ଫେଣବାଲାର ଅନ୍ତରଙ୍ଗ ବନ୍ଧୁ । ତା'ର ପରାମର୍ଶରେ ଫେଣବାଲାର ସ୍ତ୍ରୀ କାରବାରକୁ ବଢ଼ାଇଛି, ଛୋଟ ମନୋହରୀ ଦୋକାନଟିଏ ନିଜର (ଫେଣବାଲାର) ଘରର ବାରଣ୍ଡାରେ ଠାଏ ଛାନ୍ଦିଛି । ଆଗେ ନିଜେ ବସି ବିକୁଥିଲା, ଏବେ ଗରାକ ପରା ବଢ଼ିବାରୁ ପିଲାଟିଏ ବସେଇଛି । ପିଲାଟି ଉଦ୍‌ବାସ୍ତୁ, ବାପ ମା ଛେଉଣ୍ଡ । ଘରଣୀ ଠାରୁ ସେ ମା'ର ଆଦର ପାଇଛି ଏବଂ ହିସାବୀ ହେବାକୁ ଶିଖିଛି ।

ତେଣେ ତେମହଲାରେ ବେହିସାବୀ କାରବାର ଚାଲିଛି । ବିଳାସିତାର ଚରମ । ଏଥିରେ ଉଚ୍ଚ ସ୍ତରର ଆନୁସଙ୍ଗିକ ଯାହା— କ୍ଲବ, ପାର୍ଟି, ରାଜନୀତି ଆଦି କୌଣସି କଥାର ଊଣା ନାହିଁ । ଫେଣବାଲା ତଥାକଥିତ ଗଣ୍ୟମାନ୍ୟଙ୍କ ଭିତରେ ଅନ୍ୟତମ ହୋଇଛି, ଟ୍ୟୁନ ଟ୍ୟୁନ ଓ୍ୟାଲା ବୋଲି ପଦ ପାଇଛି ।

ସେଦିନ କଣ ହୋଇଛି କେଜାଣି, ଏ ସବୁର ପରିଣତ ଯାହା ହୋଇଥାଏ, ଝୁନ୍ ଝୁନ୍ ଓ୍ୟାଲା (ଫେରିବାଲା) ଫେର ଆସେ ତାର ଅଟ୍ଟାଳିକାକୁ, କମିତ ବିମର୍ଷ ବିମର୍ଷ ଭାବ, ପୋଷାକ ପତ୍ରରୁ ବେଶ୍ ବୁଝାଯାଏ ଯେ କୌଣସି ପାର୍ଟିରୁ ସଦ୍ୟ ଫେରିଛି । ସେ ଥପକରି କାଉଚରେ ବସିପଡ଼ିଲା, ଫ୍ୟାନ୍ ଚଳାଇ ଦେଲା ସୁଇଚ ଟିପି, ରେଡ଼ିଓ ଖୋଲିଦେଲା ହାତପର ବୁଲାଇ···ହେଲେ, ଶାନ୍ତି ପାଇଲା ନାହିଁ, ଅଶାନ୍ତ ପଦକ୍ଷେପରେ ପଦ ଚାରଣ କରିବାକୁ ଲାଗିଲା ଘର ଗୋଟାକ । ଅସ୍ୱଚ୍ଛନ୍ଦତାର ଚରମ । ଆସବାବ ପତ୍ର ତଛନଛ କରିବାକୁ ଲାଗିଲା···ସେତିକିବେଳେ ନିରୁଦ୍ଦେଶ ସଂକ୍ରାନ୍ତ ଆକାଶ ବାଣୀ ଘୋଷଣା ହୁଏ । ସେ ଠିଆ ହୋଇଯାଏ ଗୋଟିଏ ପିଲାର ନାମ ଶୁଣି । ବାପର ନାମ ଏବଂ ଘରର ଠିକଣା ଶୁଣେ, ଯେଉଁ ଥାନା ତାକୁ ପାଇଛି ତାର ନାମ ମଧ୍ୟ ଶୁଣେ । ଝୁନ୍ ଝୁନ୍ ଓ୍ୟାଲା ଭିତରେ ଫେରିବାଲା ଅଗ୍ନିକ ଚେଇଁ ଉଠେ । ସେ ପଡ଼ି ଉଠି ଧାଇଁ ଯାଏ ସେହି ସାହେବୀ ପୋଷାକକୁ ଖିଆଲ ନକରି ।

ଫେରିବାଲାର ନିଜର ଘର । ବେଶ ସଜାସଜ । ବାପର ମର୍ଯ୍ୟାଦାକୁ ଚାହିଁ ପିଲାଟିର ଜନ୍ମୋତ୍ସବ ପାଳନ କରିବ ବୋଲି ମା'ର ଏହି ଆୟୋଜନ । ହେଲେ ପିଲାଟି ହଜିଛି । କାନ୍ଦ ବୋବାଳି ପଡ଼ିଛି । ଏତିକି ବେଳେ ସାହେବ ବେଶଧାରୀ ଫେରିବାଲା ତ୍ୱରିତ ପଦରେ ପିଲାଟିକୁ କାଖେଇ ନେଇ ଉପସ୍ଥିତ ହୁଏ । ସୁବେଶା ଗୃହିଣୀ ବିହ୍ୱଳ ହୋଇ ଧାଇଁ ଆସେ ଖଞ୍ଜା ଭିତରୁ । ଆକସ୍ମିକ ମିଳନ ଘଟେ । ମିଳନାଶ୍ରୁ ପ୍ଲାବନ ସିକ୍ତ ପବନକା ଧୀରେ ଧୀରେ ଓହ୍ଲାଇ ଆସେ । ଶାନ୍ତି··· ।

ମାବ—ଅଭିନୟର ଶେଷଦୃଶ୍ୟ । ମିଳନ ପର୍ଯ୍ୟାୟ, ମଞ୍ଚ ଉପରେ ଗୋଟିଏ ଅପ୍ରତ୍ୟାଶିତ ଘଟଣା ଘଟିଯାଏ, ଫେରିବାଲା ପରିବର୍ତ୍ତେ ବାରିଷ୍ଟର ସାହେବ ପ୍ରବେଶ କରନ୍ତି, ବକ୍ଷ ଦେଶରେ ସଂଲଗ୍ନ ଥାଏ ବେବୀ । ବେବୀକୁ ଦେଖିବାମାତ୍ରେ ବାରିଷ୍ଟର ପତ୍ନୀ-ଉଦ୍‌ବେଗ ସମ୍ଭାଳି ନ ପାରି ଫାଟି ପଡ଼ନ୍ତି, ବେବୀ ବେବୀ କୁହାଁଟ ଗ୍ଲଣ୍ଡ ମଞ୍ଚ ଉପରକୁ ଧାଇଁ ଯାନ୍ତି । ନାଟିକାର ତତ୍‌କାଳୀନ ପରିସ୍ଥିତି ସଙ୍ଗେ ଏହି ଘଟଣାଟି ଖାପ ଖାଉଥିବାରୁ ତଥା ଉଭୟଙ୍କର ବେଶଭୂଷା ଓ ଭାବାବେଶ ମଧ୍ୟ ଚରିତ୍ରାନୁଗ ଥିବାରୁ ରୂପକାରପରିଚିତଜ୍ଞାନପ୍ରାପ୍ତ ଦର୍ଶକ ଶ୍ରେଣୀକୁ ବିଚଳିତ କରେନାହିଁ, ତାହା ଭାବ ବହ୍ୱଳତା ଭିତରେ ମରିହଜି ଯାଇଥାଏ । ତଥାପି ଗୋଟାଏ ସ୍ୱର ଗୋଳ ଖେଳି ଯାଏ ପ୍ରେକ୍ଷାଗୃହରେ । ବାରିଷ୍ଟର ପତ୍ନୀ ଖିଅଲ ହୋଇ' ପଡ଼ନ୍ତି ଏବଂ ଲାଜ ସରମରେ ପଳାଇବାକୁ ବାଟ ଖୋଜନ୍ତି । ଏଥିରେ ନାଟ୍ୟରସ ବିଘ୍ନିତ ହେବା ଓ ପ୍ରେକ୍ଷା-ଗୃହରେ ନାନାବିଧ ଅଶୋଭନ ମନ୍ତବ୍ୟର ଆଶଙ୍କା ଉପସ୍ଥିତ ହୁଏ । କିନ୍ତୁ ଓ, ସିଙ୍କ ଉପସ୍ଥିତ ବୁଦ୍ଧିମତ୍ତା ତାହା ଏଡ଼ାଇ ଦିଏ । ସେ ପ୍ରମ୍ପଟରେ ସାଙ୍ଗ ଅର୍ଥାତ ଗଳାରେ ହୁଇସିଲ ଲଟକାଇ, ନାଟିକା ପାଣ୍ଡୁଲିପିଟି ବଗଲରେ ଯାକି ଦ୍ରୁତ ପଶି ଆସନ୍ତି । ସେ କହନ୍ତି 'କହୁଁ ଉହୁଁ ପଳାଇଗଲେତ ଚଳିବ ନାହିଁ, ଠିଆ ହେବାକୁ ପଡ଼ିବ, କାରଣ ନିର୍ଦ୍ଦେଶ ରହିଛି ନାଟିକାଟିରେ, ସମବେତ ନୃତ୍ୟ, ତାପରେ ଯବନିକା···ହେଁ, ଦୁନିଆଁଟା ଛନ୍ଦବାଉଳା ହେଲେ ବି ପ୍ରମ୍ପଟର ହୁଏନା...ନୃତ୍ୟ, ନୃତ୍ୟ...ବେଶ୍ କେହି ନଆସନ୍ତୁ, ମୁଁ ନିଜେ ଭୁଲାଇ ଦେବ···ଅଜିକାଲିତ ଇଙ୍ଗିତ କଳାର ଯୁଗ !'

ନୃତ୍ୟ ଭଙ୍ଗିରେ ହୁଇସିଲ ବଜାଉ ବଜାଉ ଯବନିକାର ଦୁଇପଟ

ଠାଣିଆଣି ମିଶାଇ ଦେଲେ । ଉପୋଦ୍ଘାତରୁ ଉତ୍ସର କଲ୍ଲୋଳ ପ୍ରେକ୍ଷାଗୃହ ମାତ୍ କରିଦେଲା ।

ଉତ୍ସବ ପରେ ଅତି ଗୋପନ ସୂତ୍ରରୁ ଖବର ନେଇ ଜଣାପଡ଼ିଛି ଯେ ବାରିଷ୍ଟର ପତ୍ନୀ କପର ଭେଲ୍‌କା ବନି ଯା'ନ୍ତି, ଅସୁସ୍ଥ ହୋଇ ପଡ଼ନ୍ତି । ବାରିଷ୍ଟର ସାହେବ ସଂଖୋଳିବାକୁ ଯାନ୍ତି, ବାରିଷ୍ଟର ପତ୍ନୀ ଉଲ୍ଲଣ୍ଠିତ ଆବେଗରେ ଚଣାବାଲର ଉଲ୍ଲାସ କରନ୍ତି । ବାରିଷ୍ଟର ସାହେବ ପାଇପ ଓଠାର, ଅଧର କୋଣରେ ଟାର୍ଯାକ୍ ହସ ଫୁଟାଇ କହନ୍ତି—'ଅଭିନୟଟା କେମିତିକା ହେଲ ?' ଏତକରେ ବାରିଷ୍ଟର-ପତ୍ନୀ ଲଲ ପଡ଼ି ଯା'ନ୍ତି, କିନ୍ତୁ କ ଗୋଟାଏ ଆତ୍ମ-ଗ୍ଲାନି ଅନୁଭବ କରି ଭାଙ୍ଗି ପଡ଼ନ୍ତି, ପଲଙ୍କ ଉପରେ ଅଳସ ଦେହଟାକୁ ଅଜାଡ଼ି ଦେଇ କହିଁ କହିଁ ହୋଇ କାନ୍ଦିବାକୁ ଲଗନ୍ତି କଅଁଳିଆ ଛୁଆଟିପରି ।'

'କିନ୍ତୁ ...', ମୁଁ ଏହି କଥା ମନକୁ ମନ କହି, ସେହି ସଂବାଦ ଉପରେ ପୁଣି ଥରେ ଆଖି ବୁଲାଇବାକୁ ଲଗିଲି ।

ଇତି ମଧ୍ୟରେ ଗୃହିଣୀ ପ୍ରବେଶ କରି, ଧୀର କଣ୍ଠରେ ପଚାରିଲେ —'କ'ଣ ପିଲ-ଚେଙ୍ଗା କଥା ଖବର-କାଗଜରେ ବାହାରିଚି, ଗୁହାର କହୁଥିଲ...ଏ' ଘେନି ଝିଅ-ଜୁଆଁଇ ଭିତରେ ଭାରି ଉରକତାରକ ଲାଗିଛି ବୋଲି ଆହୁରି କହୁଥିଲା ।'

ଏମିତି ଖବର ଶୁଣିବାକୁ ଲୋକେ ପ୍ରାୟ ଅଧୀର ହୋଇ ପଡ଼ି ଥା'ନ୍ତି; କିନ୍ତୁ ଗୃହିଣୀର ଧୈର୍ଯ୍ୟ ଅସାମାନ୍ୟ···ମୁଁ ପଢ଼ି ଶେଷ ନ କରିବା ଯାଏ,

ସେ ବିରକ୍ତ କରିବା ଠିକ୍ ନୁହେଁ ବୋଲି ଯେ ଅପେକ୍ଷା କରି ରହୁଥିଲେ, ବେଶ୍ ଜଣାଗଲା...ମୁଁ ତାଙ୍କର ଏ'ଭଳି ଆତ୍ମ-ନିୟନ୍ତ୍ରଣକୁ ପ୍ରଶଂସା ନ କରି ରହି ପାରିଲି ନାହିଁ ...ତା'ପରି ବିଗ୍ରହିଲି, କାଗଜଟା ତାଙ୍କୁ ବଢ଼ାଇଦେବି, କାରଣ ସେ ଯେ ପଢ଼ି ଶିଖିଛନ୍ତି, ଏ' କଥାତ ମୋତେ ଆଉ ଅଛପା ନୁହେଁ, ପର ମୁହୂର୍ତ୍ତରେ ଭାବିଲି—ଏ' ତାଙ୍କର **ଗଭୀର ତପସ୍ୟା !** ଯେଉଁଥିରେ ବିଘ୍ନ ଘଟିବ, ତାହା କରିବା ଅନୁଚିତ ।

ଯାହାହେଉ ମୁଁ ସାନନ୍ଦେ ଖବରଟି ପଢ଼ି ଶୁଣାଇଲି । ପୁଣି ଥରେ ପଢ଼ିବାରେ ମୋ'ର ଯେ ସ୍ୱାର୍ଥ ନ ଥିଲା, ତାହା ନୁହେଁ । ଗଳ୍ପ ଜାଣିବା ଗୋଟାଏ କଥା, ସେଥିର ନିହିତ ତତ୍ତ୍ୱ ହୃଦୟଙ୍ଗମ କରିବା ଅନ୍ୟ କଥା । ପ୍ରଥମ ପଢ଼ାରେ ଲୋକେ ଉପରେ ଭାସିଯା'ନ୍ତି; ଭିତରେ ଅନୁପ୍ରବେଶ କରିବାକୁ ହେଲେ, ଆଉ ଥରେ କାହିଁକି, ବାରମ୍ବାର ପଢ଼ିବାକୁ ହୁଏ—ଅବଶ୍ୟ ତାହା ବିଷୟର ଗୁରୁତ୍ୱ ସାପେକ୍ଷ ।

ମୋ'ର ପୁନର୍ପଠନ ସାର୍ଥକ ହେଲା । ପ୍ରଥମ ଯେଉଁ ପ୍ରଶ୍ନ ମୋତେ ବିଚଳିତ କଲା, ତାହା ହେଉଚି ବାରିଷ୍ଟର ପତ୍ନୀଙ୍କର ଆକସ୍ମିକ ହୃଦୟ ପରିବର୍ତ୍ତନ—କାହିଁ ଶିଶୁ-ଖୋକା, କାହିଁ ଜନମୀ-ଖୋକା ?... ଏହି ଭାବବୈଷମ୍ୟର ମୂଳରେ ରହିଚି କ'ଣ ମାତୃ-ହୃଦୟର ପ୍ରବଣତା ନା ଆଉ କିଛି ?

ଗୃହିଣୀ ଏତେ ଅସ୍ପୃ-ଦର୍ଶୀ କାକଚରିବ ଜାଣନ୍ତିକି କ'ଣ,

ମୋ'ର ଏହି ମାନସିକ ଦ୍ୱନ୍ଦ୍ୱକୁ ସେ ଅନାୟାସରେ ଆଞ୍ଜି କରିନେଲେ, ଏବଂ ସମସ୍ୟାଟି ସମାଧାନ କରିଦେଲେ ଏହିପରି—

ସଁଶପୃ (ସଂଶୟ) ଅଗ୍ୟାନ (ଅଜ୍ଞାନ) ରାକ୍ଷାସ (ରାକ୍ଷସ) ।
କରଇ ଛେ ବିବେକ ଧୂଅଁସ (ଧ୍ୱଂସ) ।

ଖୋକାର ସେଇ ଦଶା ଘଟିଥିଲା । ସେଥିପାଇଁ 'ଘୁଙ୍ଗୁର ଦାନା' ଆସିବ କି ନା, ଏ' ଖବର ବି ଠିକ୍ରାଏ ଲେଉଟିଲାନି ।

ମୁଁ ଅବାକ !··· ସତେତ, ସନ୍ଦେହ ଯୋଗୁଁ ତ ଆଜ ଚାଲିଛି ଶୀତଳ ଯୁଦ୍ଧ ଏ' ବିଶ୍ୱରେ, ସାମରିକ ପ୍ରତିଦ୍ୱନ୍ଦିତା ପରସ୍ପର ମଧ୍ୟରେ । ଗୃହିଣୀ ମୋତେ ଅଧିକ ଅବାକ କରିଦେଲେ, ଯେତେବେଳେ ସେ କହିଲେ—ଦେଖିଲତ ବିଶୁଆସ (ବିଶ୍ୱାସ)ର କରାମତି !···ପିତା ପର୍ତି (ପ୍ରତି) ଆସ୍ଥା ରଖି 'ଖୋକା' ଯେମିତି ପିତାର ବୋଲ ମାନିଲା, ସେମିତି ସେ ତା' ପୁଅକୁ ଫେରି ପାଇଲା ... ଏ' ଗୋଲ-କଥା ହେଉ କି, ଯାହାହେଉ··· କଥାରେ କହନ୍ତି ପରା—'ହରି ରଖେ କି ହରତାଳ ରଖେ ।'... ଯାଏଲୋ ମା, ଡାଲି ହାଣ୍ଡିଟା ଓହଲାଇ ଦେଇ ଆସିବି··· ବଢାଉନି...ତରତର ହୋଇ ଚାଲି ଯାଉଥିଲେ, ହଠାତ୍ ବାଟରୁ ଲେଉଟି ଆସି ପୁଣି କହିଲେ—

"ବାଉଁଟ୍ରୁଣୀ ତାର ସୁଆମି (ସ୍ୱାମୀ) ପର୍ତି (ପ୍ରତି) ଅଭିମାନ କରିଚି ...ହେଲେ ବିଚରା ଭିତରେ ଭିତରେ ଜଳିପୋଡ଼ି ହେଇ ମରୁଚି

ତା'ର ଭୁଲ ପାଇଁ...ମୋ' ସଂଗେ ଥରେ ଦେଖା ହୁଅନ୍ତାକି, ମୁଁ ପରା ତାକୁ ପର୍ମାଣ ଦେଇ କହନ୍ତି...ରାମ ଚନ୍ଦର ବ ଭୁଲ କରିଥିଲେ ସୁନା ହରଣ ଲୋଭେଇ, ସୀତା ଠାକୁରାଣୀ ବ ଭୁଲ କରିଥିଲେ ଲଖଣକୁ ତଡ଼ିଦେଇ।...ଅଣ୍ଟୁ କୁହତ--ମୁଁ ଅଜ୍ଞ କି ଭୁଲଟାଏ କରି ପକେଇ ଥିଲି—ତୁମକୁ ନଜଣେଇ, ଗଙ୍ଗାକୁ ଗାଧୋଇ ଯାଇ...ଷ୍ଟତ, ମୁଁ 'ଖୋକା'କୁ ଅହୁରି ସମଝେଇ କହନ୍ତି— 'ଭୁଲ କର, ସେଇ କଥାକୁ ଧରି ମାନ କର, ପୁଣି ଭୁଲ କରିବା ଠିକ୍ ନୁହେଁ...ଭୁଲର ମାନେ ତ୍ରୁଟି, ଆଉ ଯେମିତ ଭୁଲ ନହୁଏ ତା'ର ବାଟ କରିବା ମଣିଷର ଧରମ···'...

ହୁସ୍ ହୁସ୍···କାଉଟା କାହିଁକି ରା ରା ହେଉଚି...କୁଣିଆ ଫୁଣିଆ କେହି ଆସିବ ନା କ'ଣ···?

ଗୁଲି ଯାଉଥିଲେ ··· ମୁଁ ବାଟ ଓଗାଳି ପଚାରିଲି—'ଚଣାବାଲ ଆଉ ଗଙ୍ଗାର ହାଲ ବର୍ତ୍ତମାନ କ'ଣ, କୁହତ ?'

'ମୁଁ···?' ଏତକ କହି ମୁହଁଟା କେମିତକା ବିରସେଇ ଦେଇ ବାଟକାଟି ଗୁଲିଗଲେ।...ଆଖିର ତେଜ କମିଗଲା, ଓଠ ଫିକା ପଡିଗଲା, ତାହା ମଧ୍ୟ ଲକ୍ଷ୍ୟ କରିଚି ... କଥା କଥାକରେ ତଗ ପକେଇବା ଯାଁଙ୍କର ଅଭ୍ୟାସ, ତା'ବ ତାଙ୍କୁ ସେତେବେଳେ ପଇଠିଲାନି। ମୋର ମନଟା କେମିତକା ହେଲା, ଛାତ ଭିତରୁ କଣ ଝିଲିକାଏ ଖସି ପଡ଼ିଲା। ଗୃହିଣୀଙ୍କର ଭାଗବତ ବୋଲା ଓ

ଗଙ୍ଗାସ୍ନାନ କଥା ପୁଣି ମନେ ପଡିଲା । ଲୋକେ ଶୁଦ୍ଧି କ୍ରିୟା କରିଥାନ୍ତି ··· ଜନ୍ମ-ଛୁତକାରୁ ମୁକ୍ତ ହେବାପାଇଁ ଯେମିତ, ମୃତ୍ୟୁ ଅଶୌଚରୁ ମୁକ୍ତ ହେବାପାଇଁ ସେମିତ ।... ଗୃହିଣୀଙ୍କର ଏ ବିଧି–ପାଳନ କେଉଁ କଥାକୁ ଉପଲକ୍ଷ୍ୟ କରିଯେ ?

ଛି, ଛି, ମୁଁ ବି ଗୃହିଣୀର କୁସଂସ୍କାରକୁ ମନର ସଂସ୍କୃତ ବୋଲି ମାନି ନେଉଛି ତ ?···ଅନ୍ଧ ବିଶ୍ୱାସକୁ ଯୁକ୍ତିର ଆଲୋକ ବୋଲି ମଣୁଛି ।···ତେବେ ମନଟା ଅସ୍ଥିର ହୋଇ ପଡ଼ିଲା ।···ସଂବାଦପତ୍ର ଆଲୋକୋଜ୍ଜ୍ୱଳ ଖବର ବର୍ତ୍ତିତ୍ୟ କରି ବାଢିଚି, କିନ୍ତୁ ଅନ୍ଧାର ବର୍ଷାରେ ବାଟ ବାଉଳା ସହିଶୁ ବଶିଷ୍ଟ ଅଡଥିଷ୍ଟିର ଖବର ବର୍ତ୍ତେ ଯବ୍ଦ ରଖି ଥା'ନ୍ତା !

ଏମିତ ସମୟରେ ଦାଣ୍ଡଦ୍ୱାରେ ମଟରଟିଏ ଠିଆ ହେବାର ହର୍ଣ୍ଣ–ସଂକେତ ଶୁଣାଗଲା ।···ଘରୁ ହଟାତ୍ ଉଠିଯାଇ ଦେଖେଁ, — ମୋର କନ୍ୟା ଅଉ ଜ୍ୱାଇଁ ଉଭୟେ ।

ଅସିବାର କାରଣ ବୁଝିବାକୁ ବିଳମ୍ବ ହେଲନାହିଁ··· ସେଥିପାଇଁ ଏପରି ଆକସ୍ମିକ ଆଗମନକୁ ଆଶ୍ଚର୍ଯ୍ୟ ମଣିଲି ନାହିଁ, କିନ୍ତୁ ଅଭିନନ୍ଦନ ଜଣାଇ ପାରିଲି ନାହିଁ— ଯେହେତୁ ସେତେ-ବେଳେ ଚଣାବାଲିର ମର୍ମବ୍ୟଥା ସଂକ୍ରାନ୍ତ ଆତ୍ମିକ ଆଲୋଚନା ଠାରୁ ଚଣାବାଲି ସଂକ୍ରାନ୍ତ ଭୌତିକ ଚିନ୍ତା ଅଧିକତର ପ୍ରାଧାନ୍ୟ ଲାଭ କରିଥାଏ ମୋ' ମାନସପଟରେ ।

ଆଲୋଚନା–ଚକ୍ର ଅବଶ୍ୟ ବସିଲା···ମୁଁ ବି ଅଗତ୍ୟା ଯୋଗ ଦେଲି···ଝିଅ ଓ ଜ୍ୱାଇଁ ଯେ ସେହି ପ୍ରଶ୍ନକୁ କେନ୍ଦ୍ର କରି ଇତପୂର୍ବେ

ଗୁଡ଼ାଏ ବାକ୍ ବିତଣ୍ଡା କରିଥିଲେ, ଏବଂ ବର୍ତ୍ତମାନ ମୋତେ ସାଲିସୀ ମାନି ତାହା ପୁନରାବୃତ୍ତି କରୁଛନ୍ତି, ଏ କଥା ବୁଝିବାକୁ ବାକୀ ରହିଲ ନାହିଁ । ମୁଁ କେତେକ ଶୁଣୁଥାଏ, କେତେକ ଶୁଣୁ ନଥାଏ । ମୋଟଉପରେ ସ୍ୱାମୀର ବକ୍ତବ୍ୟ ଯେ ଚଣାବାଲାର ବ୍ୟଥାର ଏକମାତ୍ର କାରଣ, ତା'ର ଜନ୍ମ-ମାଟି । କନ୍ୟା ତାହା ପ୍ରତିବାଦ କରି ନାନା ଯୁକ୍ତିଦ୍ୱାରା ପ୍ରତିପନ୍ନ କରୁଥାଏ ଯେ, 'ଖୋକୀ'ହିଁ ଥିଲା ଚଣାବାଲାର ଧ୍ୟାନବସ୍ତୁ । ମୁଁ ଏହି ବାଦାନୁବାଦର ଅବସାନ କଲେ ଏହିପରି ଯୁକ୍ତି ବାଢ଼ିଲି —

ଆମର ପ୍ରତିପାଦ୍ୟ ହେଉଛି ଚଣାବାଲର ମର୍ମ-ବ୍ୟଥାର ମୌଳିକ ସତ୍ୟ ନିର୍ଣ୍ଣୟ ।···ଗଙ୍ଗା ସେହି ବ୍ୟଥାର ମୂଳକେନ୍ଦ୍ର, ଏହା ମୋ'ର ମତ ।···ଗୃହିଣୀଙ୍କୁ ପଚାର, ସେ ନିଶ୍ଚୟ ମତ ଦେବେ—'ନରକଥା ନାରାୟଣ ଜାଣନ୍ତି ।' (ଗୃହିଣୀ ଠିଆ ହୋଇଥିଲେ, ମୌନଂ ସମ୍ମତି ଲକ୍ଷଣଂ ହିସାବରେ କେବଳ ସମର୍ଥନ ଜଣାଇଲେ ନାହିଁ, ବରଂ ଏକ ଅନନଭ୍ୟସ୍ତ ଭୃକ୍ଷେପ କରି ମୋ'ଆଡେ, ସେ'ଠୁଁ ଚାଲିଗଲେ ଖାଦ୍ୟଶାଳାଭିମୁଖେ । ସେହି ଭୃକ୍ଷି ଯେ ଅନ୍ତରର କେଉଁ ଉତ୍ସାରିତ ଆନନ୍ଦର ଦ୍ୟୋତକ, ତାହା ବେଶ ଉପଲବ୍ଧି କଲି ।)···ସ୍ୱାମୀଙ୍କ ମତ, ଜନ୍ମମାଟି...କନ୍ୟାର ମତ, 'ଖୋକୀ' ।···ସୁତରାଂ ଆମ ଚାରିଜଣଙ୍କର ଚାରି ମତ ।···ଯେ ଯାହାର ମତକୁ ସତ୍ୟ ବୋଲି ସାବ୍ୟସ୍ତ କରିବାକୁ ଯତ୍ନଶୀଳ, ଯଦ୍ୟପି 'ସତ୍ୟ' ଏକ ଓ ଅଭିନ୍ନ ।···ଏପରି ମତ ବିଭିନ୍ନତାର ମଧ୍ୟ କାରଣ ରହିଛି ।···'ସମାଜ- ସଂସ୍କାର' ଚିନ୍ତା ମୋ' ମନରେ ଜାଗ୍ରତ, ସେଥିପାଇଁ ସମାଜ-ଉପେକ୍ଷିତା-ଗଙ୍ଗା ଚଣାବାଲା'ର ଧ୍ୟାନବସ୍ତୁ ବୋଲି ବିଚାରିବା ମୋପକ୍ଷେ ସ୍ୱାଭାବିକ ।··· ସ୍ୱାମୀ ରାଜନୀତି ସଙ୍ଗେ ଜଡ଼ିତ···ସୁତରାଂ ଜନ୍ମ ମାଟିପ୍ରତି ଗୁରୁତ୍ୱ-

ଦେବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । କାନ୍ୟା ତଥ୍ୟ-ବାଦୀ, ସେଥିପାଇଁ ସେ 'ପୁଲିସ, ଶ୍ୟାମବଜାର' ତଥ୍ୟ ସମ୍ବଳିତ ଚଣାବାଲାର ଜୀବନ-ଇତିହାସର ଅନୁଦ୍‌ଘାଟିତ ଅଧ୍ୟାୟଟି ଜାଣିବା ପରେ, 'ଖୋକା'ର ଅନୁକୂଳରେ ମତ ଦେବ, ଏହା ଆଦୌ ବିଚିତ୍ର ନୁହେଁ । ···ଆଉ ଗୃହିଣୀ ଧର୍ମ-ପ୍ରାଣା, ଯାହା କହିବା ତାଙ୍କ ପକ୍ଷେ ସମୀଚୀନ, ତାହାହିଁ ସେ କହିଛନ୍ତି ।···ଆହୁରିବି, ମନସ୍ତାତ୍ତ୍ୱିକ ହିସାବରେ ଏକଥା ମଧ୍ୟ କୁହାଯାଇ ପାରେ ଯେ—କ୍ୟାଇଁ ଅଚେତନ ମନର ବସ୍ତୁ, ଖୁକୀ ଅବଚେତନ ମନରବସ୍ତୁ, ମୁଁ ଚେତନ ମନର ବସ୍ତୁ, ଆଉ ଗୃହିଣୀ ଅଚିନ୍ତ୍ୟ ଅବ୍ୟକ୍ତ ଇନ୍ଦ୍ରିୟାତୀତ ବସ୍ତୁ ଉପରେ ଯଥାକ୍ରମେ ଜୋର ଦେଇଛନ୍ତି । କିନ୍ତୁ ସତ୍ୟ ଯାହା, ତାହା ଅନନ୍ୟ ଓ ଚିରନ୍ତନ । ତେଣୁ ସତ୍ୟ-ସନ୍ଧାନୀ ହେବାକୁ ହେଲେ, ଆମକୁ ମତ-ନିରପେକ୍ଷ ଭୂମିକା ଗ୍ରହଣ କରିବାକୁ ହେବ···ଚଣାବାଲା କେଉଁ ପରିସ୍ଥିତିରେ ବର୍ତ୍ତମାନ, ସେହି ସନ୍ଧାନ ନେବାକୁ ହେବ । ଦ୍ୱିତୀୟରେ ତାର ମନର ଅବସ୍ଥା କିପରି, ତାହା ପର୍ଯ୍ୟବେକ୍ଷଣ କରିବାକୁ ହେବ ।···ତା' ନହେଲେ, ଆମେ କଳହ ଦ୍ୱନ୍ଦ୍ୱରେ ଯେତେ ମଥା ଫଟା ଫଟି ହେଲେମଧ୍ୟ, ସତ୍ୟରୂପକ ପରିଣତି-ବିନ୍ଦୁଟି ରହିଥିବ , ଲକ୍ଷ୍ୟପଥର ବାହାରେ, ଏଥିରେ ଆଦୌ ସନ୍ଦେହ ନାହିଁ ।

ମୋର ଏହି ବିଶ୍ଳେଷଣଧର୍ମୀ ଆଲୋଚନା ସମସ୍ତଙ୍କ ମନକୁ ପାଇଲା···ଆମର ଆଲୋଚନାସଭା ଭଙ୍ଗହେଲା ··· କ୍ୟାଇଁ ସମାପ୍ତି-ଭାଷଣ···ସୁଲଭ ଏତିକି ମନ୍ତବ୍ୟ କଲେ—

'ସତ୍ୟ ଯେଣୁ ଆମର ଲକ୍ଷ୍ୟବସ୍ତୁ, ତେଣୁ ବିଜ୍ଞାନୀ ଓ ଆତ୍ମ-ଜ୍ଞାନୀ ପରସ୍ପରକୁ ବୁଝି ସମୁଜି, ସମ ତାଳରେ ଜୀବନର ଜୟଯାତ୍ରା

ପଥରେ ଏଭଳମୁଖୀ ଅଭିଯାନ ଚଳାଇବ, ଏହା ଯୁଗୋଚିତ ଧର୍ମ ହେବା ବାଞ୍ଛନୀୟ ନୁହେଁକି ?

'ଧୀର ପାଣି ପଥର କାଟେ'—ଗୃହିଣୀ ଙ୍କ' ଓ ଖାବାର ପରିବେଷଣ କରୁ, କରୁ ତାଙ୍କର ତଗଡ଼ମାଳି ପେଡ଼ିରୁ ଏହି ତଗଟି ନ ବାଢ଼ି ରହି ପାରିଲେ ନାହିଁ ।

ତଗଟି ସମୟୋଚିତ ଓ ଭାତ୍‌ପର୍ଯ୍ୟପୂର୍ଣ୍ଣ ହୋଇଥିବାରୁ ଭୋଜ୍ୟଙ୍କ ସ୍ୱାଦ ଓ ଭୋଜକର ତୃପ୍ତି ଯେ କି ପରିମାଣରେ ବଢ଼ାଇ ଦେଇ ଥିଲା, ତାହା କେବଳ ଭୋକ୍ତାହିଁ ଜାଣେ ।

ଅଭ୍ୟାଗତମାନେ ଯେମିତି ଅଗ୍ନୁନକ୍ ଉପସ୍ଥିତ ହୋଇଥିଲେ, ସେମିତି ଅଗ୍ନୁନକ୍ ବିଦାୟ ନେଇ ଚାଲିଗଲେ ।···କାଲେ ଅମେ ଅଠକାଇବୁ, କରିବୁ, ଏଥିପାଇଁ ମୁକ୍ତର ବାଠ ଯେ ବେଳସୁଁ ସେମାନେ ପାଇଁ, ଠିକ୍ କରି ଅସି ନ ଥିଲେ, ତାହା ନୁହେଁ··· କାରଣ, ଝିଅ ବଜାକୁ ଓ ଜ୍ୱାଇଁ ଅଫିସ ଝାଇମ୍‌କୁ ଅଳ ଧରି, ଅମର କୁଟୁମ୍ବିତା ମୁହଁରେ ଡବଲ ତାଲ ଠୁକ୍କି ଦେଇଥିଲେ ।

ଅବଶ୍ୟ ମୁଁ ମନେ ମନେ ଏହାହିଁ ଚାହୁଁଥିଲି···କିନ୍ତୁ ସେମାନେ ଚାଲି ଗଲା ପରେ ପରେ ମନେ ହେଲା ଯେମିତି ମୁଁ ଅରଣ୍ୟରୁ ଯାଇ କାନ୍ତାରରେ ପଡ଼ିଲି । ···କେତେବେଳେ ପାଅଁଠା ବାଜିବ, ମୁଁ ବୁଲି ବାହାରିବ !

ଖିଆ-ପିଆ ବଢିଲା, ମୁଁ ଘଣ୍ଟାକୁ ଅନାଇ ଦେଲି, ଦେଖେଁ, ମୋଟେ ବାରଟା !···

ସମୟତ କଟାଇବାକୁ ହେବ···ସେଥିପାଇଁ ଖବର-କାଗଜଟା ଓଲଟାଇବାକୁ ଲାଗିଲି···ହେଲେ, ଯେଉଁ ଖବର ପଢିଲେ ମଧ୍ୟ ସେହି ଖବର (ଶିଶୁଚେଷ୍ଟା କୌତୁକ)ଟି ପଡୁଚି, ଏହିପରି ଖାଲି ମନେ ହେଲା··· ବିରକ୍ତ ହେଲି, ଥୋଇଦେଲି।··· ବିଛଣାରେ ଗଡ଼ପଡ଼ ହେବାକୁ ଗଲି···ଗଣ୍ଡବାହି ସାରହେଲା··· ନିଦ୍ରା-ଜାଗରଣର ଦ୍ୱନ୍ଦ୍ୱ ଭିତରେ ଅସ୍ଥିରତା ଆହୁରି ବଢିଗଲା।

ଝିଅ ଜ୍ୱାଇଁ ଥିଲେ ବରଂ ଗଳ୍ପ ସ୍ୱଳ୍ପରେ··· !···ଆଚ୍ଛା ବିନ୍ନି ପାଇଁ ଉଚ୍ଛନ୍ନ ହୋଇ ତା'ର ମା ଧାଇଁଗଲା, ଦଣ୍ଡେବି ରହିବାକୁ ମନ କଲା ନାହିଁ ନିଜ ବାପଘରେ···ତା' ହେଲେ ଗଙ୍ଗାକୁ ବିଦେଶ ପଠାଇ ତା' ମା କେତେ କଲବଲ ହେଉ ନ ଥିବ ଯେ ?···ଚଣାବାଲ କ'ଣ ଛୁଆଟି ସାଥିରେ ତା' ମାକୁ ଦେଖି ଆସିଛି ?···ପ୍ରଳୟଙ୍କରୀ ପ୍ରକୃତିର ନଗ୍ନ ତାଣ୍ଡବକୁ ଉପେକ୍ଷା କରି ଛୁଆଟାକୁ ନ ଆଣିଥିଲେତ ଚଳିଥାନ୍ତା, ଭାରତ ଏମିତ କ'ଣ ଅଶୁଦ୍ଧ ହୋଇ ଯାଇଥାନ୍ତା ଯେ ?...ନା, ଭାରତର ମର୍ମ-ବାଣୀ ସତ୍ୟ-ପାଳନ···ଯୁଧିଷ୍ଠିର ଅକାଳରେ ପଞ୍ଚ ମିଥ୍ୟା କହିବାକୁ ବାଧ୍ୟ ହୋଇଥିଲେ, ସେଥିପାଇଁ ନରକ ଦର୍ଶନ କରିଥିଲେ।··· ସତ୍ୟର ମହିମା ଦେଖି ଭାରତର ମହିମା।···ଆଜି ମଧ୍ୟ ଭାରତ ସତ୍ୟକୁହିଁ ଆଦର୍ଶ କରି ମହାସ୍ଥାନ।···ସୁତରାଂ ଚଣାବାଲ ଏ' ନୀତି ବର୍ଜିତ କାର୍ଯ୍ୟ କରିବ କପରି ?···ଶ୍ୟାମପୁକୁର-ଥାନାରୁ ଖଲାସ୍ ପାଇବାର ଆଇନଗତ କାରଣ ଯାହା ହେଉ, ସେ ଅନ୍ତଗତ କାରଣ ଏଇଥି ଜାଣେ

ଯେ ତା'ର 'ଖୋକା' ଥିଲା ମୁକ୍ତିର ମୂଳଦୁଆ ସେହି ଖୋକାର ଆମନ୍ତ୍ରଣ ପ୍ରତ୍ୟାଖ୍ୟାନ ଓ ଅଡଦେଶ ଅବଜ୍ଞା କରିବ ସେ କିପରି ? ତଦୁପରି ବେଙ୍ଗାର ଏକାନ୍ତ ଅନୁରୋଧ, ତା'ର ସମବୟସୀ ଗୋଟିଏ ଶିଶୁ ସଙ୍ଗେ ସେ ଭାବ ପ୍ରୀତି ଜନ୍ମାଇବ··· ଶିଶୁ–ପ୍ରାଣ ଚଣାବାଲା ପ୍ରାଣ ଥାଉଁ ଥାଉଁ ଶିଶୁର ମିନତି ଏଡ଼ାଇଦେଇ ପାରେକି ?

ଚଣାବାଲାର ଭାଗ୍ୟ ଠାଣ ଯେ, ସେ କାଲି ସେହି ଅଭିଜାତ୍ୟ-ପୁରୀରେ ଅନୁ ପ୍ରବେଶ କରି ନାହିଁ ।···'ଖୋକା' ବାଞ୍ଛାବଣୀ ଯେମିତି ଆତ୍ମମର୍ଯ୍ୟାଦା (ଅଭିଜାତ୍ୟ ମର୍ଯ୍ୟାଦା) ବର୍ଜିତ ହୋଇ ଗୋଟାଏ ଅବର୍ଜିଆ (ଅନ୍ତତଃ ଆଭିଜାତ୍ୟ ସମାଜ ଦୃଷ୍ଟିରେ) ଅଭ୍ୟାଗତ ପାଇଁ ଅଧୈର୍ଯ୍ୟ ହୋଇ ପଡ଼ିଥିଲେ, ସେଥିରେ ମର୍ଯ୍ୟାଦାକୁ କେନ୍ଦ୍ର କରି କାଲି ଯା' ଘଟି ଥିଲା ସେ ନ ଯିବା ଫଳରେ, ତା'ଠାରୁ ଅଧିକ କିଛି ବିଭ୍ରାଟ ଘଟିଥା'ନ୍ତା ସେ ଯାଇଥିଲେ, ଏହା ଧ୍ରୁବସତ୍ୟ ।... ବିଚରା ସତକୁ ସତ ସନ୍ତର୍ଯ୍ୟାତନ କାରିଦଣ୍ଡ ଯେ ଭୋଗି ନଥା'ନ୍ତା, ତାହା ନୁହେଁ !···ଭଗବାନ ରକ୍ଷା କରିଛନ୍ତି !!

'ଭଗବାନ', 'ଭାଗ୍ୟ'—ଏହି ସମ୍ବୋଧନ ଶବ୍ଦ ଦୁଇଟି କ୍ଲାନ୍ତ ମନର ଅମୋଘ ପ୍ରାଚୀର ଭେଦ କରି ମୋ'ର ବୁଦ୍ଧି, ବିଚାରକୁ ଘାରି ମୋତେ ଅଚ୍ଛନ୍ନ କରୁଛି ! ··· କାହିଁକି ? ··· ଏ'କଣ ଦୁର୍ବଳତାର ପରିଚାୟକ ?... ଗୃହିଣୀର ସେହି ଭାଗବତ-ପାଠ, ଗଙ୍ଗା-ସ୍ନାନ କ'ଣ ସତେ ସତେ ମୋ' ଉପରେ ପକାଇଛି ଅଲଙ୍ଘନୀୟ ପ୍ରଭାବ ? ···ତା' ନହେଲେ 'ନରକଥା ନାରାୟଣ ଜାଣନ୍ତି'—ଗୃହିଣୀଙ୍କର ଏହି ଢଗଟି ସେତେବେଳେ ପଇଠିଲା କାହିଁକି ? ତାଙ୍କ ମନର ଗୁପ୍ତଦ୍ୱାର

ଫେଇବାକୁ ଗଲି, ହେଲେ ତାହାହିଁ ଯେ ମୋ'ର ଅପ୍ର ବାକ୍ୟ ନ ଥିଲ କିଏ କହିବ ?... ଗୃହିଣୀଙ୍କୁ ପ୍ରସନ୍ନ ଦେଖିଥିଲି ...ଆତ୍ମା, ଆତ୍ମାରେ ମିଳନର ପ୍ରଚ୍ଛନ୍ନ ଅନୁଭୂତି ଯେ ମୁଁ ଉପଲବ୍ଧି କରି ନ ଥିଲି, ତାହା ବିତ ନୁହେଁ ।

ଆତ୍ମା କ'ଣ ?... ଆତ୍ମାର କ'ଣ ରୂପ-ରେଖ ଅଛି ?...ସକଳ ବସ୍ତୁର କ'ଣ ରୂପ-ରେଖ ଥାଏ ?... ବିଦ୍ୟୁତ୍ କ'ଣ, ଆମେ ଜାଣୁନା, କିନ୍ତୁ ତା'ର ପରିଚୟ ପାଉଁ ଶକ୍ତିଦ୍ୱାରା ।...ଜୀବନ କ'ଣ, ଆମେ ଜାଣୁନା, କିନ୍ତୁ ତା'ର ପରିଚୟ ମିଳେ ଗତିଦ୍ୱାରା ।...ସାହିତ୍ୟ କ'ଣ, କେହି ସଂଜ୍ଞା ନିର୍ଣ୍ଣୟ କରି ପାରି ନାହିଁ, କିନ୍ତୁ ତା'ର ଉଭୟ ଶକ୍ତି ଓ ଗତି ରହିଛି ଏ କଥା ଆମେ ସ୍ୱୀକାର କରୁଥାଏଁ, କାରଣ ସେଥିର ରସ ଆମେ ଅନୁଭବ କରୁଁ, ସରସ ଜୀବନର ପ୍ରେରଣା ପାଇ ଆଗଉଁ ।... ଆତ୍ମା ମଧ୍ୟ ସେହି ଅରୂପ ସନାତନ, ଅତିନ୍ଦ୍ରିୟ ଅବ୍ୟକ୍ତ, କିନ୍ତୁ ଅଛି ତା'ର ଅନୁଭୂତି । ସାଧକମାନେ ସେହି ଅନୁଭୂତିର ଅଧିକାରୀ ହୋଇଥାନ୍ତି, ଆତ୍ମା ସଙ୍ଗେ ଆତ୍ମାର ଯୋଗଫଳରେ ସର୍ବ-ଦର୍ଶୀ ବୋଲଇଥା'ନ୍ତି ।

ସୁତରାଂ ଚଣ୍ଡାଳ ସଙ୍ଗେ ମୋ'ର ଏକାତ୍ମବୋଧ ସର୍ବାଦୌ କରଣୀୟ । ତେବେ ଯାଇ ତା'ର ମର୍ମ-ବ୍ୟଥାକୁ ମୋ'ର ମର୍ମ-ତନ୍ତ୍ରୁରେ କରି ପାରିବି ଅନୁରଣିତ । ସତ୍ୟହେବ ଉଦ୍‌ଘାଟିତ ।

ବିଜ୍ଞାନ ଯାହା କହୁ, ଭାରତ ଆତ୍ମ-ବାଦୀ । ସେହି ଆତ୍ମ-ବିଶ୍ୱାସରେ ଦୃଢ଼ ଥାଇ, ଭାରତ ବିଜ୍ଞାନର ଚରମ ଉତ୍କର୍ଷକୁ ମଧ୍ୟ ନଗଣ୍ୟ

ମଣୁଛି ।··· ଭୌତିକ ଉନ୍ନତି ସାଧନ ବାଗରେ ବିଜ୍ଞାନର ଅବଦାନ ଅନସ୍ୱୀକାର୍ଯ୍ୟ, ମାତ୍ର ସେଥିସଙ୍ଗେ ଆଧ୍ୟାତ୍ମିକ ଉନ୍ନତିର ଯୋଗାଯୋଗ ଅନିବାର୍ଯ୍ୟ । ମୁଁ ଭାରତୀୟ — ଏହିପରି ଭାବରେ ହେବି ଅନୁପ୍ରାଣିତ, ଏଥିରେ ଆଶ୍ଚର୍ଯ୍ୟ କ'ଣ ?···

ଚନ୍ଦ୍ରାରସୂନ୍ର ଅହ୍ନର ଝାଣିବ, ଏତିକିବେଳେ, କାନ୍ଥ ଘଡ଼ିରେ ଠଂ ଠଂ ହୋଇ ଗୁଡ଼ି ବାଜିଲା ।··· ମୁଁ ଧଡ଼ପଡ଼ ହୋଇ ଉଠି ବସିଲି ।···ଯଦିଓ ଆଉ ଘଣ୍ଟାଏ ବିଳମ୍ବ ଥିଲା, ତଥାପି 'ଧୀର ପାଣି···'କୁ ଅବହେଳା କରି ବାହାରିବାକୁ ଅଧୀର ହୋଇପଡ଼ିଲି ।

ଗୃହିଣୀତ କାହିଁ ଏ'ଘର ଆଦୌ ମାଡ଼ି ନାହାନ୍ତି ଇତି ମଧ୍ୟରେ ।···ଦିବା ନିଦ୍ରାତ ସେ ଯା'ନ୍ତି ନାହିଁ ।···କୁଆଡେ ଗଲେ ନା କ'ଣ ?··· ମୋ'ର ବିନା ଅନୁମତିରେ ଯାଇ ଯେଉଁ ଭୁଲ କରିଥିଲେ ସକାଳେ, ତା'ର ଆଉ ପୁନରାବୃତ୍ତି ହେବ ନାହିଁ, ଏହିପରି ଆଶ୍ୱାସ ଦେଇ ଥିଲେ ସେତେବେଳେ ! ତା' ହେଲେ ?...

ମନର ପ୍ରଶ୍ନ ମନରେ ରହିଗଲା, ଗୃହିଣୀ ତା'ଙ୍କ ଘରୁ ବାହାରି ଆସିଲେ ।··· କେମିତି ଅସୁସ୍ଥ ଅସୁସ୍ଥ ଜଣାଯାଉଥିଲେ ।··· ଆଖି ଦୁଇଟା ଲାଲ ପଡ଼ି ରକ୍ତ-ମନ୍ଦାର ପରି ଟହଟହ ଦେଖା ଯାଉଥାଏ । ···ମୁଁ ଭୀତ କମ୍ପିତ କଣ୍ଠରେ ପଚାରିଲି —

'ତୁମର ଦେହ···'

'କିଛି ନାହିଁ, ଟିକିଏ ଅଳସ ଅଳସ ଲାଗିଲା କେମିତି... ସେଥିପାଇଁ ...'

ତଥାପି ଘୁଙ୍ଗତଟା ଦାଉଁ ଦାଉଁ ପଡୁଥାଏ, ତାଙ୍କ ଭାଲ-ପଟରେ ହାତ ପାପୁଲି ଲଗାଇ କହିଲି—

'ବେଶ୍ ତାହା...ତୁମେ ଶୁଅତ ଯାଇ...'

'ଖରା ନଇଁଗଲାଣି...ଝି ଆସିବ ଅଇଣ୍ଠିକା ... ତୁମେ ବୁଲି ବାହାରିବ...'

'ନା, ନା, ମୁଁ ବାହାରିବିନି...ତୁମେ ଯାଅ...ଶୁଅତ...'

'ଝିଆ, ଚଣାବାଲାଟାର କ'ଣ ହେଲା, ଯାଇ ବୁଝ ... ଉଁଃ-ଉଁଃ ସେହି ଖବର ନେବାକୁ ସହଳ ସହଳ ବଢ଼ାଇବ ବୋଲିତ, ଉଠି ଆସିଲି...'

"ଆଚ୍ଛା ମୁଁ ଯିବି, ବାହାରିଲି...ତୁମେ ...'

'ମୋ' କଥା ମୁଁ ବୁଝୁଛି ... ତୁମେ ...'

ଏଭଳି ପରିସ୍ଥିତିରେ ମୁଁ ତାଙ୍କ ମତ ବିରୁଦ୍ଧରେ ଠିଆ ହୋଇ ବିରକ୍ତ କରିବା ଠିକ୍ ନୁହେଁ ମନେ କରି ଭ୍ରମଣ ପ୍ରସ୍ତୁତି ପାଇଁ ଆପଣା କୋଠରୀକୁ ଯିବାର ଉପକ୍ରମ କଲି ... ସେ ବାଟେ ନ ଆଗୁଳେଇ କହିଲେ—

'ତୁମର ପାନ ଡବାଟା ରହିଚି ତାଙ୍କର ବାଁପଟ କୋଣରେ, ନେବାକୁ ଭୁଲିବନି ।'

ଏହି ସମୟରେ ଟ୍ରି ଆସି ପହଁଚିଗଲା···ଗୃହିଣୀ ଘର ଉର ହୋଇ ବାହାରିଗଲେ ତାଙ୍କୁଇ ଉଦ୍ଦେଶ୍ୟ କରି ··· ମୁଁ ବି ତାଙ୍କ ବିଷୟରେ ମଥା ଘୁରେଇଲିନି, ଘୁରେଇ ଲାଭ ନାହିଁ, ସେଥିପାଇଁ ଯଥା କରଣୀୟ ସାରି, ପାନ ଖିଲେ ପାଟିରେ ପକେଇ, ବାହାରି ପଡ଼ିଲି··· ହେଲେ, ପାଦ ଚଳି କେମିତି ଚଳୁ ନ ଥାଏ ।

କୌଣସି ପଠୁଆରର ଧୂଳା-ବାଲି ସବୁ ପଥ ଯେତେ ଅତିବାହନ କରୁ ଥାଏ, ମନ-ଚେତନା ସେତିକି ଉଚ୍ଚ ମେରୁ-ଦଣ୍ଡକୁ ବିପରୀତ ଦିଗକୁ ଭିଡୁଥାଏ ।··· ଯାହାହେଉ ଗୃହ ଓ କଲେଜ୍-ସ୍କୁଆରର କୁରଭି-ମର୍ମାମହିରେ ଯେତେବେଳେ ଭିଡ଼ାଭାଡ଼ିହୋଇ ଉପସ୍ଥିତ, ସେତିକିବେଳେ 'ବାବୁଜି, ବାବୁଜି' ବୋଲି ଘନ ଘନ କୁହାଟ ମୋ' କର୍ଣ୍ଣପଟହ ଫଟାଇ ଦିଏ ।...ମୁଁ ଠିଆ ହୋଇଯାଏଁ, ବୁଲିପଡ଼ି ଶବ୍ଦ ବାଣୁଆର ଅନୁସନ୍ଧାନ କରେ ।···ଶବ୍ଦ-କ୍ଷେପକ ସେତେବେଳକୁ ଦ୍ରୁତ ପଦରେ ଲମ୍ବ କ୍ଷେପ ପକାଇ ମୋ' ପାଖାପାଖି ହୋଇ ଯାଇଥାଏ ।...ବେଶୀ ନିରଖି ଚିହ୍ନିବାକୁ ହେଲା ନାହିଁ, ବେଶ୍ ଚିହ୍ନିଲି ।

ଯେ ସେହି ଅନ୍ୟ-ଚଣାବାଲା, ମୋଟିଆ-ଚଣାବାଲା ନୁହେଁ । ମଥାରେ, କାନ୍ଧରେ, ହାତରେ ବୋଝର ସମାବେଶ ।··· ସେହି ସମାବେଶ ପ୍ରତି ମୋ'ର ଦୃଷ୍ଟି ନିବଦ୍ଧ ହେଲା,···ଲକ୍ଷ୍ୟ କରି ଆଶ୍ଚର୍ଯ୍ୟ ହେଲି ଯେ, ପଣ୍ୟ ଓ ତୈଜସ ପଦାର୍ଥର ସମ୍ଭାର ବିଲ୍‌କୁଲ୍ ସେଇୟା

ଯାହା ପୂର୍ବତନ ଓସ୍ତାଦ୍ ଚଣାବାଲ ବ୍ୟବହାର କରୁଥିଲ । ···ସନ୍ଦିଗ୍ଧ ହେଲ୍···'ଗ୍ରେଟ୍, କମ୍ବା ଅନୁକରଣ'—ସାଦୃଶ୍ୟର ଏହିଭଳି ବୈକଳ୍ପିକ ସମାଧାନ-ଦୋଳାରେ ଦୋଦୁଲ୍ୟମାନ, ଏସବୁ ସମୟରେ ମୋର ଦୋଲଣି ବେକ, ପରିବାହକ ହସହସି କହିବାକୁ ଲଗିଲ ମୋତେ ଅପ୍ରତିଭ କରି—

'ଆମର ମେଣ୍ଟାମେଣ୍ଟି ହୋଇଗଲ, ବାବୁଜି ··· ଓସ୍ତାଦ୍ ଓସ୍ତାଦ ହାତସଫେଇ ଦେଖେଇଛ...ଆମକୁ କ'ଣ କହିଲ ଜାଣନ୍ତି ? ଜଣେ ଗ୍ରେଟ୍ ହେଲେ, ଆଉ ଜଣକ ଗ୍ରେଟା ... କେହି କାହାରିକୁ ଊଣା ନୁହେଁ ... ଦୁହେଁ ଭାଇ ··· ବଦ୍‌ମାସି ବୁଦ୍ଧି ଛାଡ଼···ମିଳିମିଶି କାମକର, ଖଟି ଖାଅ ...'

ମୁଁ କଥାର ମର୍ମ ବୁଝି ପାରିଲ, ନ ବୁଝିଲ ପରି ପଚାରିଲ—

'ଦୋକାନଟା ତୋତେ ଆଜି ମୋଠିଅକୁ ବାଣ୍ଟି କୁଣ୍ଟି ଦେଇଛନ୍ତି ଓସ୍ତାଦ୍—ନା ?'

ବୋଧେ ଭାବି ଥିଲ, ସେଥିଯୋଗୁଁ ହଁ-ଭରା ମଥାଟା ଈଷତ୍ ଟିଙ୍ଗାରିଲ, ତା'ପର ଗୁଳିଯିବ କ'ଣ, ଉତ୍ସାହଭରେ ଆହୁରି କହିଲ—

'କାଳୀ ମାଈଜୀଙ୍କ ଧଣ୍ଡା ଛୁଆଇଁ, କସମ ଖୁଆଇ, ଓସ୍ତାଦ୍ ଗୋଟିଏ ହଲପ୍ କରାଇ ନେଇଛନ୍ତି, ବାବୁଜି !'

'କି ହଲପ୍ ?'

'ଚିନାବାଦାମ୍ ବିକିବୁନି · ·ଯଦି ବିକୁ କେତେବେଳେ, ତେବେ ଅଛଡା ଆଦୌ ନୁହେଁ ।'

'କାହିଁକି ?'

'ସେ-କଥା ଓସ୍ତାଦ୍‌କୁ ମାଲୁମ୍ · · ·ତେବେ...'

'ତେବେ ?'

'ମୋଟିଆ-ଭାଇ ଜାଣେ କିଛି କିଛି'

'ପଚାରିଲିନି ?'

'ଯଦି ବିଶୁଆସର କଥା ହୋଇଥାଏ, ତେବେ ମୁଁ ତା'ଙ୍କୁ ଅଣବିଶ୍ୱାସୀ କରାଇବି ସିନା ?'

ଏ' ନାଚ-କଥାର ସାର ସଂଗ୍ରହ କରି ତା'ଙ୍କୁ ପ୍ରଶଂସା କରିବାର କିମ୍ବା ମୋଟିଆ ଆସିବାଯାଏ ଅପେକ୍ଷାକରି ତା'ର ବିଶ୍ୱସ୍ତତା ପରୀକ୍ଷା କରିବାର ଅବସର ମୋ'ର ଆଦୌ ନଥିଲା ··· କାରଣ, ଅଛଡ଼ା ଚିନାବାଦାମ ବିକିବନି—ଏହାର ସାରତତ୍ତ୍ୱ ଉଦ୍ଧାର କରିବି, ଏଥିପାଇଁ

ସେତେବେଳେ ମଗଜର ଦଧି କୁମ୍ଭକୁ ମୁଁ ସାଗର ମନ୍ଥନରୁ ଅଧିକ ମନ୍ଥିବାରେ ଲାଗିଯାଇଥାଏ ··· ହେଲେ, ତତ୍ତ୍ୱ ଜଙ୍ଘା'ର ଦୂରେ ଥାଉ, କେବଳ ଗଳଦ୍‌ଘର୍ମହିଁ ସାର ହେଲା ... ତଥାପି ନିରସ୍ତ ହେଲି ନାହିଁ, ସାମ୍ବାଦିକର ଭୂମିକା ଗ୍ରହଣ କଲି, କୂଟ ନୈତିକ ଶୈଲରେ ପ୍ରଶ୍ନ କଲି—

'ଅଚ୍ଛା ଚଣାବାଲା ବର୍ତ୍ତିମାନ କେଉଁଠି ?'

'ଓଡ଼ିଶାରେ ··· ବଚସ୍ଥ ଥକ୍କାମରା ହଡ଼ା ପରି ପଡ଼ି ରହି ଧକେଇ ହେଉଛି ବାବୁଜୀ ।'

'ସତେ !··· କାହିଁକି ଯେ ?'

'କଲି କର୍ମ !··· କାଲି ଯଉଁ ପାଗ, ଝଡ ବରଷା, ଡାହାଣୀ ଚିରକୁଣୀଙ୍କ ବାହାରବେଳା ପଦାକୁ, ଯେବେ ବାପୁଡ଼ା ସେଇଥି ଭିତରେ ହନ୍ତ୍ର ବୁଢ଼ା, ଘଡ ତମାମ୍ ଖେଦ ବୁଲୁଛି ବାଲିଗଞ୍ଜି ଗୋଠାକ ।'

'କାରଣ ?'

'ବାବୁଜୀ !··· ସେ-ଦିନ କଥା ଖିଆଲ ଅଛି ?'

'କଉଁଦିନ କଥା ଯେ ?'

'ସେଇ ଯଉଁଦ୍ଦିନ ତୁମ ସଙ୍ଗେ ମୋର ପହିଲ ମୁଲାକାତ୍...'

'ଓ ... ହଁ, ହଁ ... ଓସ୍ତାଦ୍ ଯଉଁଦିନ ବାମ୍ବାବାଲା ପର ଦୋକାନଟା ଉଛ୍‌ନଛ୍ କରିଦେଇ ପଳାଇଗଲା, କହୁଥିଲ...'

'ଠିକ୍ ସମୟରେ ଆଣିଛନ୍ତି ... କାହିଁକି ପଳାଇଗଲା ଜାଣନ୍ତି, ଜାବୁଜି ?'

ମୁଁ ଅନାଗ୍ରହ ଦେଖାଇଲି ଭଳି ହୋଇ କହିଲି—

'ମୁଁ ଜାଣିବି କେମିତି ?'

ଏ' ଛଳନା କାମ ଦେଲା, ସେ ଅତି ଆଗ୍ରହରେ ମୋ' ପାଖକୁ ଲାଗିଆସିଲା, ଆଉ କଥାଟିଏ ଅପଣାଇନକୁ କହୁଚି, ଏହି ଭାବରେ କହିଲା—

'ସେଦିନ ଗୋଟିଏ ଗହକୀ ଆସିଥିଲା, ତା'ର ଫେର୍-ଚମରର ...ଚର୍ମାଟିଏ... ଖାନ୍‌ଦାନୀ... ତା'କୁ ସେ ଡାକୁଥିଲା 'ଖୋକା' ...ଆଉ ସେଇ ଖୋକା ଡାକୁଥିଲା ତାକୁ 'ଘୁଙ୍ଗୁରଦାନା' ...'

''ଭାରି ମଜାଦାର... !'

'ବହୁତ ଦିନ୍ ଗୁଜ୍‌ରିଗଲା ...କା' ସଙ୍ଗେ କା'ର ମୁଲାକାତ୍ ନାହିଁ... ଦଇବାତ୍ ସେଇ ଦିନ ଭେଟାଭେଟି ... ମନେ ପଡିଗଲା ଯେ ଯାହାର ଗଲାଦିନର କଥା...'

'ତା'ତ ପଡ଼ିବ...ହଁ, ଖୋକାତ ଆଉ ଠିକ ଖୋକା ନ ଥିବ ?'

ସେଇଥିପାଇଁ, ଅଇଛଡ଼ିକା ଶକଡ଼୍,ଭୂଅଷୁଣୀ... ବାବଙ୍କର ଘର ବୋହୂ...ତାର ବି ଖୋକାଟିଏ ହୋଇଛି !...ସେଇ ପିଲାଟିର ଜନମ ଦିନ ଥିଲା କାଲି...ଭଗ୍ନି ଶରଧାରେ ସେଦିନ ନିମନ୍ତ୍ରଣ କରି ଯାଇଥିଲା ମା-ଖୋକା ... ସେଇଥିପାଇଁ 'ଗାଁଓ'ରୁ ଦୌଡ଼ି ଆସିଥିଲା ଓସ୍ତାଦ୍ ପାଣି ପବନ ନମାନି ;...

'ଓ, ତା'ହେଲେ ସେଦିନ ସେମିତ କାହଲା ବାଉଲା ହୋଇ ପଳାଇଗଲା, 'ଗାଁଓ' କୁ ଯିବ ବୋଲି, ନା ?'

'ଆଉ ?'

'ହେଲେ, ଗାଁଓକୁ ଯିବାର ମତ୍‌ଲବ ...'

'ଅଚ୍ଛାକଥା ... ଖୋକା କଉଁ ଅଲ୍‌ଅଲ ଅଙ୍ଗେ ଦିନିଆ ଅଲିକୁ ଜିଦ୍ ଧରିଥିବ, ଯା' ସହିବା ଯୋଗାରେ ସପନ ... ବଡ଼ଲୋକ ଖିଆଲ୍‌ତ...ନ ଯାଇ ଗୁରା କ'ଣ...'

'ତା' ସତ... ମଝିରେ ବା କେଇଟା ଦିନ...ତା'ପର ...'

'ବଡ଼ଲୋକ ଘରେ ମଉଚ୍ଛବ...ବଡ଼ବଡ଼ିଆଙ୍କୁ ନେଇ କାରବାର ...ହେଇଥିପାଇଁ ଖୋକା ବେଳସୁଁ ହୁସିଆର ଥାଇ ନିଜର ଖଣ୍ଡେ ସ୍ନାକ୍କା–ଠିକଣା ଓସ୍ତାଦ୍‌କୁ ଦେଇ ଯାଇଥିଲା ... ସେଇଟା ସେ

କୁଆଡେ ଗଲେଇ ପକେଇଥିଲି··ଠିକଣା ନ ପାଇ କାଲି ବାଲିଗଞ୍ଜି ଗୋଟାକ ଭୁଣ୍ଡି ହଇଗଣ...କଲିକତା ସହର ··· ନାଁ, ନମ୍ବର ନ କହିଲେ, କାଏବା ପତା ବତେଇ ଦବ···କେତେ ବାରନ୍ଦର, କେତେ ଖୋକା କ'ଣ ନାହାନ୍ତି ସେ ମହଲରେ ?···'

'ତା' ହେଲେତ ସେ ଘର ନ ପାଇ ଫେରି ଥିବ ?

'କ'ଣ ? ଫେରିବାଲି ଯିଏ ଥିଲି ହନେ, ସେ ସହଜେ ହଟିବ, ଠାବ ନ କରି ଫେରିବ? ···ତେ' ମହଲ କୋଠା ବୋଲି ଶୁଣିଥିଲି··· ଠାଏ ପାଇଲି ··· ବଡ଼ ବଡ଼ କୋଠିରେ ନିମିନ୍ତ ପରବ ହେଲେ, ଫାଟକର ଦୁଇକଡେ ଯେମିତ ମାଲ ମାଲ ମଠର ଠିଆ ହୁଏ ଧାଡ଼ି ବନ୍ଧ ହୋଇ, ସେମିତ ଦେଖିଲି ··· ସେଇ ତା' ଖୋକାର କୋଠି ଉପରେଇ ନେଲି···'ଖୋକା, ଖୋକା' ବୋଲି ଖୁବ୍ ତାନେ ଡୁହାଇ ଡୁହାଇ ଚଲେଇବାକୁ ଲଗିଲି ··· ହତା ଭିତରେ ପଶିବାକୁ ତିଆର ହେଲି··ଫାଟକ ଜଗୁଆଳିମାନେ 'ନିକଲୋ, ନିକଲୋ' ବୋଲି ଦଣ୍ଡା ଉଁଚେଇଲେ ···ତା'ର ବିଗଡ଼ି ଗଡିଗଲି, ବଳେ ପଶି ବଳି ବସିବାକୁ ଗଲି, ତା'ପର ଯା'ଘଟେ, କିର୍ଘାଡିଆ ପାହାର ପଡ଼ିଲା ତାଳୁରେ...'

'ତା'ପର···'

'ବାଟ୍ ପୁଲିଶର ଜିମ୍ମା···ପୁଲିଶର ଦାଉ ··· ଉଠ୍‌କଟ ପଗଲା ସମଜ, ଚୁଲି ବାଡ଼ିର ଭିଡ଼ ···ଏକାବେଳେ ବାଲିଗଞ୍ଜର ଫାଦା ପାର ···ବଡ଼ଲୋକ ସଙ୍ଗେ ଭାବଦୋସ୍ତି କ ଗରିବକୁ ପୋଷାଏ, ବାବୁଜୀ ?'

'ସର୍ ବାଭ୍ !'

'ଏତେ ସର ହୋଇ, ମଥାରେ ପଟି ବାନ୍ଧି, ଅଣ୍ଟା ପିଠିରେ ଉଷୁମ ଢେଲ ମାଲିସ ହୋଇ, ଓସ୍ତାଭ୍‌ର କ'ଣ ଚେତା ପଶିଲାଣି ?···'

'ମାନେ···'

'ଓସ୍ତାଭ୍‌ର ଟ୍ରଙ୍କ୍, ସେ ଆଜ ଦୋକାନରେ ବସିବ··· 'ଖୋକା ଆସିବ', 'ଖୋକା ଆସିବ',—ଏଇ ସବୁ ଖାଲି ଘୋଷି ହେଉଛି···ହଁ, ଭାଲୁଜ, ଆଜ ଯଦି ଦେଖା ନହୁଏ ତା'ଖୋକା ସଙ୍ଗେ, ତେବେ ଇଜନମରେ ଆଉ ଦେଖା ହେବନି···'

'କାହିଁକ ?'

'ସେ ଆଜ ଗୁଡ଼ଗାଡ଼ିରେ ଗାଁଓକୁ ଗୁଳିଯିବ ··· ଗାଁଓକା ଆଦ୍‌ମିଙ୍କୁ ସେ ଜବାନ୍ ଦେଇ ଆସିଛି···ମୋଟିଆ-ଭଯ୍ୟା ଏଇ କଥା କହୁ, ଟିକଟ୍ କାଟିବାକୁ ଗଲା, ଆଉ ମୋତେ ସହଳ ସହଳ ଦୋକାନ ଲଗେଇବାକୁ ବରାଦ୍ କଲା···'

ଏତକ କହୁ ସେ ଅନ୍ଧାର ଦେଖିଲା ବାଟ ଖୋଜିବାକୁ ··· ମୋ'ର ବି ସେତକବେଳେ ହୋସ୍ ପଶିଲା ଗଙ୍ଗା-କଥା ପଗ୍ଭରିବାକୁ ···ମୁଁ ଭୂମିକା ଭୁଲି, ବାଟ ଓଗାଳି, ଉଷୁକ ଭରା କଣ୍ଠରେ ପଗ୍ଭରିଲି—

'ସାଙ୍ଗରେ ଗୋଟେ ଝିଅଟିଏ ଅଛନ୍ତି ? ···କାଲି ତାକୁ ବାଲିଗଞ୍ଜ ନେଇ ଦକ୍ଷିଣଗଞ୍ଜ ହୋଇ ନଥିଲା ତ ?···ପିଲାଟି ଭଲ ଅଛିତ ?'

ସେ ଅବାକ୍‌ବା ହୋଇ ଗଲା, ମୋ' କଥାକୁ ନୁହେଁ, ମୋର ପ୍ରଶ୍ନ କଥାକୁ, ତା'ପର କହିଲା—

'ଝିଅ ?'

'ଗଙ୍ଗା !...ତା'ର ନାତୁଣୀ !!...'

ନାସ୍ତିସୂଚକ ମଥା ହଲାଇଲି ବହେ, ତା'ପର ହଠାତ୍ ମୁହଁ ବିକଳେଇ, ଭ୍ରୂକୁଞ୍ଚନ କରି କହିଲା—

'ହୁଁ...ଗଙ୍ଗା, ଗଙ୍ଗା ବୋଲି ଡକା ପାଉ ବେଳେବେଳେ ଭାରି ବିକଳ ହେଉଥିଲା ଓସ୍ତାଦ୍ !...ଗଙ୍ଗା ତା'ର ନାତୁଣୀ ? ...ତା'ରି ପାଇଁ ତା'ହେଲେ ଗାଁକୁ ଯିବାକୁ ବଛନ୍ତି ?...ସମଜଗିଆ ... ...ବାବୁଜୀ, ମାଫ୍ କରିବେ, ମୁଁ ଆଗ ବଢୁଚି...ଦୋକାନ ଛାଡ଼ିବାକୁ ହେବ...ନୂଆଲୋକ...'

'ଜରୁର...ଜରୁର...'

ମୋଟିଆ ଚାଲିଗଲା । ...ଆମେ ଅବଶ୍ୟ ବାଟ ଚାଲି ଚାଲି କଥା-ଭାଷା ହେଉଥିଲୁଁ । ...ଗୋଲଘାଟି ଆଉ ବେଶୀ ଦୂର ନଥାଏ । ...ମୁଁ ବ୍ୟସ୍ତ ହେଲନି...ତା'ର ଅସଲ କାରଣ, ଚଣା-ବାଲା ଗଙ୍ଗାକୁ ସଙ୍ଗରେ ଆଣିନି ବୋଲି. ମନ ଉଚ୍ଛ୍ୱାସ ବୋଧ କରୁଥାଏଁ ... କମ ହାଲପଠା ହୋଇଥା'ନ୍ତା ଚଣାବାଲା ସାଙ୍ଗରେ ଆଣିଥିଲେ ! ...ଆଜ ଝିଅଟାର କି ଦଶା ଯେ ହୋଇଥା'ନ୍ତା !! ...

ଏଥିପାଇଁ ଈଶ୍ୱରଙ୍କୁ ଧନ୍ୟବାଦ ନ ଦେଇ ରହି ପାରିଲି ନାହିଁ, ଏ' କଥା ଅବଶ୍ୟ ମାନିବ ।

ଯାହାହେଉ, ସେହି ଚିନ୍ତାର ସୂତ୍ରଧରି ବାଟ ଗୁଳ୍‌ଗୁଳ୍ ପୁଣି ଲେଉଟିଗଲି ମୂଳ ପ୍ରଶ୍ନକୁ—ଚଣ୍ଡାଳିକାର ମର୍ମ-ବ୍ୟଥା-ପ୍ରସଙ୍ଗକୁ ··· ଗଙ୍ଗାକୁ ସାଙ୍ଗରେ ଆଣିନ, ଏଥିରୁ ବେଶ ବୁଝାଯାଏ ଯେ, 'ଖୋକା' ପ୍ରତି ତା'ର ଯେତିକ ଟାଣ, ଗଙ୍ଗା ପ୍ରତି ମଧ୍ୟ ସେତିକ ଟାଣ ରହୁଛି ··· ସୁତରାଂ ତା'ର ସେହି ମର୍ମ—ବ୍ୟଥାର ଭାର-କେନ୍ଦ୍ର, ଚେତନ ମନର ଗଙ୍ଗା, କି ଅବଚେତନମନର ଖୋକା—ଏହାହିଁ ସମସ୍ୟା ··· ଅଚେତନ ମନର ଜନ୍ମମାଟି ବୋଲି ଯାହା ଉଲ୍ଲେଖ କରିଥିଲେ କ୍ୱାଇଁ, ତାହା ଅନ୍ତତଃ ଆଦୌ ଗ୍ରହଣ-ଯୋଗ୍ୟ ନୁହେଁ । ···ବର୍ତ୍ତମାନ ଯଦିଓ ଦ୍ୱି-ଘାତ-ସମୀକରଣର ଯଥା ସମାଧାନ ମୂଳରେ ଦୁଇଟି ବୀଜ ଗୋଟିଏ 'ଗଙ୍ଗା', ଅନ୍ୟଟି 'ଖୋକା' ବୋଲି ଧରିବ୍ୟ ତଥାପି କେଉଁ ରାଶିଟି ଉପରେ ଗୁରୁତ୍ୱ ଦେବାକୁ ହେବ, ଏହାହିଁ ଶେଷ ପ୍ରଶ୍ନ । ଏହି ପ୍ରଶ୍ନର ନିରପେକ୍ଷ ମୀମାଂସା କରିବାକୁ ହେଲେ, ଚଣ୍ଡାଳିକାର ଅସନ୍ତ କାର୍ଯ୍ୟକଳାପ ପ୍ରତି ନିର୍ଭୁଲ ଦୃଷ୍ଟି ଦେବାକୁହିଁ ପଡ଼ିବ ।

ଏହି ସିଦ୍ଧାନ୍ତରେ ପହଞ୍ଚିଲା ବେଳକୁ, ମୁଁ ଗୋଲଦୀଘିରେ ମଧ୍ୟ ପହଞ୍ଚି ଯାଇଥାଏ ।

ଉକୁ ସ୍ଥାନର ନିକଟବର୍ତ୍ତୀ ହୋଇ ଅନାଇ ଦେଖେଁ, ଦୋକାନ ଛଡ଼ା ସବୁଛି ।

# ଉଦ୍‌ଯାପନ

ମୁଁ ମୋ'ର ନିୟମିତ ବେଞ୍ଚ ଓ ଆସନ ପରିଗ୍ରହ କଲି ···; ନିଶ୍ଚିନ୍ତ ମନରେ ଚଣାବାଲାର ଆଗମନକୁ ପ୍ରତୀକ୍ଷା କରି ରହିଲି । ···କିଛିକ୍ଷଣ ପରେ ଫାଁକା ଲାଗିଲା···ଅବସନ୍ନତା ବୋଧକଲି ।... ତେଣୁ କ୍ଲାନ୍ତି-ଅପନୋଦନ ଓ ଚିତ୍ତ-ବିନୋଦନ ଲୋଡ଼ି, ଚଣାବାଲାର ଦୋକାନ ପ୍ରତି ସନ୍ଦିଗ୍ଧ ଧ୍ୟାନ ଦେଲି, ତନ୍ନ ତନ୍ନ କରି ତା'ର ସାଜ-ସରଞ୍ଜାମ ଓ ମାଲପତ୍ର ତନଖି ଦେଖିବାକୁ ଲାଗିଲି—ଅବଶ୍ୟ ନିକଟକୁ ଉଠିଯାଇ ନୁହେଁ, ଉଦ୍‌ଗତ ନୟନରେ ବସିବା ସ୍ଥାନରୁ ଅନ୍ତର୍ଭେଦୀ ଦୃଷ୍ଟିକ୍ଷେପ କରି ।

ସଜାସଜିରେ ବହୁତ ଫରକ ଜଣାଗଲା ।··· ଜଣା ଯିବାର କଥା ।··· ମୁଁ ଆଗର ସଜାସଜି ଦେଖିଛି, ସେଥିପାଇଁ ମୋ'ର ଏହା ବ୍ୟକ୍ତିଗତ ଅନୁଭୂତି ।··· ନୂଆକରି କେହି ଦେଖିଲେ କିଛି ବାରି ପାରିବ ନାହିଁ, ବରଂ ପସନ୍ଦ କରିବ ।··· ଆଇନ ଷ୍ଟାଇନଙ୍କ ସୂତ୍ର ମନେ ପଡ଼ିଗଲା, ମୁଁ ମନକୁ ମନ କହିଲି— 'ଆପେକ୍ଷିକତାହିଁ ଭେଦାଭେଦର ମୂଳ ତତ୍ତ୍ୱ—ବସ୍ତୁ ଜଗତରେ ଯେମିତି, ମନୋଜଗତରେ ମଧ୍ୟ ସେମିତି ।'

ବିଶେଷଭାବରେ ଯେଉଁ ବସ୍ତୁଟି ମୋ'ର ଗୋଇନ୍ଦା ଦୃଷ୍ଟି ଆକର୍ଷଣ କଲା ତାହା ହେଉଛି ଗୋଟିଏ ବେତା, ବା ବେତର ଝୁଡ଼ି। ସେହି ଝୁଡ଼ିରେ ଅଛଡ଼ା ଚିନାବାଦାମର କାଣ୍ଡି ପିରାମିଡ୍ ପରି ଗୋଜିଆ ହୋଇ ଝୁଡ଼ିର ଫନ୍ଦା ଛୁଇଁ ଉଠିଥାଏ।...ସେହି ଅଧେୟ ନାହିଁ କି ସେହି ଆଧାର ନାହିଁ।...ଚଣା-ଦୋକାନର ଏହା ଗୋଟିଏ ପ୍ରଧାନ ଓ ଅପରିହାର୍ଯ୍ୟ ଅଙ୍ଗବିଶେଷ ... ବିଶେଷତଃ 'ଚଣାବାଲା'ର ଚଣା-ଦୋକାନର।...ଅଥଚ ସେହି ଆଙ୍ଗିକ ସୌନ୍ଦର୍ଯ୍ୟର ଅଭାବ!...ଏହି ବୈକଲ୍ୟ-ଦର୍ଶନ ହୁଏତ ଅଭ୍ୟାସ-ଗୁଣରୁ ମୋ'ର ପୀଡ଼ିତ ଆଖିକୁ ଦିନେ ଆରେଇ ଯାଇ ପାରିବ, ଓ ନୟନାଭିରାମ ହୋଇ ଠିଆହେବ, କିନ୍ତୁ ମନର ବିକାର ଓ ବିକଳତାକୁ ମୁଁ ଆଦୌ ଆଶ୍ୱାସନା ଦେଇ ପାରିଲି ନାହିଁ—ଠିକ୍ ଯେମିତି ମ୍ୟାକ୍‌ମୋହନ ଲାଇନର ଐତିହାସିକ ବ୍ୟତିକ୍ରମ ଐତିହ୍ୟପୁଷ୍ଟ ପଞ୍ଚଶୀଳ ଆଦର୍ଶକୁ ଦେଇ ପାରୁନାହିଁ।

ଅଛଡ଼ା ଚିନାବାଦାମ ହେଲା 'ଚଣାବାଲା'ର ଅସଲ ପଣ୍ୟ, ଆଉ ସେହି ବେତାଟି ସେହି ଉପକରଣ ସାଦରେ ଧାରଣ କରିଥାଏ ବୋଲି ତୈଜସ ପତ୍ର ମଧ୍ୟରେ ଅଗ୍ରଗଣ୍ୟ ନ ହେଉ ପଛକେ, 'ଚଣାବାଲା'ର ପ୍ରାଣ-ସର୍ବସ୍ୱ କହିଲେ, ଅତ୍ୟୁକ୍ତି ହେବ ନାହିଁ... କାରଣ ଶିଶୁଟିଏ ଦେଖିଲେ, ତାର ମନ ଭରିଯାଏ, ପ୍ରାଣ ନାଚିଉଠେ, ସେଥିପାଇଁ ଯେତେ ଗହକର ଗହଳି ଥିଲେ ମଧ୍ୟ, ଶିଶୁ ହାତରେ ସେହି ତୈଜସରୁ (ବେତାରୁ) ସେହି ଉପକରଣ (ଚିନାବାଦାମ) ଧରାଇ ନ ଦେବା ଯାଏ, ତା'ର ତର ସହେନାହିଁ, କି ସେ ସ୍ୱସ୍ତି ଅନୁଭବ କରେନାହିଁ। ...ଆଜି ସେହି ଦୋକାନ ରହିଛି, ଦୋକାନଟି ହସ୍ତାନ୍ତର କରି ଦେଇଥିଲେ ମଧ୍ୟ, ଆଜିବି ସକାଳେ ଅନ୍ତତଃ ସେ

ମାଲିକ ହୋଇ ବସିବ ଦୋକାନରେ,—ଏହି ସର୍ତ୍ତ ସେ କରାଇ ନେଇଛି, ଅଥଚ ଦୋକାନୀର ସେହି ଜୀବନାଧିକ ଚିଜପତ୍ର ନାହିଁ କି ସେହି ଉପକରଣ ନାହିଁ ! ···ଅଧିକନ୍ତୁ ଆଶ୍ଚର୍ଯ୍ୟର ବିଷୟ ଯେ, 'ଚଣାବାଲ' ଏ' ବିଷୟରେ ନିଜକୁ କେବଳ ନିୟନ୍ତ୍ରଣ କରିନାହିଁ, ଉପରନ୍ତୁ ଗ୍ରହୀତାମାନଙ୍କୁ କଠୋର ଭାବରେ ନାକିଦ୍‌କଲା ପରି ଏହା ନିଷେଧ କରି ଦେଇଛି—ଏପରି କ'ଣ ନିୟମ ଖୁଆଇ, କାଳୀ ମାଇଜୀଙ୍କ ଧଣ୍ଡା ଛୁଆଁଇ ··· !

ହଁ, ସେ ସପ୍ତାହକାଳ ହେବ ଏ'ଠାରେ ଅନୁପସ୍ଥିତ ଥିଲା··· କେତେ ଶିଶୁ ନିତି ନିତି ଆସିଥିବେ, କେତେବେଳୁ ବା ଦୂରରୁ ଠିଆହୋଇ ଅପେକ୍ଷା କରିଥିବେ, 'ଚଣାବାଲ'କୁ ନ ଦେଖି ଭଗ୍ନ-ମନୋରଥ ହୋଇ ଫେରି ଯାଇଥିବେ । ଆଜି ଯେତେବେଳେ ସେମାନେ ଚଣାବାଲକୁ ଦେଖିବେ, ଅଧିକନ୍ତୁ ଆସନରେ ଉପବିଷ୍ଟ ଥିବାର ଦର୍ଶନ କରିବେ, ସେତେବେଳେ ସେମାନେ ସପ୍ତଯୁଗର ବିରହ-ବ୍ୟବଧାନ ଅତିକ୍ରମ କଲଭଳି ପ୍ରାଣଭରା ଆବେଗରେ ଧାଇଁ ଆସିବେ ନାହିଁ ନା ? ରୁଣ୍ଡ ହୋଇଯିବେ ନାହିଁ ନା ତା'ର ଚଉପଟେ ଘେରି ? କଅଁଳ କଅଁଳ ହାତପାପୁଲିମାନ ପତାଇବେ ନାହିଁ ନା ତା'ର ଆଖିପତାକୁ ଚିଦାଇ ···'ଚଣାବାଲ' ନିଷ୍ଠୁର ପାଲଟି ପ୍ରତ୍ୟାଖ୍ୟାନ କରି ପାରିବ ତ ? ···ଧରି, ଶିଶୁ କେହି ନ ଆସୁ, ...ଯେଉଁ 'ଖୋକା' ଲାଗି ତା'ର ଏହି ଅଭିନୟ, ସେହି 'ଖୋକା' ତ ତା'ର ଘନୀଭୂତ ଶିଶୁସ୍ମୃତି··· ତା'ର ସନ୍ତୋଷଲାଗି ଅନ୍ତତଃ ଏତକ ସେ କରି ପାରନ୍ତା !

ତା' ସେ କରିନାହିଁ, ସୁତରାଂ ଏ ଆତ୍ମ-ନିର୍ଯ୍ୟାତନାର କାରଣ କ'ଣ ?

ଗଙ୍ଗା ବି ତ ଶିଶୁ, ସେ ମଧ୍ୟ ଶିଶୁର ଏହି ପ୍ରିୟମଣୋହି ନିଷ୍ଟୟୁ

ପସନ୍ଦ କରୁଥିବ···'ଖୋକା' ତା'ର ଶିଶୁଦିନର ସ୍ନେହଶାଳ୍‌ଚଣା-ଲାଳସୀ, ସେଥିରେ ବ ତ ଏହି ବାଦାମ ଲାଗୁଥିବ···ତେବେ ଗୋଟାଏ କଥା ଅଲୋଚ୍ୟ, 'ଅଛଡ଼ା' ଉପରେ ଗୁରୁତ୍ୱ ଅରୋପ କରନ୍ତି ଚଣାବାଲ··· 'ଅଛଡ଼ା-ଚନାବାଦାମ ବକବକ'—ଏହି କଥା ସଫା ସଫା ବତାଇ, ଗ୍ରହିତାମାନଙ୍କ ଠାରୁ ଦସ୍ତୁର ମାଫିକ୍ ଦସ୍ତାବିଜ୍ କରାଇ ନେଇଛନ୍ତି (ପଦ୍ଧତି ମୌଖିକ ଭାବରେ) ···ଯାର ତାତ୍ପର୍ଯ୍ୟ ?

ବାଦାମର ମଞ୍ଜି ନୁହେଁ, ବାଦାମର ଚୋପା ସହିତ ନିଶ୍ଚୟ ଗୋଟାଏ ରହସ୍ୟ ଜଡ଼ିତ ରହିଛି !···କି ସେ ରହସ୍ୟ—ଯାହା ଚଣାବାଲ ଅବ୍ୟକ୍ତ ରଖି, ଅମ୍ୱ-ନିର୍ଯ୍ୟାତନ ଓ ବ୍ୟକ୍ତିଗତ ନିର୍ମମତାକୁ ବରଣ କରି ନେଇଛନ୍ତି ? ···ନିଶ୍ଚୟ ଗୂଢ଼ ରହସ୍ୟ···କୌଣସି ମର୍ମାନ୍ତିକ ଘଟଣା···ସଦ୍ୟ-ଘଟିତ···ମୋଟିଆ ଚଣାବାଲର ଦେଶରୁ ଫେରିଆସିବାର ପରବର୍ତ୍ତୀ ଅବଶ୍ୟ ! ···ମୋଟିଆ କହିଛି ଶୁଣିଛି ବୋଲି ତା'ର ସରକ୍‌ଦାର କହୁଥିଲା···ସୁତରାଂ ମୁଁ ମୋଟିଆର ଉଲ୍ଲାସରେ ଅତପ୍ତ ହୋଇ ପଡ଼ିଲି !···

ମୋଟିଆ ଯଦି ନ କହେ ?···ଅବଶ୍ୟ କହିବ...ସେ ମୋତେ ଅତ ଆପଣାର ବୋଲି ଜାଣିକରେ...ଯେତେ ଗୋପନୀୟ ବିଷୟ ହେଉପଛକେ ସେ ମୋତେ ନିଃସଙ୍କୋଚରେ ନିବେଦନ କରିବ··· ଚଣାବାଲର ଅନୁଷ୍ଠାନର ନିରାପତ୍ତା ଭାର ମୋ'ର ଉପରେ ନ୍ୟସ୍ତକରି ସେ ନିଶ୍ଚିନ୍ତ ମନରେ ଚଣାବାଲର ଦେଶକୁ ଯାତ୍ରା କରି-ଥିଲା ... ମୋ'ର ଏହି ଉପଚକୀର୍ଷାର ମାନ ସେ ଅବଶ୍ୟ ମାନିବ ! —ଏହିପରି ଅମ୍ୱ-ବିଶ୍ୱାସର ଅଟୋପ ପ୍ରକଟ କରୁଥିଲି ବେଳେ, ମୋଟିଆ ଅସ୍ତବ୍ୟସ୍ତ ହୋଇ ସମ୍ମୁଖ ଫାଟକ ବାଟେ ପ୍ରବେଶ

କରିବାର ଦେଖିଲି ।···ମୁଁ ହନ୍ତସନ୍ତ ହୋଇ ତାକୁ ଭେଟିବାର ଉପକ୍ରମ କଲି ।···ଇତି ମଧ୍ୟରେ ସେ ଚଣାବାଲା ନ ଆସିବାର ଦେଖି; ଦୋକାନର ଓଲମ୍ ଝଲେମ୍‌କୁ ନିପୁଣ ହସ୍ତରେ ମୁହୂର୍ତ୍ତିକେ ସଜାଡ଼ି ଦେଇ, ସହକର୍ମୀକୁ କ'ଣ ନିର୍ଦ୍ଦେଶ ଦେଇ, ଆସିଲା ବାହରେ ଲେଉଟି ଯାଉଥିଲା ତ୍ୱରନ୍ତ ପଦକ୍ଷେପରେ···ମୁଁ ଠିଆ ହୋଇଗଲି ବାଟ ଓଗାଳି, ତା' ସମ୍ମୁଖରେ···ମୋ ଉପରେ ତା'ର ଆଖି ପଡ଼ିଲା··· ସେ ଅଟକିଗଲା ବେକ୍‌କଷା ମଟର ପରି···ସଙ୍ଗେ ସଙ୍ଗେ ଦମ୍ ଅଟକିଲା କଣ୍ଠରେ ସମ୍ବୋଧନ କଲା—

'ବାବୁଜି !'

ମୁଁ କୌଣସି ଭଣିତା ନ କରି, ଭକ୍ କରି ପଚାରିଲି—

'ଅଛଡ଼ା-ଚନାବାଦାମର ଠୋକେଇ ଦେଖୁନି ଦୋକାନରେ ?··· କଥା କ'ଣ ? ...ଅଦ୍ଭୁତିଆ ଶୁଣିଲି...'

ସେ ଆଉ କୁହାଇବାକୁ ନଦେଇ, ଠକ୍ କରି କହିଲା—

'ଠିକ୍, ଶୁଣିଛନ୍ତି···ଓସ୍ତାଦର ମନା...!'

ମୁଁ ଚରମ ଉତ୍ତେଜନାରେ ପଚାରିଲି—

'କାହିଁକି ?···'

'ବାବୁଜି ...'

'ବାବୁଜି...'

ରହି ଗଲି କେମିତି ନାଟ୍ଟକୀୟ କଣ୍ଠରେ ଏତିକି କହି...ମୁଁ ଏଥର ଅତୁରିଅ ଓ ହତାଶିଅ ହୋଇ ପଚ୍ଚାରିଲି—

'କାହିଁକି ?...କାହିଁକି ?...'

ଏହିଭଳି ଭୂୟୋଭୂୟଃ ପ୍ରଶ୍ନର ଧକ୍କାରେ ପଣ୍ଡିତ ସେ ଉତ୍ତର ଦେବାକୁ ବାଧ୍ୟ ହେଲି, ତଥାପିକି ଗୋଟାଏ ଧୋକାର ବାଧାରେ ଢୋକ ଚିପି, କହିଲି ଏହିପରି—

'ନା, ବାବୁଜି··· ମୁଁ ଓସ୍ତାଡକୁ ପଚ୍ଚାରି ଆଗେ ମୁକାବିଲା କରି ନାଏ...ଶୁଣା କଥା କେତେ ସତ କେତେ ମିଛ ଥାଏ···ମୁଁ ଠିକଠ କାଠି ଯାଇଥିଲି···ଓସ୍ତାଡର ଗାଁ-ବାଲା ସାଥିରେ ହଠାତ୍ ମୁଲକାତ୍ ···ସେ-ଦିନ ଝଡ, ତୋଫାନରେ ଆଡ଼-ଲାଇନ ଜଖମ ହୋଇଥିଲି ...କାଲିର ପାଣି ପବନରେ ବିଲ୍‌କୁଲ୍ ଭାଙ୍ଗି ଟୁକୁରି ଟୁକୁରି··· ରେଲ୍ ଚଳାଚଳ ବନ୍ଦ ···ମୁଁ ଅପ୍‌ଶୋଷ କରି ଚଣାବାଲାର ଗାଁଓକୁ ଜରୁର ଯିବା କଥା •ତା'କୁ କହିଲି...ଚଣା-ବାଲା ଗାଁ ଛାଡ଼ି ଏ'ଠି, ଏଇପରି କହିତ ସେ ଭାଇଙ୍କା...ଆହୁରି ମୋତେ ଯାହା କହିଲି··· ନା, ନା ମୁଁ ବିଶ୍ୱାସ କରି ପାରୁ ନାହିଁ···ମୁଁ ବିଶ୍ୱାସ···ହେଲେ, ସଖାଳେ ଅଣ୍ଟାପିଠି ମୋଡ଼ିଦେଲାବେଳେ ଚଣାବାଲି ଜର-ବାହଳାରେ ବକି ହେଉଥିଲି—'ମୋ'ର କେତେ ଗଙ୍ଗା···କେତେ ଖୋଙ୍କା···' ···ତେବେ, ତେବେ ତା'ର ମାନେ କ'ଣ ସେଇଥି ? ଯା' ଶୁଣିଲି —'

ମୁଁ ଉତ୍‌କଣ୍ଠାର ଏକଶେଷ କଣ୍ଠରେ ପଚ୍ଚାରିଲି —

'କ'ଣ, କ'ଣ ଶୁଣିଲ ?'

'ମୁଁ ଶୁଣାଇ ପାରିବିନି···ମୁଁ ଶୁଣାଇ···'

ଏହିସବୁ କହୁ କହୁ ମୋଟିଆ ଧୂମାଳ ବେଗରେ ଉଡ଼ି ଧୂଆଁ ହୋଇଗଲା···।

ସେତେବେଳକୁ ସତକୁ ସତ ଧୂମାଳଟାଏ ଉଠେଇ ମାଡ଼ି ଆସୁଥାଏ···ଆକାଶର ଖଣ୍ଡ ଖଣ୍ଡ ମେଘ ଗୁଡ଼ିକ ଜମି ଅଖଣ୍ଡ ପାଲଟୁଥାଏ ।

ଧୂମାଳରୁ ଆତ୍ମରକ୍ଷା ପାଇଁ ମୁଁ ଅବଶ୍ୟ ଉଦ୍ୟାନ ମଣ୍ଡପର ଆଶ୍ରୟ ନେଲି । ଧୂମାଳଟା ଯେମିତି ଅଚାନକ ମାଡ଼ି ଆସିଥିଲା, ସେମିତି ଅଚାନକ୍ ଉଡ଼ି ଚାଲିଗଲା, କିନ୍ତୁ ମୋ' ଭିତରେ ଧୂମାଳର ଆଲୋଡ଼ନ ଓ ପ୍ରକୋପ ବେଶ୍ ରହିଗଲା ।···ସେତିକି ନୁହେଁ, ତାହା ମୋଟିଆର ସେହି ବାରମ୍ବାର ଶେଷ ଉକ୍ତି 'ମୁଁ ଶୁଣାଇ ପାରିବିନି ··· ଶୁଣାଇ ···'କୁ କେନ୍ଦ୍ରକରି ଯେମିତି ଆବର୍ତ୍ତିତ ହେବାକୁ ଲାଗିଲା ଠିକ୍ ଖଣ୍ଡିଆ ଭୂତ ପରି, ଏହା ସ୍ପଷ୍ଟ ଅନୁଭବ କଲି ।

ଜନ ଗହଳଚହଳ ଯାହା ଟିକିଏ ଉଣା ଧରି ଆସିଥିଲା, ତାହା ପୁଣି ଘନେଇ ଉଠିଥାଏ···ଉଠା ଦୋକାନଗୁଡ଼ିକ ମଧ୍ୟ ଯଥା-ସ୍ଥିତି ପୁଣି ଲାଗି ଯାଇ ଥାଏ···ଚଣାବାଲାର ଦୋକାନକୁ ନଜର କରିବାକୁ ଗଲି, ଗଛ ପଛର ଉହାଡ଼ ଯୋଗୁଁ ଭଲ ଠଉରେଇ

ପାରିଲା ନାହିଁ···ଭଲେ, ଭଲେ ପାଦ ପକେଇ ସେହି ଅଗକୁ ମୁହାଁଇଁ ଗ୍ଲିଲବାକୁ ଆରମ୍ଭକଲା।···

'ମୋ'ର କେତେ ଗଙ୍ଗା···କେତେ ଖୋକା'—ଏହାର ଅର୍ଥ କ'ଣ ?—ଜର-ବକାର ଇନତ ପ୍ରଲାପ, ନା ଜୀବନର ବ୍ୟର୍ଥତା ଜନିତ ଆତ୍ମ-ପ୍ରକାଶ ···? ···ପ୍ରଲାପୋକ୍ତ ହେଲେ ମଧ୍ୟ, ତାହା ଯେ ମନୁର ବିଶେଷ କୌଣସି ନିଭୃତ ଚିନ୍ତାର ଅଭ୍ୟବକ୍ତ ଏହା ଦେଖାଯାଇ ଥାଏ।···ଏ କ୍ଷେତ୍ରରେ ସେହି ନିଦାନହିଁ ଲକ୍ଷଣୀୟ। ···କାରଣ ଗଙ୍ଗା ଓ ଖୋକା ଛଡ଼ା ତା' ଅନ୍ତରର ଅନ୍ତଃପୁରରେ ଅନ୍ୟ କାହାର ଅବସ୍ଥାନ ଅସମ୍ଭବ। ···ପ୍ରଲାପ ହେଲେ ମଧ୍ୟ ଏହା ସତ୍ୟାଳାପ···କିନ୍ତୁ 'ମୋ'ର କେତେ ଗଙ୍ଗା···କେତେ ଖୋକା' —ଏହିପରି ଉକ୍ତି ଯେ ସେହି ଦୁଇଟି ଶିଶୁକୁ ମାଧ୍ୟମ କରି ଗୋଟାଏ ବ୍ୟର୍ଥତାର ସୂଚନା, ଏଥିରେତ ସନ୍ଦେହ ନାହିଁ। ...ମୁଁ ଠିକ୍ଏ ଠିଆ ହୋଇଗଲି। ···ତା'ପର ମୃଦୁ ମୃଦୁ ହସି, ନିଜକୁ ନିଜେ କହିଲି—'ଗଙ୍ଗାକୁ ଝଡ଼ ତୋଫାନ ଯୋଗୁଁ ଆଣି ପାରିଲା ନାହିଁ, କି ଖୋକାକୁ ଝଡ ତୋଫାନ ଯୋଗୁଁ ନହେଲେ ମଧ୍ୟ, ଅଭିଜ୍ଞାନ-କାର୍ଡଟି ହଜିଇଥିବା ଫଳରେ ଦେଖି ପାରିଲା ନାହିଁ···ଏହା କ'ଣ କମ ପରିତାପର ବିଷୟ ଶିଶୁ-ପ୍ରାଣ ଚଣାବାଲା ପକ୍ଷେ ?···ଜୀବନର ବ୍ୟର୍ଥତା ଆଉ କାହାକୁ କହନ୍ତି ? ...ତା'ପର ବାଟେ ଗ୍ଲିଲି··· ସେହି ପରିପେକ୍ଷରେ ଚଣାବାଲାର ମର୍ମ-ବ୍ୟଥା ସଂକ୍ରାନ୍ତ ମୂଳ ପ୍ରଶ୍ନଟି ପୁଣି ଥରେ ବିଗ୍ଲର କଲି···ସମର୍ଥନ ଲାଭ କଲି··· ଚଣାବାଲାର ଏହି ବେଦନାଦାୟକ ପରିବେଶକୁ ଉପେକ୍ଷା କରି ମନେ ମନେ ତୃପ୍ତି ଲାଭ କଲି ଯେ ଗଙ୍ଗା ଓ ଖୋକାଛଡ଼ା ତୃତୀୟ କିଛି ତାର ମର୍ମବ୍ୟଥାର କାରଣ ହୋଇ ନପାରେ ; ତେବେ ଭାରତେନ୍ଦ୍ର

ଙ୍କାହାକୁ ଅବଲମ୍ବନ କରି, ଏଠୁ ବିଷୟରେ ରହିଗଲା ଦ୍ୱନ୍ଦ୍ୱ । ବରଂ ଅଭିଲାଷୀନରେ ଶିଶୁ ଦୁଇଟି ପ୍ରତି ଚଣାବାଲର ସେହି ଅଭିମାନସୁଲଭ ଆକ୍ଷେପ ମୋତେ ଅଧିକ ଆନ୍ଦୋଳିତ କରିବାକୁ ଲଗିଲା । ଏଥିରୁ ନିଷ୍କୃତିର ଏକମାତ୍ର ସୂତ୍ର ଅତିରିକ୍ତ ତଥ୍ୟ-ସଂଗ୍ରହ···ସେଥିପାଇଁ ଚଞ୍ଚଳ ପଦକ୍ଷେପରେ ଅବଶିଷ୍ଟ ପଥ ଅତିକ୍ରମ କଲି ଓ ଆସ୍ଥାନର ପୂର୍ବୋଭାଗରେ ଉପସ୍ଥିତ ହେଲି ।···

ଅଦୂରରେ ଥାଇ ଦେଖିଲି, ଚଣାବାଲା ସ୍ୱୟଂ ଯଥା-ଆସନରେ ବିରାଜମାନ । ···ପ୍ରଥମେ ଚିହ୍ନି ପାରିଲି ନାହିଁ...ବରଂ ପ୍ରେତ-ଛାୟା ଦେଖୁଚି ବୋଲି, ଛନକା-ଘାତରେ ଖୋଜେ ଦୁଇ ଖୋଜ ହଟି ଆସିଲି···ମୁଖର ଆକୃତି ରହିଚି, କିନ୍ତୁ ବିକୃତି ଦେଖି କେହି କହିବ ନାହିଁ ଯେ ଏ ସେହି ଚଣାବାଲା···ଜୀବନ୍ତ···ମଥାର ଖପୁରି ଗୋଟାଙ୍କ ପଟି ବନ୍ଧା ( କାଳିର ଘଟଣା ଯୋଗୁଁ, ସନ୍ଦେହ ନାହିଁ ); କପୋଳଦେଶର ପେଡକ ଭୂମି ଦୃଶ୍ୟମାନ, ତାହା କର୍ଷିତ ଭୂମିକୁ ବଳି ପଡ଼ୁଛି; ତାହାର ଦୁଇ ପ୍ରାନ୍ତଭାଗର ଦୁଇକରପଟେ କଳଚୂନର ପ୍ରଲେପ (ନିଶ୍ଚୟ ମୁଣ୍ଡ-ବନ୍ଧାର ଔଷଧ); କର୍ଣ୍ଣ-ମୂଳଦ୍ୱୟ ଅସ୍ୱାଭାବିକ ଭାବରେ ସ୍ଫୀତ, ହନୁ-ହାଡ ଦୁଇଟି ଗୋଟେଇ ଉଠିଚି ଗୋଜ କାଠି ପରି; ଆଖି ଦୁଇଟି କାହିଁ ପଶି ଯାଇଛି କୋଟର ଭିତରକୁ ; ସେଥିର ଧଳା ଅଂଶ ବିଲ୍‌କୁଲ ଲାଲେ ଲାଲ । କଳା-ଚକ୍‌କଣ ଡେ଼ାଳା ଛିଡଆ ଧରିଚି, ବୁଲୁଚି କି ନା ସନ୍ଦେହ ; ଗଣ୍ଡ ପାଟ ଗମ୍ଭୀର ପାଲଟି ଲୁହିଲୁଡିଆ ; ଓଷ୍ଠ-ଦ୍ୱୟ ଶୁଷ୍କ ଓ ନିରକ୍ତ ; ଚିବୁକଟି ଲହା-ଗୁଣ୍ଡ-ସମାକୀର୍ଣ୍ଣ ଚୁମ୍ବକପୃଷ୍ଠ ପରି କଣ୍ଟା କଣ୍ଟା ।...

ମୁଖାବୟବ ବାଦେ ଅନ୍ୟାନ୍ୟ ଅବୟବ ମୋଟା କମ୍ବଳରେ ଆବୃତ···
ସୁତରାଂ, ଦୃଷ୍ଟିର ସଂପୂର୍ଣ୍ଣ ଅଗୋଚର ।

ମୋଟ ଉପରେ ଚଣାବାଲା ଯେ ଅସ୍ଥି କାଲର ସାପ୍ରତିକ ପ୍ରାକୃତିକ ବିପର୍ଯ୍ୟୟର ସ୍ୱାକ୍ଷର ବହନ କରି ଆଣିଛି, ଆଉ ତାହା କାଳର ସ୍ଥାନୀୟ ଉପଦ୍ରବ ଫଳରେ ଗାଢତର ହୋଇଛି, ଏହା ତା'ର ମୁଖମଣ୍ଡଳହିଁ ସ୍ପଷ୍ଟ ପ୍ରମାଣ ଦେବ ।

ମନେ ହେଉଥାଏ, ମୁକ୍ତ ଆକାଶତଳେ ଉଚ୍ଚବେଦୀସମାରୂଢ଼ ଅକ୍ଷୁର୍ଣ୍ଣ ବିଦ୍ୟାସାଗରମୂର୍ତ୍ତିର ଅଦୂରେ କାଳ ସାଗର ଦାଂଷ୍ଟ୍ରା କ୍ଷୁର୍ଣ୍ଣ ଶିଳମୂର୍ତ୍ତିଟିଏ ଆଣି କିଏ ସ୍ଥାପନ କରି ଦେଇଛି ଉଦ୍ୟାନର ସମତଳ ଭୂମିରେ ।

ଖରିଦ୍‌ଦାର ଆସୁଥା'ନ୍ତି, କିନ୍ତୁ ବିକ୍ରେତାର ଉପେକ୍ଷାଯୋଗୁଁ ହେଉ, କିମ୍ବା ମୂର୍ତ୍ତିର ବିରୂପତା ଯୋଗୁଁ ହେଉ, କେମିତି ତରପି ଅସ୍ୱାଭାବିକ ପଦକ୍ଷେପରେ ଫେରିଯିବାର ଦେଖା ଯାଉଥା'ନ୍ତି ।

କେତେକ ଶିଶୁ ମଧ୍ୟ ଅସିଥିଲେ···ଖଣ୍ଡେ ବାଟରୁ ଚଣାବାଲାକୁ ଦେଖି, 'ମାଲେ' ବୋଲି ଦେଖଣା ପରି ଚମ୍ପଟ୍ ଛୁ ବଡାଇବାରୁ ବେଶ୍ ଲକ୍ଷ୍ୟ କରିଚି ।

ଚଣାବାଲାର ସେ-ଆଡ଼କୁ ଭ୍ରୂକ୍ଷେପ ନାହିଁ···ତା'ର ଭ୍ରୂସହିତ ଶଙ୍କୁଳକ ଦୃଷ୍ଟି ଏକମୁଖୀ ଅଭିଯାନର ଲକ୍ଷ୍ୟ ଧରି ପାଠକର ମୁକ୍ତପଥ ଦେଇଁ ରାଜପଥ ପ୍ରତି ଅନ୍ତହୀନ ଭାବରେ ପ୍ରସାରିତ । ···ପ୍ରତୀକ୍ଷା ! ···ଅନନ୍ତ ପ୍ରତୀକ୍ଷା !!

ଏହି ପ୍ରତୀକ୍ଷମାନ ଭୂକମ୍ପିର ତୀବ୍ରତା ପ୍ରତୀକ୍ଷାକାରୀଙ୍କୁ ଯେ ନିର୍ଦ୍ଦିଷ୍ଟ ସମୟ–ସାପେକ୍ଷ ବିସ୍ଫୋରକ (ଟାଇମ୍‌ବୋମ୍)ଦ୍ରବ୍ୟରେ ପରିଣତ କରି ନ ଥାଏ, ତାହା ନୁହେଁ ।

କିଏ ସେହି ଶରବ୍ୟ ଯାହାପାଇଁ ଏହି ପ୍ରତୀକ୍ଷା ?—କିଏ ସେହି ଧ୍ୟାନର ବସ୍ତୁ, ଯାହାପାଇଁ ଏହି ଏକାଗ୍ର ସାଧନା ? —ଏସବୁ ପ୍ରଶ୍ନର ମୀମାଂସା କରିବାକୁ କଷ୍ଟ ହେଲ ନାହିଁ, କଷ୍ଟ ହେଲ ଯଦି ଧ୍ୟାନର ଦେବତା ପ୍ରସନ୍ନ ନ ହୁଅନ୍ତି, ତେବେ ଯତର ଏଭଳି ସାଧ୍ୟାତୀତ ସାଧନା ନିଷ୍ଫଳ ହେବ ତ !

ଗୃହିଣୀ କହିବାର ଶୁଣିଚି, ଅବଶ୍ୟ ଶୁଦ୍ଧିକରି କହୁଚି—

‘ଭକ୍ତର ଭଗବାନ...ଭକ୍ତର ଜୋର୍ ଭଗବାନଙ୍କ ଆସନ ଟଳାଇ ଦିଏ···ଗଜନିସ୍ତାରଣ ଏହାର ପ୍ରମାଣ’···

ଏହି ଶ୍ରୁତିବାକ୍ୟ ସ୍ମରଣ କରିବା ମାତ୍ରକେ, ମୁଁ ନିଜକୁ ନିଜେ ପଚାରିଲି—ଜୀବାତ୍ମା ପରମାତ୍ମାକୁ ବିଚଳିତ କରିପାରେ, ଅଥଚ ଜୀବାତ୍ମା ଜୀବାତ୍ମାକୁ ବିଚଳିତ କରିପାରୁ ନାହିଁ, କାହିଁକି ?··· ପ୍ରତିବନ୍ଧକ କ’ଣ ବିଜ୍ଞାନୀର ଜଡବାଦିତାର ପ୍ରଭାବ, ନା ଆତ୍ମ-ଜ୍ଞାନୀର ଆତ୍ମ-ସାଧନାର ଅଭାବ ?···

ଏହାର ଉତ୍ତର ଦେଇ ମୋ’ର ଅନ୍ତରାତ୍ମା ତତ୍‌କ୍ଷଣାତ୍ ମୋ’ର ଅନ୍ତର ଭିତରୁ ଯେମିତି କହି ଉଠିଲା—

ଭକ୍ତ ଓ ଭଗବାନ ମଧ୍ୟରେ ଆକର୍ଷଣର ସୂତ୍ର ଯେଉଁପରି ଭଗବଦ୍ ଭକ୍ତି···ମାନବ ଓ ମାନବ ମଧ୍ୟରେ ଆକର୍ଷଣର ସୂତ୍ର ସେହିପରି ମାନବିକ ପ୍ରୀତି । ... ଏହି ମାନବିକତା-ବୋଧର ଉତ୍କର୍ଷରେହିଁ ନିହିତ ରହିଛି ସମାଧାନର ମୂଳବୀଜ ।

ଖୋକାର ଦୁର୍ଜ୍ଜୟ ଅଭିମାନର କଥା ସଂବାଦପତ୍ରରୁ ଜାଣି-ଥିଲି ···ସେହି କଥା ମନେ ପଡ଼ିବାରୁ ମୁଁ ଚିନ୍ତା କରିବାକୁ ଲଗିଲି···ଆକର୍ଷଣ ପଥରେ ଖୋକାର ଏହି ଅଭିମାନ ବିକର୍ଷଣର ପ୍ରତିକ୍ରିୟା ଉପୁଜାଇବ ନାହିଁ ତ ?···ସଙ୍ଗେ ସଙ୍ଗେ ମନକୁ ପ୍ରବୋଧ ଦେଲି, ଏହିପରି ବୁଝାଇ—

ଅଭିମାନ ଯଦି ଖୋକା କରିଥାଏ, ତେବେ ତାହା ଆକର୍ଷଣର ଆନୁକୂଲ୍ୟରେ, ବୈକୂଲ୍ୟରେ ନୁହେଁ !...ତଥାପି ···ହଁ, ଗୋଟାଏ ସଂଶୟ···ଆଭିଜାତ୍ୟ···ଖୋକାର ସାମାଜିକ ପରିବେଶ, ଐଶ୍ୱର୍ଯ୍ୟମୟ ଜୀବନଧାରା, ପିତା ଓ ସ୍ୱାମୀର ପଦ-ମର୍ଯ୍ୟାଦା ଯେ ଶ୍ରେଣୀ-ମର୍ଯ୍ୟାଦାକୁ ପ୍ରାଧାନ୍ୟ ନ ଦେବ ତା'ର ଚେତନ ମନରେ, ଏହା ଆଦୌ ଅଶ୍ଚର୍ଯ୍ୟ ବା ବାସ୍ତବତାର ପରିପନ୍ଥୀ ନୁହେଁ ।

ମୁଁ ଏହି ବାସ୍ତବ ଦୃଷ୍ଟିଭଙ୍ଗି ଘେନି ସନ୍ତୁଷ୍ଟ ଓ ସାନୁକମ୍ପ ଦୃଷ୍ଟିରେ ଚଣାବାଲର ଅଚଞ୍ଚଳ ମୌନ ମୂର୍ତ୍ତିକୁ ନିରୀକ୍ଷଣ କରୁଛି, ଏତିକିବେଳେ ଚଣାବାଲ କି ଗୋଟାଏ ଅମାନୁଷିକ ଉତ୍ତେଜ-ନାରେ ଉତ୍କ୍ଷିପ୍ତ ହୋଇ ଉଠିଲା ଏବଂ ଅବେଗୋଚ୍ଛ୍ୱସିତ କଣ୍ଠରେ ଡକାରିଲା—'ଖୋକା'...!

ଖୋକା ସତେ ଆସିଛି···ମାନବକଙ୍କାଳର ଅଗ୍ନି ପରୀକ୍ଷା ସତକୁସତ ଜୟଶ୍ରୀମଣ୍ଡିତ ହୋଇଛି ।

ଦୁଇଟି ଜୀବାତ୍ମା ମିଳିତ···ମିଳନାନ୍ତ ନାଟକର ଶେଷଦୃଶ୍ୟ··· ଆଖିରେ ଆଖିରେ ମିଳନର ପ୍ରଥମ ଉଚ୍ଛ୍ୱାସ···ଅଶ୍ରୁଳ ସେହି ଆଭାସ କଟିଲା କେତେବେଳେ କହି ପାରିବନାହିଁ···କାରଣ, ଦରଦୀ ଦର୍ଶକର ଭୂମିକା ମୋଟେ କରିଥିଲା ଗ୍ରୀସ···ଦର-ଦର ଅଶ୍ରୁଧାର ପୋଛିପକାଇ ଯେତେବେଳେ ଅନାଇ ଦେଖେଁ, ସେତେବେଳେ ଖୋକା କଙ୍କାଳ କର ପଚାରୁଛି—

'ସ୍ପେଶାଲ୍ ଚଣା ଥାଉ...ଗଙ୍ଗା କାହିଁ ? ···ଏହି ତ ବେବୀ ···ଗଙ୍ଗା ପାଇଁ ନିଜର ପସନ୍ଦ ମୁତାବକ ଖେଳନା କିଣିବ ବୋଲି ଜିଦ୍ ଧରିଲା ..ସୁଅଗିଆ ବ.ପ ସହଜ କରି ନିଜେ ନେଇଗଲେ ବଡ଼ ଦୋକାନକୁ···ମୁଁ ମଙ୍ଗିଲି ନାହିଁ, ଧାଇଁ·ଆସିଲି ଏ'ଠାକୁ, ଗଙ୍ଗାକୁ ଫଖେ.ଳା ଘେନି ଯିବାକୁ···ଗଙ୍ଗା କାହିଁ ? ଡେଉରେ ? ହେଲା କାହିଁକି ? ଆସ, ଗାଡ଼ି ଚଢ଼ି ଡେରାକୁ ଚାଲ···'

ଏତିକିବେଳେ ବେବୀ ସଙ୍ଗେ ବାରିଷ୍ଟର ସାହେବ (ସାହେବୀ ପୋଷାକ ନଥାଏ); ଗାଡ଼ିରୁ ଓହ୍ଲାଇ ସ୍ଥାପୃ ନିକଟରେ ଆସିଥା'ନ୍ତି···

ଚଣାବାଲା କି ଏକ ଅଦ୍ଭୁତ କମ୍ପନରେ ହୋଇ ଉଠିଲା କମ୍ପିତକଳେବର...ଥରେ ଖୋକା ଓ ଥରେ ସବାରିଷ୍ଟର ବେବୀ ଆଡକୁ ଅନାଇଲା···ତା' ପରେ ଖୋକା ପ୍ରତି ସ୍ଥିରଦୃଷ୍ଟି ନିବଦ୍ଧ ରଖି ଅଦ୍ଭୁତ-କଣ୍ଠରେ କହିଲା—

"ଗଙ୍ଗା ?  ···ଗଙ୍ଗା ଅଛି···ଏଇଠି···ମୋ' ବୁକୁରେ ।"
କହିବା ସାଥି, ସାଥି ଭୂକମ୍ପବିଜଡ଼ିତ ପ୍ରକମ୍ପମାନ ହସ୍ତ କମ୍ବଳର ଜହାଡ଼ରେ ପୁନଃଇ ଅଣ୍ଡାଳିବାକୁ ଲଗିଲ ।

ଖୋକା ଧୈର୍ଯ୍ୟ ସମ୍ଭାଳି ନ ପାରି ବ୍ୟଙ୍ଗବିମିଶ୍ରକଣ୍ଠରେ ଶୁଣାଇଲ—

'ବାଃ ବେଶ୍ ତ···କାଲ ସେମାନେ କୌତୁକ କରି ଲୁଚାଇ ରଖିଥିଲେ ବେଙ୍ଗାକୁ···ଅଜ ଅଜ ତୁମେ କୌତୁକ କରି ଲୁଚାଇ ରଖିଛ ଗଙ୍ଗାକୁ...ମୁଁ କ'ଣ ଗୋଟାଏ କୌତୁକର ପାନ ?'

ଏତିକିବେଳେ ଚଣାବାଲ ଫୁଲଟିଏ ବାହାର କରି ଖୋକାର ସମ୍ମୁଖରେ ମେଲାଇ ଧରିଲ...ସେ ଦିନର ସେହି ଫୁଲଟି ଯାହା ଖୋକା ଉପଢୌକନ ସ୍ୱରୂପ ପଠାଇଥିଲ ମୋହିଅ-ମାରଫତ୍ ଗଙ୍ଗାର ଜନ୍ମଦିନ ଉପଲକ୍ଷେ (?) ···କିନ୍ତୁ ବେଶିକ୍ଷଣ ଧରି ରଖି ପାରିଲ ନାହିଁ...ଟାଇମ୍ ବୋମ୍ ଯେମିତି ନିର୍ଦ୍ଦିଷ୍ଟ ମୁହୂର୍ତ୍ତ ଉପସ୍ଥିତ ହେଲ ମାତ୍ରେ ବିସ୍ଫୋରିତ ହୁଏ, ଠିକ୍ ସେହିପରି ଗୋଟାଏ ବିସ୍ଫାରିତ ଅଟ୍ଟହାସ୍ୟର ତୁମୂଳ ଧ୍ୱନି ବହୁଡ଼ାଇ ଦିଗ୍‌ଦିଗନ୍ତ ପ୍ରକମ୍ପିତ କରିଦେଲ ଓ କି ଗୋଟାଏ ପ୍ରତିଧ୍ୱନିକାରେ ଯେମିତି ଉନ୍ମାଦପ୍ରାପ୍ତ ହୋଇ ତଡ଼ିତ୍ ଗତିରେ ସେହି ସ୍ଥାନରୁ ଅଦୃଶ୍ୟ ହୋଇଗଲ ।

ସମସ୍ତେ ହତବାକ୍ !!

...   ...

ଖୋକା ଓ ଚଣାବାଲ ଉଭୟଙ୍କର ଏକମୁଖୀ ଆବେଗ-ଅଭିଯାନର ପରିଣତ ବିନ୍ଦୁ ଥିଲ ଗଙ୍ଗା । ···ଜଣେ ପାଇବ, ଅନ୍ୟ ଜଣେ ଦେବ...

ସେହି ପାରସ୍ପରିକ ଅସ୍ୱାଚ୍ଛନ୍ଦ୍ୟରେ ଖୋକା ଭୁଲିଥିଲା ବେବୀର ଅନ୍ତର୍ଦ୍ଧାନ (?) ଯେପରି ଚଣାବାଲା ପ୍ରତି ଅହେତୁକ ସନ୍ଦେହ ଓ ଆକ୍ରୋଶର ଯନ୍ତ୍ରଣାଶୀଳ ପ୍ରତିକ୍ରିୟା, ଅନ୍ୟପକ୍ଷେ ଚଣାବାଲା ମଧ୍ୟ ଭୁଲିଥିଲା ନିଜ ମୂର୍ଚ୍ଛନାରେ ଅର୍ଜିତ ପ୍ରହାରର ଦୈହିକ ବେଦନା··· ବର୍ତ୍ତମାନ ଚଣାବାଲା ତା'ର ଭାର ଲାଘବ କରି ଦେଇ ନିଶ୍ଚିନ୍ତ, ଆଉ ଖୋକା ସେହି ଭାର (ଫ୍ରକ୍) ଧାରଣ କରି, ଭାରାକ୍ରାନ୍ତ···ଏକ ଦିଗରେ ଗଙ୍ଗାର ଅଭାବ ଜନିତ ଆଶାର ପ୍ରବଞ୍ଚନା, ଅନ୍ୟଦିଗରେ ଚଣାବାଲା ପ୍ରତି ବେବୀ-ପ୍ରାସଙ୍ଗିକ ବୃଥା ସନ୍ଦେହର ଅନୁଶୋଚନା ...ବିଗୃସିକୁ ଘାରିଲା କାହିଁରେ କ'ଣ...ଅଶ୍ରୁର ଭରି ପ୍ଲାବନରେ ହେଲା ସେ ଆପ୍ଲୁତ···

ବାରିଷ୍ଟର ସାହେବ ଓ ବେବୀ ଉଭୟେ ସେହି ମୌନଦୃଶ୍ୟରେ ଯଥାଭୂମିକା ଗ୍ରହଣ କରିଥା'ନ୍ତି···ବେବୀ ଅବାକାବା ହୋଇ ସାନୁକଂପ ଦୃଷ୍ଟିରେ ଚାହିଁଥାଏ ତା'ର ମାମାକୁ, ତା'ର ଜୁଳୁ ଜୁଳୁ ଆଖିଦୁଇଟି ହୋଇ ଯାଇଥାଏ ଛଳ ଛଳ···ବୁଦ୍ଧିଜୀବୀ ବାରିଷ୍ଟର ବୁଦ୍ଧି-ବଣା ଦେଖା ଯାଉଥାନ୍ତି, ତାଙ୍କର ଅଶ୍ରୁ-ପ୍ରବଣ ଚକ୍ଷୁଦ୍ୱୟ ରୁମାଲର କଠିନ ବାଧା ଆଦୌ ମାନୁ ନ ଥାଏ।...ଦେଖଣାହାରୀ ସେମାନଙ୍କୁ ବେଢି କ୍ରମେ ଭିଡ଼ ଜମାଉଥାନ୍ତି। ···ବାରିଷ୍ଟର ସାହେବଙ୍କ ଖିଆଲ ପଶିଲା···ସେ ବାସ୍ତବ-ଭୂମିକୁ ଓହ୍ଲାଇ ଆସିଲେ ···କିପରି ଏହି ଗ୍ଲାନି-ବ୍ୟୂହ ଭେଦକରି ଆତ୍ମ-ସମ୍ମାନ ବଞ୍ଚାଇବେ, ସେଥିକି ତତ୍ପର ହେଲେ। ବାରିଷ୍ଟରଣୀଙ୍କୁ ସ୍ପର୍ଶ କଲେ, ପ୍ରୟାଣର ସଙ୍କେତ ବତାଇଲେ। ···କିନ୍ତୁ, ବାରିଷ୍ଟରଣୀ ଦମ୍ଭ ହୋଇ ଠିଆ ହେବାର ଇଙ୍ଗିତ ଦେଲେ—'ଗଙ୍ଗା···' ବୋଲି କହୁ କହୁ ସେହି

ଫ୍ରକ୍‌ଟିକୁ ଆହୁରି ମୁଠାଇ ଧରିଲେ ।.. ବାରିଷ୍ଟର ଏଥର ବାରିଷ୍ଟରି-ଗୁଳି ଖେଳିଲେ, ଭବିଲେ, 'ଗଙ୍ଗାର ତତ୍ତ୍ୱ ନେବାନାହିଁ ?' 'ଖୋକା' ଏଥର ଖେକା ପାଲଟି ମଟରର ଅଡ଼କୁ ଧାଇଁଲେ ।...'ମାମା… ମାମା…' ବୋଲି ବେବୀ ଅଥୟ ହୋଇ ଉଠିଲା । …ମମା ଯେ ତା'ର ମାତୃହୃଦୟର ସମସ୍ତ ମମତା ଅଞ୍ଜଳି ଦେଇଛନ୍ତି ଗଙ୍ଗା ଅବାହନରେ ତାଙ୍କର ବେବୀକୁ ପର୍ଯ୍ୟନ୍ତ ବଳିଦେଇ,—ବାରିଷ୍ଟର ବେଶ୍ ବୁଝି ପାରିଲେ । ସୁତରାଂ ବେବୀକୁ ଅପଣାର ବକ୍ଷଦେଶକୁ ଉଠାଇ-ନେଲେ ।…'ମୋ' ଖେଳନା ?'…ଖେଳନାଟା ବେବୀ ହାତରୁ ଖସି ପଡ଼ିଥିଲା କେତେବେଳେ ।…ବାରିଷ୍ଟର ସାହେବ ଉଠାଇ ନେଇ ବେବୀ ହାତକୁ ଦେଲେ ।...'ଭାଙ୍ଗିଗଲା…ଉଁ…ଉଁ '। 'ଏ ଖେଳନାଟା ତୁମର ପସନ୍ଦୀ…ମିତର ପସନ୍ଦୀ ଖେଳନା ମିତକୁ ହାଥିରେ ନେଇ କିଣିଦେବନା ?' ...ବେବୀର କି ଆନନ୍ଦ…!

ସେମାନେ ମଟରର ନିକଟରେ ହେଲା ବେଳକୁ, ମୁଁ ବି ସେଠାରେ ପହଞ୍ଚି ଯାଇଥାଏ । …ଭିଡ଼ କରିଥିବାର ଲୋକେ କେତେଣେ ନ ଅଟେଇଲେ ମଧ୍ୟ ପ୍ରଶ୍ନବାଚୀ ବସ୍ନୟୁରେ ଯେ ଗୃହଁ ନ ଥା'ନ୍ତି, ତାହା ନୁହେଁ ।

ବାରିଷ୍ଟରାଣୀ ମଟରର ଦରଜା ଖୋଲି, ମଟରର ଚଢ଼ିବେ, ଏତକ୍ଷ-ବେଳେ ଉଡ଼ା-ବେଲୁନ୍ ଭଳି, ମୋଟିଆ ଅପି ହାଲର ହୋଇଯାଏ ଓ ଉଚ୍ଛନ୍ନ ହୋଇ ପଗୁରେ, 'ମାଇକି !…ଚଣାବାଲାକୁ…?'

'ହଁ, ଭେଟିଥିଲି...ଘୁଙ୍ଗୁରୁଦାନା କୁଆଡେ ପଳାଇଲା କୁହତ ? ଫ୍ରକ୍‌ର ମଣିଷକୁ ଲୁଚେଇ, ଛୁଞ୍ଚା-ଫ୍ରକ୍‌ଟି ମୋ ହାତରେ ଗୁଞ୍ଜି ଦେଇ'?

ଫୁଲ୍‌ଟି ମୋହିଆ ଦେଖିଲା ମାନେ, ଚହ୍ଲିଲା, ଏବଂ ଦୀର୍ଘ ଶ୍ୱାସଟାଏ ଏ'ପରି ଭାବେ ଘାଣ୍ଟ ବସିପଡିଲା ଯେ, ମନେହେଲା ଯେମିତ ଉଡ଼ି ଆସିଥିବା ଭଗ୍ନ ଦେବଲ୍‌ନ୍‌ଟି ନିଃଶେଷିତଶକ୍ତି ହୋଇ ସଙ୍କୁଚିତ ହୋଇ ଯାଇଛି ।

ଜଳର ଗ୍ଲ୍ୟାସ୍‌ଟା ମଝରରେ ଥିଲା, ବାଚ୍ଛୁର ସାହେବ ବାହାର କରି ଆଣିଲେ, ପିଇବାକୁ ଦେଲେ ଓ ମଥାରେ ଛୁଇଁଦେଲେ । ମୋହିଆ ଚେତା ପାଇ ଉଠି ବସିଲା; କିନ୍ତୁ ଚିତ୍କାର ଘାଣ୍ଟ କାନ୍ଦିବାକୁ ଲଗିଲା ।··· ଦେଖଣାହାରି ଜମିଯାଉଥିଲେ, କିନ୍ତୁ ହ୍ୟାରିସନ୍ ରୋଡ଼ ଆଡ଼ୁ କି ଗୋଟାଏ ସୋରଗୋଳ ଭାସି ଆସିବାରୁ, ଲୋକେ ସେଇଆଡେ ଏକମୁହାଁ ଧାଇଁଲେ । ଏଣେ ମୋହିଆ ଚିତ୍କାର ବନ୍ଦ କରି କାନ୍ଦ କାନ୍ଦ କଣ୍ଠରେ କହିବାକୁ ଲଗିଲା —

'ତେବେ ଗଙ୍ଗା ନାହିଁ ?···ମୁଁ ଯା' ଶୁଣିଲି, ତା' ସତ ?···' ବାଚ୍ଛୁରାଣୀ ଚମକି ଉଠିଲେ, କିନ୍ତୁ ମୋହିଆ ତାଙ୍କର କୌଣସି ଅଭିବ୍ୟକ୍ତି ପ୍ରତି ଭ୍ରୂକ୍ଷେପ ନ କରି କହି ଯିବାକୁ ଲଗିଲା—'ମାଇଜି ! ଗାଁଓରେ ତୁମରି ଲାଗି ପେଷାଲ (ସ୍ପେସାଲ) ଚଣା ବନାଉଥିଲି ତୁମର ଘୁଙ୍ଗୁରିବାଲା···ଅନେକ ବର୍ଷ ବନାଇନି, ସେଇଥିପାଇଁ ଦୁଇ ତିନିଟା ପାଗ ବିଗିଡି ଯାଇଥିଲା···ଭାରି ବେସ୍ତହୋଇ, ଆଉ ପାଗେ କରିବି ବୋଲି, ଚଣା, ଚିନାବାଦାମ ଅଉ କ'ଣ ମସଲା ମସଲା ଆଣି ଥୋଇଥିଲି,—ଏମିତି ବଖତରେ କେତେବେଳେ ଗଙ୍ଗା ସେଥିରୁ ଅଧାଡ଼ା ଚିନାବାଦାମରୁ ଗୋଟିଏ ନେଇ ଗୋଟାପୁଞ୍ଜା ପାଟିରେ ପୂରାଇ ଦେଇଛି, ଆଉ ତା' ବଗୁନ୍ଦାର ତଣ୍ଟିରେ ଅଟକି ଯିବାରୁ···'

ଆଉ ସେ କହି ପାରିଲା ନାହିଁ, କି ଖୋକା କି ମା-ପ୍ରାଣରେ ଶୁଣିବ, ଏ'ଧୈର୍ଯ୍ୟ ଧରି ରହି ପାରିଲ ନାହିଁ । ଖୋକା ସେହି ମୂର୍ତ୍ତିକୁ ବୁକୁରେ ଆହୁରି ଜାବୁଡ଼ି ଧରି, ଫାଟି ପଡ଼ିଲ···ମୋହିଆ ସେତିକି-ବେଳେ ପୁଣି ସକେଇ ସକେଇ କହୁଲି, 'ତଥାପି ଘୁଙ୍ଗୁରୁଦାନା ଏତେ ଶୋକରେ ବି ଧାଇଁ ଆସିଥିଲ କଥା ରଖିବାକୁ ।··· 'କାହିଁ, କାହିଁ ମୋର ଘୁଙ୍ଗୁରୁଦାନା ?···' ବୋଲି ଖୋକା ମୋହିଆକୁ ଗାଡ଼ି ଭିତରକୁ ଭିଡ଼ିନେଲେ, ଆପଣା ପାଖରେ ବସାଇଲେ ଓ ଗାଡ଼ି ଚଲାଇବାକୁ ଇଙ୍ଗିତ କଲେ । ମୋହିଆର ପଥ ନିର୍ଦ୍ଦେଶ କ୍ରମେ ସାହେବ ଗାଡ଼ି ଡ୍ରାଇଭ କଲେ ହ୍ୟାରିସନ୍ ଷ୍ଟ୍ରୀଟ ଆଡ଼େ ।

ଗଙ୍ଗାର ମୃତ୍ୟୁର କାରଣ ଯେ ଏହିପରି କିଛି ଗୋଟାଏ ଘଟଣା, ତାହା ପୂର୍ବ ତଥ୍ୟାବଳିରୁ ମୁଁ ଏକ ପ୍ରକାର ଆନ୍ଦାଜ କରିନେଇଥିଲି, ସେଥିପାଇଁ ବିଶେଷ ଭାବରେ ଅଭିଭୂତ ହେଲି ନାହିଁ···ତେବେ ଚଣାବାଲା ପାଇଁ ମନଟା ମୋ'ର କାହିଁକିରେ କ'ଣ ବ୍ୟଥିତ ହେବାକୁ ଲାଗିଲା, ଅବଶ୍ୟ ଦୁଇଟି କାରଣରୁ—ପ୍ରଥମ, ଅବଚେତନ ମନର ଜନ୍ମମାଟି ଯେ ତା'ର ମର୍ମବ୍ୟଥାର ପ୍ରକୃତ କାରଣ, ଏବଂ ଗଙ୍ଗା ଓ ଖୋକା ତା'ର ଉପଲକ୍ଷ୍ୟ ମାତ୍ର, ଏହାହିଁ ବେଶ୍ ସୂଚିତ ତା'ର ସେହି ପ୍ରଳାପୋକ୍ତି 'ମୋ'ର କେତେ ଗଙ୍ଗା ··· କେତେ ଖୋକା' ଏଇଥିରୁ···ଏବଂ ସେହି ଉଦାର ଭାବ ଯେଉଁ ସେ ମନପ୍ରାଣ ଢାଳି ଦେଇ ଶିଶୁ ସେବାରେ, ଜନ୍ମମାଟିର ଭବିଷ୍ୟତ ଗଠନରେ, ଏ'ଙ୍କୁ ନାହିଁ, ସେଥିରେବି ବିଧି ବିଡ଼ମ୍ବନା, ଲାଇନ୍ ବନ୍ଦ, ତା'ର ଯିବା ବନ୍ଦ···ଦ୍ୱିତୀୟ, ଯେଉଁ ଦୋକାନଟି ସଜାଇ ସେ ଶିଶୁମାନଙ୍କ

ସଜ ମନ ଭିତରେ ଅପଣାକୁ ହଜାଇ ଦେଇଥିଲା, ସେହି ଦୋକାନଟି ତା'ର ହୋଇ ଆଉ ନାହିଁ' ··· ଦୋକାନ ଛଡ଼ାଇ ନେବ ?··· କିନ୍ତୁ ସତ୍ୟବନ୍ତ ସେ··· !···ଫେର୍ କରିବ ? ଫେର କରିବାର ବୟସ କ'ଣ ...

ଠିକ୍ ଏତକବେଳେ ମୋ'ର ଚିନ୍ତାର ସ୍ରୋତକୁ ଧକ୍କାଦେଇ ଝିଜାଣି ବୋହି ଆସିଲା ପୂର୍ବ ହାଲ୍ଲୋଳର ପ୍ରବାହ—'ଭୟାନକ ଦୁର୍ଘଟଣା—ଚଣାବାଲା ଚାପା ପଡ଼ିଛି...'

ମୁଁ ତୀବ୍ରଗତିରେ ହ୍ୟାରିସନ ରୋଡ଼ର (ଯେଉଁଠାରେ କଲେଜ୍ ଷ୍ଟ୍ରୀଟ ଓ ହ୍ୟାରିସନ ରୋଡ଼ ଛକାଛକି ସେଇଠାକୁ ଧାଇଁ ଯାଇ ଦେଖେଁ —ମୃତପ୍ରାୟ ଚଣାବାଲାର ଦେହକୁ ମୁଣ୍ଡ ପଟେ ଖୋକା ସାହେବାଣୀ ଓ ଗୋଡ଼ପଟେ ବାରିଷ୍ଟର ସାହେବ ଧରି (ଅବଶ୍ୟ ଅନ୍ୟ କେତେକଙ୍କ ସାହାଯ୍ୟରେ) ଟେକାଟେକି କରି ଆପଣା ମଟରରେ ଶୁଆଉଛନ୍ତି ।··· ମୁଁ ଗାଡ଼ି ପାଖକୁ ଲାଗି ଡକାଏ—ଚଣାବାଲା ମୁଦ୍ରିତନୟନ, ମୋ'ର ନୟନ ମୁଦି ହୋଇ ଆସିଲା ··· ଯେଉଁ ଅଶ୍ରୁ ସଂବରଣ କରିଥିଲି, ତାହା ମୁଷଳ ଧାରରେ ନିଗିଡ଼ି ପଡ଼ିଲା ।

ଗାଡ଼ି ଚାଲିଲା ମେଡିକାଲ ଅଭିମୁଖେ, ଡି, ସି, ଉପସ୍ଥିତ ଥିଲେ, ବେବୀକୁ ଘେନିଗଲେ ପୋଲିସ ଭ୍ୟାନ୍‌ରେ, ମୁଁ ଗୁରୁ ପଦକ୍ଷେପରେ ଚାଲିଲି ଗୃହାଭିମୁଖେ— । ଚାଲି ଚାଲି ସେହି ଗାଡ଼ିକୁ କେନ୍ଦ୍ର କରି ପ୍ରଥମେ ଏହି ପ୍ରଶ୍ନଟି ନିଜକୁ ନିଜେ ପଚାରିଲି—

ପାରସ୍ପରିକ ସାହାଯ୍ୟ ଲୋଡ଼ ଶ୍ରେଣୀ-ସାମଞ୍ଜସ୍ୟ ବାଞ୍ଛନୀୟ, ନା ପାରସ୍ପରିକ ବିଦ୍ୱେଷ ପୋଷଣ କରି ଶ୍ରେଣୀ-ସଂଘର୍ଷ କାମ୍ୟ ?

ତା'ପରେ ଚଣାବାଲର ଚିନ୍ତା ମନକୁ ଅଧିକାର କଲା...ଆଖି ଆଗରେ ଫୁଟି ଉଠିଲା ଚଣାବାଲାର ସେହି ଜଡ଼ପିଣ୍ଡବତ୍ ଜୀବାଧାରର ଜୀବନ୍ତ ଛବି···ଏହାକି ଜୀବନ ?...ଜୀବନ ଇତିହାସର ଏହିଠାରେ କ'ଣ ଇତି ?···ଏହିଠାରେ ତାର ପ୍ରକାଶ, ବିକାଶ, ପରିସମାପ୍ତି ?··· ମାନବର ସୁଖ, ଦୁଃଖ,—ଆଶା, ଆକାଙ୍କ୍ଷା – କଳ୍ପନା, ସାଧନା— ଏ'ସବୁ କ'ଣ କେବଳ ଜାଗତିକ ବସ୍ତୁ ?···ଜନ୍ମ-ମୃତ୍ୟୁର ରହସ୍ୟ ବା କ'ଣ ?···ଜୀବନ ବୋଲି ସାଧାରଣତଃ ଆମେ ଯା' ବୁଝୁଛୁ, ତା'ର ବା ସାର୍ଥକତା କ'ଣ ?

ଏହିପରି ନାନା ପ୍ରଶ୍ନ-ବିଡ଼ମ୍ବିତ ଚିନ୍ତାରେ, ଚିନ୍ତାରେ କେତେବେଳେ ଯେ ଆସି ଗୃହରେ ଉପସ୍ଥିତ ହୋଇଛି, ତାହା ମୁଁ ଜାଣେନା···ଗୃହିଣୀର ଗମ୍ଭୀର କଣ୍ଠ-ନିଃସୃତ 'ନାରାୟଣ, ନାରାୟଣ' ଯେତେବେଳେ ମୋ'ର ଆଚ୍ଛନ୍ନତା ଭେଦ କରି କର୍ଣ୍ଣକୁହରେ ପ୍ରବେଶ କଲା, ସେତିକି ବେଳେ ମୁଁ ଚେତନା ଓ ବାସ୍ତବତାର ସ୍ପର୍ଶ ଅନୁଭବ କଲି ।

ଗୃହିଣୀର ଏହିପରି ସମ୍ବୋଧନ ଯେ ଗୋଟାଏ ଅବିରାମ ପୋଥି-ବୋଲାର ମଧ୍ୟବର୍ତ୍ତୀ ଉଚ୍ଛ୍ୱସିତ ଧ୍ୱନି, ତାହା ମୋତେ ବୁଝିବାକୁ ବିଳମ୍ବ ହେଲା ନାହିଁ··· କାନ ଡେରିଲି··· ଗୀତା-ପାଠର ସମାରୋହ ···ନିଃଶବ୍ଦ ପଦ କ୍ଷେପରେ ନିକଟକୁ ଗଲି···ଗୃହିଣୀର କକ୍ଷ···

ଅନାଇଁ ଦେଖେଁ––ଖୁକୀ (ମୋର କନ୍ୟା) ତନ୍ମୟ ଚିତ୍ତରେ ବୋଲୁଚି, ଆଉ ତା'ର ଜନନୀ ଧ୍ୟାନମଗ୍ନ ଚିତ୍ତରେ ଶ୍ରବଣ କରୁଚି ।

ଜ୍ଞାନଯୋଗ-ଅଧ୍ୟାୟ ଆରମ୍ଭ ଏହି ଶ୍ଳୋକଟିରେ ପଡ଼ିଥାଏ ।

ଶ୍ରୀ ଭଗବାନୁବାଚ

ବହୂନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜୁନ ।
ତାନ୍ୟହଂ ବେଦ ସର୍ବାଣି ନତ୍ୱଂବେତ୍ଥ ପରନ୍ତପଃ ।

ତା'ର ସମ୍ଭାର ପଢ଼ାହେଲା—

ଭଗବାନ କହିଲେ, ହେ ପରନ୍ତପ ! ତୁମର ଓ ମୋହର ଅନେକ ଜନ୍ମ ଅତୀତ ହୋଇଅଛି । ମୋହର ଜ୍ଞାନ ଓ ଚେତନା ଅଖଣ୍ଡ ଥିବାରୁ ତାହା ସବୁ ଜାଣି ପାରୁଅଛି, ଆଉ ତୁମ୍ଭେ ଅବିଦ୍ୟା ବଶତଃ ସେହି ଚେତନାରୁ ବଞ୍ଚିତ ହେବାରୁ ଜାଣି ପାରୁନାହିଁ ।

ସେବେଳର ପରିସ୍ଥିତି-ପରିପ୍ରେକ୍ଷିତରେ ଶ୍ଳୋକଟି ମୋତେ ଭାରି ଉପାଦେୟ ବୋଧ ହେଲା ।···ମୁଁ ଭାବିବାକୁ ଲାଗିଲି···ପ୍ରଥମେ ମନେ ପଡ଼ିଲା ସେହି ଉକ୍ତିଟି, ଯାହା ସଚରାଚର ଗୃହିଣୀ ପଇଟିଥା'ନ୍ତି— 'ନରକଥା ନାରାୟଣ ଜାଣନ୍ତି'··· ତେବେ ନର କ'ଣ ନରକଥା ଜାଣି ପାରେନା ?... ନାରାୟଣ କିଏ ?··· ଯେ ସବୁ ଜାଣନ୍ତି··· ଯାଙ୍କର ଜ୍ଞାନ କେତେବେଳେହେଲେ ମଳୀନ ହୋଇ ଯାଏନାହିଁ ···

କାଳର ସାଧ୍ୟ ନାହିଁ ଯାହା ଛିନ୍ନ କରି ପାରେ···ଏହିପରି ଅବିଚ୍ଛିନ୍ନ ଜ୍ଞାନର ଅଧିକାରୀ ଯିଏ, ସେହି ନାରାୟଣ।···ଆଉ ନର ?···ଅବିଦ୍ୟା ବଶତଃ ହେଉ ବା ଅତିବିଦ୍ୟା ବଶତଃ ହେଉ, ଯୁଗର ବଶବର୍ତ୍ତୀ ଓ ବିଚ୍ଛିନ୍ନ,—ଏହାହିଁ ତାତ୍ପର୍ଯ୍ୟ।··· ସୁତରାଂ ଜୀବାତ୍ମା ଯେତେବେଳେ ଧରିତ୍ରୀରେ ଅବତୀର୍ଣ୍ଣ ହୁଏ, ସେତେବେଳେ ସେ 'କୁଆଁ, କୁଆଁ,' ରଡ଼ି ଛାଡ଼ି ଥାଏ···ଏହା ଯେ ସ୍ୱତଃ ପ୍ରଣୋଦିତ ବେଦନାର ଉଚ୍ଛ୍ୱାସ, ସନ୍ଦେହ ନାହିଁ···କିଛି କାଳ ସଂସାରବାସ କଲା ପରେ, ଯେତେବେଳେ ଲେଉଟି ଯାଏ, ସେତେବେଳେ ମଧ୍ୟ ସେ ଲୁହ ଗଡ଼ାଏ··· ଏହା ମଧ୍ୟ ତା'ରଅନ୍ତରର ବେଦନାର ଦ୍ୟୋତକ—। ପୂର୍ବବେଦନା (ଜନ୍ମକାଳୀନ) ଅଖଣ୍ଡ ଜ୍ଞାନରୁ ବିଚ୍ଛିନ୍ନ ହେବାର ଆଶଙ୍କା କୁହାଗଲେ, ପରବର୍ତ୍ତୀ ବେଦନା, (ମୃତ୍ୟୁକାଳୀନ) ସେହି ଜ୍ଞାନରୁ ବିଚ୍ଛିନ୍ନ ହେବାଯୋଗୁଁ ପରିବେଦନା ବା ଅନୁଶୋଚନା, ଏହାହିଁ କୁହାଯିବ।

ଏହି କଥା ମୋ'ର ମନ କହିଲା।···ଆହୁରି ଭାବିଲି—ନର ଯଦି—ମାୟା କୁହ, ମୋହ କୁହ,—ପ୍ରକୃତିଗତ ଯାବତୀୟ ବାଧାବିଘ୍ନ ଅତିକ୍ରମ କରି, ପ୍ରପଞ୍ଚରେ ନ ଭୁଲି, ଆତ୍ମ-ଜ୍ଞାନକୁ ଅନବଚ୍ଛିନ୍ନ ରଖିପାରେ, ତେବେତ ସେହି ସର୍ବ-ଜ୍ଞାତା, ନାରାୟଣ।...ନର-ନାରାୟଣ ତାହାଛଡ଼ା ଆଉ କ'ଣ ?

ତହୁଁ ମନେ ପଡ଼ିଲା ଚଣାବାଲାର ମର୍ମ-ବ୍ୟଥାପ୍ରସଙ୍ଗ, ସେହି ମୂଳପ୍ରଶ୍ନ, ଶିଶୁମାନଙ୍କୁ ବିଦାୟ କଲା ପରେ ତା'ର ଅନ୍ୟମନସ୍କ ହେବାର କାରଣ।···ଗଙ୍ଗା, 'ଖୋକା', ଜନ୍ମମାଟି—ଏହିପରି ଗୋଟି ଗୋଟି କରି ଚେତନ, ଅବଚେତନ, ଅଚେତନ ମନର ପ୍ରତ୍ୟେକଟି ଆବାସୀକୁ ଯଥାକ୍ରମେ ତା'ର ଅନ୍ୟମନସ୍କତାର ହେତୁଭୂତ କରିଥିଲି ଓ ମର୍ମ-ବ୍ୟଥାର ଭାରକେନ୍ଦ୍ର ବୋଲି ନିର୍ଣ୍ଣୟ କରିଥିଲି···କିନ୍ତୁ,

'ବର୍ତ୍ତିମାନ ମନେ ହେଲା ଏହା ତଥ୍ୟ ପ୍ରକୃତରେ ନରର ଅଗୋଚର, ନାରାୟଣହିଁ ଜାଣନ୍ତି ।

ତଥାପି ଗୋଟାଏ ଯୁକ୍ତି ମୋତେ କଲା ଅଥୟ, ··· ପ୍ରଶ୍ନଟି କ'ଣ ପ୍ରଶ୍ନ ହୋଇ ରହିଯିବ ?··· କିନ୍ତୁ, ଅପ୍ରତ୍ୟାଶିତ ଭାବରେ ଏହି ଭାବ ଦ୍ୱନ୍ଦ୍ୱରୁ ମୁକ୍ତି ପାଇଥିଲି ତହିଁ ପରଦିନ ସକାଳେ ... ପ୍ରଶ୍ନଟିର ଉତ୍ତର ଦେଇଥିଲା ନିଜେ ଚଣାବାଲି ।

ସ୍ୱଳ୍ପ ରାତିଟା କିପରି ଉତ୍କଣ୍ଠା ଓ ଉଦ୍‌ବେଗ ମଧ୍ୟଦେଇ ସେଦିନ କଟିଥିଲି, ତାହା ବର୍ଣ୍ଣନା କରିବା ବାହୁଲ୍ୟମାତ୍ର ।

ରାତି ପାହିଲା । କୁହୁଡ଼ି ଭରିଥାଏ କାହିଁରେ କ'ଣ । ତାହା ପିଣ୍ଡୀଭୂତ ପରି ଏତେ ନିବିଡ଼ ଯେ, ଆକାଶର ସୂର୍ଯ୍ୟ ତେଜ ଉଠିଥିଲେବି, ତେଜର ପ୍ରଖରତା ତା'କୁ ଭେଦ ପାରୁ ନଥାଏ ।··· ତେଣୁ କାରବାରି ପରି ଯେତିକି ଟିକିଏ ଆଲୋକ ସୀମାନ୍ତ ଟପି ଏ'ପାରକୁ ଅନୁପ୍ରବେଶ କରିଥାଏ, ସେଥିରେ ପୃଥିବୀ ତା'ର ଦୈନ୍ୟ ମେଣ୍ଟେଇବ କ'ଣ, ଦୈନ୍ୟକୁହିଁ ସେ ଅଧିକତର ପ୍ରକଟ କରି ଝାପ୍‌ସା ଦୃଷ୍ଟିରେ ଆପଣା ଅଙ୍ଗ ପ୍ରତ୍ୟଙ୍ଗ ନିରୀକ୍ଷଣ କରୁଥାଏ ।... ମୋ'ର ମନର ତତ୍‌କାଳୀନ ଅବସ୍ଥା ମଧ୍ୟ ଠିକ୍ ସେହିପରି ଅନୁଭବ କଲି ।···

ଜୀବନମରଣର ସନ୍ଧି ସ୍ଥଳରେ ବର୍ତ୍ତିମାନ ଚଣାବାଲି ।...ସୁତରାଂ ଆଶାର ଆଲୋକ ପ୍ରଖର ହେଲେ ବି, ନୈରାଶ୍ୟର ଗଭୀର ତମିର-

ଯବନିକା ଭେଦ କରି, ମନମୋହନର ଅଙ୍ଗୁଳିହେଳନାକୁ ଆଦୌ ନିର୍ଦ୍ଦିଷ୍ଟ କରି ପାରୁ ନ ଥାଏ।

ମୁଁ ବାହାରି ପଡ଼ିଲି ବାହାରେ ଦେଖେଁ ଗୃହିଣୀ ମୋ'ର ଅପେକ୍ଷାରେ ଦଣ୍ଡାୟମାନ ... ବାହାରକୁ ଯିବାର ଯଥା-ପରିଚ୍ଛଦରେ ଭୂଷିତ ··· ମୁଁ ବିସ୍ମୟ ପ୍ରକାଶ କଲି ନାହିଁ ··· ବରଂ ସ୍ୱାଗତ ଜଣାଇଲି ··· କାରଣ, ସେଦିନର ଭାଗବତ-ପାଠକଥା ମନେପଡ଼ିଲା ··· ଏହା ଯେ ଗଙ୍ଗାର ଅମ୍ୱାର ସଦ୍‌ଗତିକୁ ଉଦ୍ଦେଶ୍ୟ କରି ପଠିତ ହେଉଥିଲା ଏହା ନିଃସନ୍ଦେହ ··· କାଲିର ଗୀତା-ପାଠ ନିଶ୍ଚୟ ଚଣାବାଲାର ସ୍ୱାସ୍ଥ୍ୟ କାମନା କରି, ଏହାହିଁ ମୋ'ର ଅଶାନ୍ତିମନକୁ ଉତ୍ସାହିତ କଲା।... ଅଦ୍ୟର ଚଣାବାଲାର ଆକସ୍ମିକ ଦୁର୍ଘଟଣା ସଂକ୍ରାନ୍ତ ଖବର କାଲି ଯେଉଁ-ପରି ସହର ତମାମ୍ ବ୍ୟାପି ଯାଇଥିଲା, ଆଜି ମଧ୍ୟ ଖବର କାଗଜରେ ଯେଉଁଭଳି ବଡ଼ ବଡ଼ ଅକ୍ଷରରେ ପ୍ରକାଶ ପାଉଛି, ସେଥିରେ ଖୁକ୍କୀ (ମୋର କନ୍ୟା) ମଧ୍ୟ ଜୁଆଁଇକୁ ନେଇ ହାସ୍‌ପାତାଲକୁ ଆସିପାରେ, ଏହା ମଧ୍ୟ ଅସମ୍ଭବ ନୁହେଁ···ହୁଏତ ଗଲାବେଳେ ସେ ତା'ର ମା'କୁ ଏହି କଥା ଜଣାଇ ଯାଇଥିବ···କାଲି କେତେବେଳେ ମୁଁ ଖାଇଚି, କେତେବେଳେ ଶୋଇଚି, କେତେବେଳେ ଜୁଆଁଇ ଆସି ଖୁକ୍କୀକୁ ନେଇ ଯାଇଚି—ତାହା ଆଦୌ ସ୍ମରଣ କରି ପାରୁ ନଥିଲି···କେବଳ ଅସ୍ପଷ୍ଟ ଦିନର ଆଲୁଅ ପରି ସ୍ମୃତିର ରନ୍ଧ୍ର ଦେଇକି ଭେଦ କରୁଥିଲା, ସେତିକି।···

ଆମେ ଦୁହେଁ ଯେତେବେଳେ ହ୍ୟାରିସନ୍ ରୋଡ଼ ଓ କଲେଜ୍ ଷ୍ଟ୍ରୀଟ ଜଂସନ୍ ପାର ହୋଇ ଗୋଲଦୀଘି ଆଡ଼କୁ ଆଗଉଁ,

ସେତେବେଳେ ଅନାଇ ଦେଖୁଁ ଜନଗହଳୀ କାହିଁରେ କ'ଣ··· ପ୍ରଥମେ ଏହାର କାରଣ ମୁଁ ନିର୍ଣ୍ଣୟ କରି ପାରେ ନାହିଁ...ବୋଧହୁଏ କୌଣସି ବଶିଷ୍ଟ ଅତିଥି ଏହି ବାଟ ଦେଇ ଯିବେ, ସେଥିପାଇଁ ଏହି ଜନ ସମାବେଶ...ଆମେ ଗହଳ ଠେଲି ଆମର ଗନ୍ତବ୍ୟ ସ୍ଥାନ ହାସ୍‌ପାତାଲକୁ ଯିବାର ଉପକ୍ରମ କରୁଁ...କିନ୍ତୁ, ଗୋଲଦୀଘିର ସଦର ଫାଟକ ଯାଏ ଆସି, ସେ'ଠୁଁ ଆଉ ଗହଳ ଭେଦ କରି ପାରୁନା···ଟ୍ରାମ୍, ବସ୍ ବନ୍ଦ କରି ଦିଆଯାଇ ଥିବାରୁ, ପରିବହନ ସାହାଯ୍ୟ ନେବୁଁ, ଏ'କଥା ମଧ୍ୟ ଘଟେ ନାହିଁ ··· ଅଗତ୍ୟା ବଶିଷ୍ଟ ଅତିଥି ନ ଯିବାଯାଏ ସେହିଠାରେ ଅପେକ୍ଷା କରିବାକୁ ପଡେ···ମୁଁ ଉତ୍ସୁକ ହୋଇ ଜଣକୁ ପଚାରେ—

'କିଏ ଆସୁଛନ୍ତି ?'

'ବର୍ତ୍ତିମାନ ଦେଖି ପାରିବେ···ଧୈର୍ଯ୍ୟ ଧରନ୍ତୁ ।'

ମୁଁ ଅଧୈର୍ଯ୍ୟ ହୋଇ ପୁଣି ପଚାରେ—

'କେଉଁଠୁ ଆସୁଚନ୍ତି ?'

'ମେଡିକାଲ୍ ହାସ୍‌ପାତାଲରୁ'···

'ତେବେ କ'ଣ···'

'ପାଠିଭୁଣ୍ଡ କରବେନା···ଏ' ଗାରବ ଶୋଭାଯାଏ। ··· ନୀରବ ଥାଇ ଦେଖିବାର କଥା ···'

ଗୃହଣୀ ମଧ୍ୟ ମୋର ହାତ ଟିପିଦେଇ ସେହି ଇଙ୍ଗିତ ଦେଲେ। ଓ, ସି ସେତିକିବେଳେ ମଝିରବାଇକରେ ରାସ୍ତା ଫାଙ୍କ କରି ଦେଇ ଗଲେ। ଶୋଭାଯାତ୍ରାର ପୁରୋ-ଭାଗ ସ୍ପଷ୍ଟ ଦୃଷ୍ଟିଗୋଚର ହେଲା, ଦେଖାଗଲା 'ଖୋକୀ' (ବାଡ଼ୱେର ପତ୍ନୀ) ଓ ବାଡ଼ୱେର ସାହେବ (ସାହେବ ନଥା'ନ୍ତି),— ଏହି ଦୁହେଁ ସେଥିର ପୁରୋଧା ···ଯେଉଁ ଶିଶୁପଞ୍ଚୁଆର ଚାଲିଛି, ସେଥିର ଅଗ୍ରଣୀ ବେବୀ (ବାଡ଼ୱରଙ୍କ ଶିଶୁକନ୍ୟା)...ଶିଶୁଙ୍କ ଅନ୍ତେ ଦେଖାଗଲା କିଶୋରଙ୍କ ଦଳ···କିଶୋରଙ୍କ ଅନ୍ତେ ପ୍ରୌଢ଼, ପ୍ରୌଢ଼ଙ୍କ ଅନ୍ତେ ବୃଦ୍ଧ— ଏହିପରି କ୍ରମ ପର୍ଯ୍ୟାୟରେ ବିଭକ୍ତଦଳସମାବେଶର ଗୋଟିଏ ଅବିଭକ୍ତ ପଞ୍ଚୁଆର···ଶବାଧାରଟି ଯୁବକ ଓ ପ୍ରୌଢଙ୍କ ମଧ୍ୟବର୍ତ୍ତୀ ··· ଗୋଟିଏ ପଲଙ୍କ ··· ତଦୁପରି ଶବଟି ଶାୟିତ ··· ସମ୍ମୁଖ ଭାଗର ବାହକ ମୋଟିଆ ଓ 'ଅନ୍ୟ-ଚଣାବାଲ' ... ପଶ୍ଚାତ୍ ଦେଶର ବାହକ କିଏ ଦୁଇଜଣ ଭଦ୍ର ସ୍ଥାନୀୟ ··· ଶବାଧାରଟି ଯେତେବେଳେ ସିନେମା ସାମ୍ନାରେ ଉପସ୍ଥିତ ହୁଏ, ସେତେ-ବେଳେ ତାହା 'ଖୋକୀ'ର ନିର୍ଦ୍ଦେଶରେ ଅବନମିତ କରାଯାଏ, ଓ ଚଣାବାଲର ଅସ୍ଥାନକୁ ଅଭିମୁଖ କରି ରଖାହୁଏ ··· ଅବଶ୍ୟ ରାସ୍ତାର ମଧ୍ୟଭାଗରେ···ତା'ପରି ସେହି ଶବାଧାରକୁ କେନ୍ଦ୍ର କରି ଶିଶୁମାନେ ପ୍ରଥମେ ବୃତ୍ତ ଅଙ୍କନ କରନ୍ତି, ତା'ପର ଅନ୍ୟମାନେ ବୟସର ଊର୍ଦ୍ଧ୍ୱ କ୍ରମେ

ସେମାନଙ୍କୁ ଢେର ପୃଥକ୍ ପୃଥକ୍ ସମକେନ୍ଦ୍ରିକ ବୃତ୍ତ ରଚନା କରନ୍ତି।···ଶବଟି ସେତେବେଳ ପର୍ଯ୍ୟନ୍ତ ଆପାଦ-ମସ୍ତକ ଆବୃତ୍ତ ଥିଲା।··· ଯେତେବେଳେ ଖୋକା ଆସି ଆବରଣଟି ଉନ୍ମୋଚନ କରିଦେଲେ, ଫୁଲର ବେଷ୍ଟନୀଟି ଶବର ବୁକୁ ଦେଶରେ ସ୍ଥାପନ କଲେ, 'ଘୁଙ୍ଗୁରଦାନା, ଘୁଙ୍ଗୁରଦାନା' ଏହିପରି ବେଶୁଦ୍ଧ୍ୟମାନ କଣ୍ଠରେ ଡାକି, ଅଶ୍ରୁ-ଜଳରେ ଭାସିଯାଇ, ସେହି ଶବ ଉପରେ ଅଜାଡ଼ିହୋଇ ପଡ଼ିଲେ, ସେତେବେଳେ ଏ'ପରି ବେଦରଦୀ କେହି ସେଠାରେ ନ ଥିଲେ, ଯାହାର ଆଖିରେ ଲୋତକର ଝରଣା ଫିଟି ଯାଇ ନ ଥିଲା।···ସେତେବେଳକୁ କୁଜ୍‌ଝଟିକା ମିଳାଇ ଶିଶିର ବର୍ଷୁଥିଲା, ସୂର୍ଯ୍ୟଦେବ ମ୍ଳାନ ମୁଖଥାଇ ରଥ ଅଟକାଇ ଥିଲେ, ପ୍ରାଣବନ୍ତ ଗୋଲଦୀଘି ନିଷ୍ପ୍ରାଣ, ନିଷ୍ପନ୍ଦ ହୋଇ ନିସ୍ତବ୍ଧ ହୋଇ ଯାଇଥିଲା··· ସମବ୍ୟଥିତା ପ୍ରକୃତି ଯେ ଅକୁଣ୍ଠ ସମବେଦନା ପ୍ରକାଶ କରୁଥିଲେ ଏହିଭାବରେ, ଏଥିରେ ସନ୍ଦେହ ନାହିଁ···ମୋ'ର କ'ଣ ଘଟିଥିଲା, ମୁଁ କହି ପାରିବ ନାହିଁ···ତେବେ ଶୋକ-ବିଧୁରା ଗୃହିଣୀ ଆତ୍ମ-ସମ୍ବରଣ କରି ମୋତେ ଗୋଲଦୀଘିର ରେଲିଂବାଡରେ ଆଉଜାଇ ଦେଇଥିଲେ, ଏ'କଥା ବେଶ୍ ମନେ ପଡ଼େ...ଗୃହିଣୀ ସେଇଥିପାଇଁ ମୋ'ର ସାଙ୍ଗ ଧରିଥିଲେ, ଏହା ମୁଁ ପରେ ବୁଝିପାରି ଥିଲି...ସେହି ଅବସ୍ଥାରେ ଥାଇ, ମୁଁ କେତେବେଳେ ଆଖି ଫେରାଇ ଚଣାବାଲର ଅସ୍ଥାନ ଆଡକୁ ଦୃଷ୍ଟି ଫେରାଇଚି, ଆଉ ଦେଖିଚି, ସଦାନନ୍ଦଭଳି ସେଇଠାରେ ସେମିତି ଦୋକାନ ଲାଗିଛି; ଚଣାବାଲର ଆସନରେ ଚଣାବାଲା ବସିଛି; ଏଥର ସେ ଆଉ ମୌନ ନୁହେଁ, କି ବିମର୍ଷ ନୁହେଁ; ମୁଁ ଯେମିତି କେତେ

ଵନର ପରିଚିତ, କେତେ ଅପଣାର, ଏହିପରି ଭାବରେ ଇଙ୍ଗିତ ଦ୍ଵାରା ମୋତେ ପାଖକୁ ଡାକନ୍ତି, ଆଉ ମୋ'ର ମନର କଥା ଶୁଣି, ମୋତେ ପ୍ରାଞ୍ଜଳ ଭାଷାରେ କହୁଚି—

'ବାବୁଜି !···ତୁମେ ମୋ'ର ମନ-ଗହନରେ ପଶିଛ...ମୋ'ର ମର୍ମ-କଥାଟି ହାସଲ କରିବାକୁ ଅଣ୍ଡାଳି ବୁଲୁଛ···ଏହା ସ୍ଵର୍ଣ୍ଣମୃଗ କି କ'ଣ ମୋର ଭ୍ରମହୁଏ··· ତେବେ ତୁମେ ଯେତେବେଳେ ଉଚ୍ଛନ୍ନ ହୋଇ ଗୋଡ଼ାଇଛ, ସେତେବେଳେ ତା'ର ପରିଚୟ ମୁଁ ଯେତିକି ଭେଦିଛି, ସେଇଯା କହୁଚି ··· ପିଲାମାନଙ୍କଠେଇଁ ମୋ'ର ଭାରି ଶ୍ରଦ୍ଧା, ଏହା ତୁମେ ଦେଖିଚ; ଆହୁରି ବି ଦେଖିଚ, ସେମାନେ ଗଲାପରେ ମୁଁ ପ୍ରାୟ ଅନ୍ୟ ମନସ୍କ ହୋଇଯାଏ, ଆଉ କ'ଣ ଭାବି ଭାବି ବ୍ୟାକୁଳ ହୁଏ... ଶିଶୁଟିଏ ଦେଖିଲା ମାତ୍ରେ ମୋ'ର ପ୍ରାଣ କାନ୍ଦିଉଠେ; ସେ ବିଦାୟ ହୋଇ ଗଲା ପରେ, ବ୍ୟଥାର ଭାର ଅଜାଡ଼ି-ଦେଇଯାଏ... କି ସେ ବ୍ୟଥା ତା'ର ମର୍ମ ମୁଁ ଅଜାଯାଏ ବୁଝିପାରି ନାହିଁ, ଅଥଚ ତାହାହିଁ ମୋ'ର ମର୍ମ-ବ୍ୟଥାର ଅସଲ କାରଣ ··· ତେବେ ଏତିକି କହିବି, ସେହି ବ୍ୟଥାରେ ଉତ୍ତେଜନା ଅଛି, ଶାନ୍ତି ଅଛି ··· କାରଣ ତା'ର ଉତ୍ତେଜନାରେ ମୁଁ ଦେଶକୁ ଛୁଟିଚି, ଦେଶରୁ ଲେଉଟିଚି; ତା'ର ଉତ୍ତେଜନାରେ ମୁଁ ପାଣି ପବନ ନ ମାନି ଗ୍ରାମସାରା ବାଲିଗଞ୍ଜି ଖେଳିଚି; ତା'ର ଉତ୍ତେଜନାରେ ଗଙ୍ଗାର ବିଚ୍ଛେଦକୁ ସହି, ଖୋକାର ସତ୍ୟ ରକ୍ଷା କରିଛି;···ଆହୁରି ବି ସେହି ଉତ୍ତେଜନା ଦେଶ ଜନ୍ମ-ମାଟିର ସେବା

କରିବାକୁ ଧାଇଁଥିଲି, ବାଟରେ ପାଇଲି ବାଧା, ମର୍ମାନ୍ତିକ ବ୍ୟଥା, ହେଲେ ତାହା ଅଇଛୁକା ବ୍ୟଥା ହୋଇ ଆଉ ନାହିଁ, ହୋଇଛି ଶାନ୍ତିର ଉପଜ, କାରଣ ମୁଁ ସେହି ବ୍ୟଥାକୁ ଏକ ଢଙ୍ଗରେ ଯେଉଁପରି ଶ୍ରେଣୀ ବର୍ଣ୍ଣ, ଧର୍ମ, ଜାତି ନିର୍ବିଶେଷରେ ଅନ୍ୟ ଢଙ୍ଗରେ ସେହିପରି ଶିଶୁ, ତରୁଣ ପ୍ରୌଢ, ବୃଦ୍ଧ ନିର୍ବିଶେଷରେ ସମସ୍ତଙ୍କ ମଧ୍ୟରେ ସମାନ ଅଂଶରେ ବାଣ୍ଟି ଦେଇ ପାରୁଛି...ତୁମେ, ମୁଁ, ସେ, ଦୁନିଆ ଗୋଟାକ ଯେମିତି ଆଜି ପାଲଟିଛି···ଶିଶୁ !

'ଶିଶୁ !'···ତା'ର ଏହି ଶେଷ କଥା ପଦକ ଛଡ଼ାଇ ନେଇ ମୁଁ ଚତ୍କାର କରି ଉଠେ, ଆଉ ଆଖି ମେଲାଇ ଦେଖେଁ,—ମୁଁ ବିଦ୍ୟା-ସାଗର ମୂର୍ତ୍ତି ପାଖ ବେଞ୍ଚରେ ଶୋଇଛି, ଖୋକା,ମୋ କପାଳରେ ଜଳ-ପଟି ଚଢାଇ ଦଉଛି, ଗୃହିଣୀ ଚରଣତଳେ ବସି 'ନାରାୟଣ, ନାରାୟଣ' ବୋଲି ନାରାୟଣଙ୍କୁ ସ୍ମରଣ କରୁଛନ୍ତି ... ଏତକବେଳେ କୁଆଁଇ କାହିଁ ଥିଲେ, ଅତ୍ୟନ୍ତ ବ୍ୟସ୍ତ ଭାବରେ ଧାଇଁ ଆସିଲେ··· ମୁଁ ଉଦ୍‌ବିଗ୍ନ ଭାବରେ ଠିଆହୋଇ ପଚାରିଲି—'ଶୋଭାଯାତ୍ରା ?'

ଶୋଭାଯାତ୍ରା ସେତେବେଳକୁ କଲେଜ ଓ ହ୍ୟାରିସନ୍ ରୋଡ ଛକ ପାର ହୋଇ ଆଗେଇ ଥାଏ ··· ମୋ'ର ବ୍ୟସ୍ତତାରେ, ସେମାନେ ଉଦ୍‌ବ୍ୟସ୍ତ ହୋଇ ଉଠିଲେ, ଓ ମୋତେ ସଂକ୍ଷିପ୍ତ ଜନବିରଳ ଗଳିରାସ୍ତାଦେଇ, ଶୋଭାଯାତ୍ରାର ଅଗ୍ରବର୍ତ୍ତୀ ଏକ ନିରାପଦ ସ୍ଥାନରେ ଠିଆ କରାଇ ଦେଲେ।··· ଲୋକର ଗୋଟାଏ ପ୍ରବଳ

ଧକ୍କା,ସେଥିରେ ମୁଁ ମୁହ୍ୟମାନ ହୋଇ ପଡ଼ିଥିଲି, ତାହା କଟିଯାଇଛି। ଏଇଯୁା ଦେଖ ସେମାନେ ନିଶ୍ଚିନ୍ତ ହୋଇଥିଲେ, ମୁଁ ମଧ୍ୟ ଏକାଗ୍ର ଚିତ୍ତରେ ସେହି ଶୋଭାଯାତ୍ରା ଓ ଶୋଭାଯାତ୍ରାର ନାୟକ ପ୍ରତୀକ୍ଷାରେ ଆତ୍ମ ନିବେଶ କରିଥିଲି ।

ଯେତେବେଳେ ପଟୁଆର ମୋ'ର ଆଖି ଆଗ ଦେଇଗଲା, ଆଜି ଚଣାବାଲାର ଶବାଧାର ଦୃଷ୍ଟି ଅତିକ୍ରମ କଲା, ସେତେବେଳେ ଆଖି-ଦୁଇଟା ମୋ'ର ପୁଣି ଛଳକେଇ ଉଠିଲା···ଅଦୂର ଅଖପାଖର ଯେତେ ଦର୍ଶନାର୍ଥିଙ୍କୁ ଅନାଇଲି, ଏମିତି କ'ଣ ମୋ'ର ଖୁକୀ, କୁଆଁଇ, ଗୃହିଣୀ ମଧ୍ୟ—ସମସ୍ତଙ୍କ ଆଖି-ପତା ଓଦା, ଓଦା, ଆଖି କୋଣରେ ଲୁହ ବୁନ୍ଦା, ବୁନ୍ଦା—ମୁଁ ମନକୁ ମନ କହୁଲି—ଏ' ଶୋଭାଯାତ୍ରା ଶୋକ ଯାତ୍ରା ନୁହେଁ, ଅଖଣ୍ଡ ମାନବତାର ଜୟ-ଯାତ୍ରା ··· ଗନ୍ତବ୍ୟ ସ୍ଥଳ ଶ୍ମଶାନ ନୁହେଁ, ଗନ୍ତବ୍ୟ ସ୍ଥଳ 'ସାମ୍ୟ, ମୈତ୍ରୀ, ଶାନ୍ତି'ର ନିକେତନ—ତା'ପରେ ପୂର୍ବ ସ୍ମୃତିଜନିତ ବିହ୍ୱଳତାରେ ଅଭିଭୂତ ହୋଇ ଦୃଶ୍ୟଟିକୁ ଉଦ୍ଦେଶ୍ୟ କରି ମନକୁ ମନ କହୁଲି—

ଚଣାବାଲା ଠାଏ ବସି, ବିକୁ ନାହିଁ ··· ବିଲକୁଲ ସେ ଫେରିବାଲା···ବୟସର ବ୍ୟବଧାନ କାହାରିହେଲେ ନାହିଁ, ସମସ୍ତେ ଅଜ ଶିଶୁ ... ସେହି ଶିଶୁର ଅଖଣ୍ଡ ପଟୁଆର ଲଗାଇ, ସେ ଫେରି କରୁଛି—ଚଣା ନୁହେଁ, ଅଶ୍ରୁ-କଣା !!

## ଶେଷ କଥନ

ଗଳ୍ପଟି ଶେଷ କରି, ବନ୍ଧୁ ଅଶ୍ରୁ ସଂବରଣ କରୁଥିଲେ ରୁମାଲ ସାହାଯ୍ୟରେ, ମୁଁ ମଧ୍ୟ ତଦ୍ରୂପ କରୁଥିଲି ବସନ ସାହାଯ୍ୟରେ ।... ତା'ପର ସେ କହିଲେ,—ସେଦିନର ଏହି ଅସଂଭବ ଘଟଣାର ସଂଭବ ହୋଇଥିଲା 'ଖୋକା' ଯୋଗୁଁ, ସନ୍ଦେହ ନାହିଁ···କିନ୍ତୁ ଯେଉଁ ଶିଶୁ-ଭାବରେ ଅନୁପ୍ରାଣିତ ହୋଇ ଜନ-ସମାଜ ଓହ୍ଲାଇ ଆସିଥିଲା ସେଦିନ ହୃଦୟର ଗୋଟାଏ ସମତଳ କ୍ଷେତ୍ରକୁ, ସେହି ଅନୁଭୂତ ଯଦି ଚିରନ୍ତନ ହୋଇ ରହନ୍ତା !...ମୌନ ହୋଇଗଲେ, ତା'ପର ଦୀର୍ଘଶ୍ୱାସ ଛାଡ଼ି କହିଲେ—ଓଥେଲୋର ଟ୍ରାଜେଡ଼ି (ବିଷାଦ) ଥିଲା ଡେସ୍‌ଡିମୋନାର ସତୀତ୍ୱସନ୍ଦେହରେ ନୁହେଁ, ଆତ୍ମ-ସନ୍ଦେହରେ !··· ଶ୍ରୀରାମଚନ୍ଦ୍ରଙ୍କ ଟ୍ରାଜେଡିଥିଲା ସ୍ୱର୍ଣ୍ଣ ମୃଗ-ଭ୍ରମରେ ନୁହେଁ, ଆତ୍ମ-ଭ୍ରମରେ !···ସେହିପରି ଯୁଗର ଟ୍ରାଜେଡି ହେବ ଜ୍ଞାନ-ବିଜ୍ଞାନର ମୋହରେ ନୁହେଁ, ଆତ୍ମ-ମୋହରେ ।···



